# ସୃଷ୍ଟି ଓ ସମୀକ୍ଷା



ଓଡ଼ିଆ ସାହିତ୍ୟ ସମାଜ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

# ସୃଷ୍ଟି ଓ ସମୀକ୍ଷା

୨୧

(ଆଧୁନିକ କବିତା ବିଶେଷାଙ୍କ)

୧୯୯୯-୨୦୦୦



ସଂପାଦନା :

ଡଃ ମହେଶ୍ୱର ମହାନ୍ତି

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

## ଓଡ଼ିଆ ସାହିତ୍ୟ ସମାଜ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

# ଓଡ଼ିଆ ସାହିତ୍ୟ ସମାଜ

*ସଭାପତି :*

**ଶ୍ରୀ ଅସିତ କୁମାର ବୋଷ,** ଏମ୍.ଏସ୍.ସି.

ଅଧ୍ୟକ୍ଷ, ଖ୍ରୀଷ୍ଟ ମହାବିଦ୍ୟାଳୟ



*ଉପ-ସଭାପତି ଓ ମୁଖ୍ୟ ସଂପାଦକ:*

**ଡଃ ମହେଶ୍ୱର ମହାନ୍ତି**

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

*ସଂପାଦନା ମଣ୍ଡଳୀ :*

୧। ଡଃ ପ୍ରଫୁଲ୍ଲ କୁମାର ଦାଶ, ରିଡ଼ର
୨। ଡଃ ପ୍ରାଣରଞ୍ଜନ ଦାସ, ରିଡ଼ର
୩। ଡଃ ସୁରେନ୍ଦ୍ରନାଥ ଆଚାର୍ଯ୍ୟ, ଅଧ୍ୟାପକ
୪। ଡଃ କୃତ୍ତିବାସ ଷଡ଼ଙ୍ଗୀ, ଅଧ୍ୟାପକ
୫। ଶ୍ରୀ ଦୈତ୍ୟାରି ଶୁକ୍ଲ, ଅଧ୍ୟାପକ
୬। ଡଃ ପ୍ରଦୀପ କୁମାର ଧଳ, ଅଧ୍ୟାପକ
୭। ସ୍ମିତା ନାୟକ, ଅଧ୍ୟାପିକା



ମୁଦ୍ରଣ : ସଂଗୀତା ପ୍ରିଣ୍ଟରସ୍, ଅଲିଶା ବଜାର, କଟକ-୨

# ସୂଚୀ




*ପ୍ରଚ୍ଛଦ ଚିତ୍ର* : ସୃଷ୍ଟି ପ୍ରକ୍ରିୟାର ଚିରନ୍ତନ ଧାରାରେ 'ଆଦାମ' ଓ 'ଇଭ୍'

*ଶିଳ୍ପୀ* : ଶିବ ପାଣିଗ୍ରାହୀ, ସିନିୟର ଅଧ୍ୟାପକ,
ବି.କେ. ଆର୍ଟ କଲେଜ, ଭୁବନେଶ୍ୱର

## ଏ ପର୍ଯ୍ୟନ୍ତ ପ୍ରକାଶ ପାଇଥିବା
## 'ସୃଷ୍ଟି ଓ ସମୀକ୍ଷା'ର ବିଭିନ୍ନ ସଂଖ୍ୟା

୧୯୭୦-୧୯୭୧ ଶିକ୍ଷାବର୍ଷଠାରୁ 'ସୃଷ୍ଟି ଓ ସମୀକ୍ଷା' ନାମରେ ଓଡ଼ିଆ ସାହିତ୍ୟ ସମାଜ ତରଫରୁ ଏକ ଗବେଷଣାଧର୍ମୀ ବାର୍ଷିକ ମୁଖପତ୍ର ପ୍ରକାଶ ପାଇ ଆସୁଛି । ବିଭିନ୍ନ ସମୟରେ ଏହାର ନିୟମିତ ପ୍ରକାଶନ ବିଘ୍ନିତ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଚଳିତ ସଂଖ୍ୟାକୁ ମିଶାଇ ମୋଟ ୨୧ ଟି ସଂଖ୍ୟା ପ୍ରକାଶ ପାଇଛି । ସଂଖ୍ୟାଗୁଡ଼ିକର ସୂଚନା ନିମ୍ନରେ ପ୍ରଦାନ କରାଗଲା ।

| | | |
|---|---|---|
| ୧। | ୧୯୭୦-୧୯୭୧ | ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା |
| ୨। | ୧୯୭୧-୧୯୭୨ | ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା |
| ୩। | ୧୯୭୨-୧୯୭୩ | ଭଞ୍ଜ ବିଶେଷାଙ୍କ |
| ୪। | ୧୯୭୩-୧୯୭୪ | କ୍ଷୁଦ୍ରଗଳ୍ପ ବିଶେଷାଙ୍କ |
| ୫। | ୧୯୭୪-୧୯୭୫ | ନାଟକ ବିଶେଷାଙ୍କ |
| ୬। | ୧୯୭୫-୧୯୭୬ | ଅଭିମନ୍ୟୁ ସାମନ୍ତସିଂହାର ବିଶେଷାଙ୍କ |
| ୭। | ୧୯୭୬-୧୯୭୭ | ଧର୍ମ ବିଶେଷାଙ୍କ |
| ୮। | ୧୯୭୭-୧୯୭୮ | ପୁରାଣ ବିଶେଷାଙ୍କ |
| ୯। | ୧୯୭୮-୧୯୭୯ | ସାହିତ୍ୟରେ ବିଭିନ୍ନ 'ବାଦ' (ism) ବିଶେଷାଙ୍କ |
| ୧୦। | ୧୯୭୯-୧୯୮୦ | ଭାଷାତତ୍ତ୍ୱ ବିଶେଷାଙ୍କ |
| ୧୧। | ୧୯୮୦-୧୯୮୧ | ଭକ୍ତକବି ମଧୁସୂଦନ ବିଶେଷାଙ୍କ |
| ୧୨। | ୧୯୮୧-୧୯୮୨ | ଫକୀରମୋହନ ବିଶେଷାଙ୍କ |
| ୧୩। | ୧୯୮୨-୧୯୮୩ | ସାରଳା ଦାସ ବିଶେଷାଙ୍କ |
| ୧୪। | ୧୯୮୫-୧୯୮୬ | ବଳରାମ ଦାସ ବିଶେଷାଙ୍କ |
| ୧୫। | ୧୯୮୬-୧୯୮୭ | ବିଜୟଚନ୍ଦ୍ର ମଜୁମଦାର କୃତ 'Typical Selections from OriyaLiterature'ପୁସ୍ତକର ମୁଖବନ୍ଧର ପୁନଃମୁଦ୍ରଣ |
| ୧୬। | ୧୯୯୦-୧୯୯୧ | ଉପନ୍ୟାସ ବିଶେଷାଙ୍କ |
| ୧୭। | ୧୯୯୩-୧୯୯୪ | ରାଧାନାଥ ବିଶେଷାଙ୍କ |
| ୧୮। | ୧୯୯୬-୧୯୯୭ | ଲୋକସାହିତ୍ୟ ବିଶେଷାଙ୍କ |
| ୧୯। | ୧୯୯୭-୧୯୯୮ | ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ 'ବ୍ରହ୍ମଙ୍କ ମଧୁସୂଦନ' ଓ 'ସ୍ମୃତି ଅର୍ଘ୍ୟ'ର ପୁନଃମୁଦ୍ରଣ |
| ୨୦। | ୧୯୯୮-୧୯୯୯ | ସାଧୁ ସୁନ୍ଦର ଦାସ ଓ କୁଜୀବର ପତ୍ର |
| ୨୧। | ୧୯୯୯-୨୦୦୦ | ଆଧୁନିକ କବିତା ବିଶେଷାଙ୍କ |



# ସୂଚନା

ଶତାବ୍ଦୀର ଏହା ଶେଷ ଅର୍ଘ୍ୟ-'ସୃଷ୍ଟି ଓ ସମୀକ୍ଷା'ର ଆଧୁନିକ କବିତା ବିଶେଷାଙ୍କ । ୩୦ ବର୍ଷ ତଳେ ୧୯୭୦-୭୧ ମସିହାରେ ପ୍ରଥମ କରି ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ମୁଖପତ୍ର ରୂପେ ଏହି ଭଳି ଏକ ପ୍ରକାଶନର ପରିକଳ୍ପନା କରାଯାଇଥିଲା । ଏଥିପାଇଁ ତତ୍କାଳୀନ ଅଧକ୍ଷ ଢାକା ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକପ୍ରାପ୍ତ କୃତିଛାତ୍ର ମେଜର ଏମ୍.ଏନ ରାୟଙ୍କର ଆଶୀର୍ବାଦ ଏବଂ ଓଡ଼ିଆ ବିଭାଗର ମୁଖ୍ୟ ଅଧାପକ ବିଶିଷ୍ଟ ସାହିତ୍ୟ ସମାଲୋଚକ ଶ୍ରୀ ପଠାଣି ପଟ୍ଟନାୟକଙ୍କର ଉଦ୍ୟମ ପ୍ରଶଂସାର୍ହ । ସେ ଦୁହେଁ ସମୟ କ୍ରମେ ବୃତ୍ତିଜୀବନରୁ ବହୁକାଳରୁ ଅବସର ନେଇ ସାରିଛନ୍ତି; କେବଳ ଛାଡ଼ି ଯାଇଛନ୍ତି ସ୍ମୃତିର ପଦାଙ୍କ । ଆଜି ନୂତନ ଶତାବ୍ଦୀର ପ୍ରାରମ୍ଭରେ ସେମାନଙ୍କର ମହନୀୟ ଅବଦାନକୁ ଆମେ ସ୍ମରଣ କରୁଛୁ ।

'ସୃଷ୍ଟି ଓ ସମୀକ୍ଷାର' ଏ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ବିଷୟକ ୨୦ଟି ସଂଖ୍ୟା ପ୍ରକାଶ ପାଇଛି ଏବଂ ଏଇଟି ହେଉଛି ଏକବିଂଶ ଅର୍ଘ୍ୟ । ଆଧୁନିକ କବିତା, ସାହିତ୍ୟ ଜଗତରେ ଏବେ ଏକ ବିବଦମାନ ବିଷୟ ହୋଇପଡ଼ିଛି ।ଏହି ସଂଖ୍ୟାଟିରେ ପୁସ୍ତକର ସୀମିତ କଳେବରକୁ ଚାହିଁ ଆଧୁନିକ କବିତା ସଂପର୍କରେ ବିଜ୍ଞ ଲେଖକମାନଙ୍କର କେତୋଟି ତାତ୍ତ୍ୱିକ ଆଲୋଚନାମୂଳକ ପ୍ରବନ୍ଧ ସହିତ କେତେକ ସମାଲୋଚକଙ୍କର ସ୍ୱକୀୟ ମତ ମଧ ଆମେ ପ୍ରକାଶ କରିଛୁ । ଯେ କୌଣସି ଆଧୁନିକତାକୁ ମାନିନେବାବେଳେ କିଛି ମତପାର୍ଥକ୍ୟ ଅବଶ୍ୟ ସୃଷ୍ଟି ହୋଇଥାଏ ; କିନ୍ତୁ କାଳର କଷଟୀ ପଥରରେ ଯାହା ଉତ୍ତୀର୍ଣ୍ଣ ହୋଇ ଶାଶ୍ୱତ କାଳପାଇଁ ବଳେବଳେ ସଞ୍ଚିତ ହୋଇ ରହିଯାଏ, ତାହା ହିଁ ଯଥାର୍ଥ ସାହିତ୍ୟ । ତେଣୁ ଆଧୁନିକ କବିତାର ଯଥାର୍ଥ ବିଚାର କରିବ ଭବିଷ୍ୟତ କାଳ ।

ଚଳିତବର୍ଷ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ଉତ୍ସବରେ ଆମ ଗୌରବମୟ ପରମ୍ପରାର ପ୍ରତିଷ୍ଠାତା ତଥା ଦାୟାଦ ସ୍ୱରୂପ କେତେଜଣ ଅବସରପ୍ରାପ୍ତ ପ୍ରାକ୍ତନ ଅଧାପକଙ୍କୁ ଆମେ ସମ୍ବର୍ଦ୍ଧନା ଜଣାଇବା ସହିତ ଦିବଂଗତ ଅଧାପକମାନଙ୍କୁ ଶ୍ରଦ୍ଧା ଓ ଭକ୍ତିର ସହିତ ସ୍ମରଣ କରୁଛୁ । ସେ ସମସ୍ତଙ୍କର ଫଟୋଚିତ୍ର ସହିତ ସଂକ୍ଷିପ୍ତ ପରିଚୟ ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି । ଆଗାମୀ ପିଢ଼ିର ଛାତ୍ର ଏବଂ ଅଧାପକମାନଙ୍କୁ ତାହା ଅନୁପ୍ରେରିତ କରିବ ବୋଲି ଆଶା କରାଯାଏ । ଏହି ପୁସ୍ତକର ପ୍ରଚ୍ଛଦ ଚିତ୍ରପାଇଁ ଶିଳ୍ପୀ ଶିବ ପାଣିଗ୍ରାହୀଙ୍କୁ ଏବଂ ପୁସ୍ତକର ଭିତର ପୃଷ୍ଠାର ସଜ୍ଜୀକରଣ ପାଇଁ ଏହି କଲେଜର ଡିଗ୍ରୀ କଳା ଶ୍ରେଣୀର ଛାତ୍ର ଶ୍ରୀମାନ ଜୀବେନ୍ଦୁ କୁମାର ସାହୁ ଓ ମନୋଜ କୁମାର ନାୟକଙ୍କୁ ଆମେ କୃତଜ୍ଞତା ଜଣାଉଛୁ ।

- ମହେଶ୍ୱର ମହାନ୍ତି

## ଖ୍ରୀଷ୍ଟ କଲେଜ ଓଡ଼ିଆ ବିଭାଗର ଦିବଂଗତ ତିନିଜଣ ପ୍ରାକ୍ତନ ଅଧ୍ୟାପକ



*( ପ୍ରଥମ ଫଟୋ ଦୁଇଟି ତୈଳଚିତ୍ରରୁ ନିଆଯାଇଛି । )*





**ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ବିଦ୍ୟାଭୂଷଣ**

ଜନ୍ମ : ୧୯୦୧ ମାର୍ଚ୍ଚ ୨୧

ସ୍ଥାନ : କଟକ ଜିଲ୍ଲା ବେଣ୍ଟକାର ସନ୍ନିକଟ ପାଟଣା ଗ୍ରାମ, ମୃତ୍ୟୁ : ୧୯୭୮ ଅଗଷ୍ଟ ୨୮

୧୯୨୮ରେ ପୁରୀ ସଂସ୍କୃତ କଲେଜରୁ ସାହିତ୍ୟରେ 'ଆଚାର୍ଯ୍ୟ' ଉପାଧି ଲାଭ, ୧୯୩୨ ରୁ ୧୯୪୪ ପର୍ଯ୍ୟନ୍ତ କେନ୍ଦୁଝର ଷ୍ଟେଟ ବଳଭଦ୍ର ନାରାୟଣ ସଂସ୍କୃତ ବିଦ୍ୟାଳୟରେ ଶିକ୍ଷକତା, ୧୯୪୪ରେ ନବ ପ୍ରତିଷ୍ଠିତ ଉତ୍କଳ ଖ୍ରୀଷ୍ଟିଆନ କଲେଜ ( ବର୍ତ୍ତମାନର ଖ୍ରୀଷ୍ଟ କଲେଜ )ର ସଂସ୍କୃତ-ଓଡ଼ିଆ ବିଭାଗର ପ୍ରଥମ ଅଧ୍ୟାପକ ଭାବେ ନିଯୁକ୍ତି, ୧୯୪୭ରେ କଲେଜ ପରିତ୍ୟାଗ କରି ଉତ୍କଳ ବିଶ୍ୱବିଦ୍ୟାଳୟର ଜ୍ଞାନକୋଷ ସଂକଳନରେ ଡଃ ମାୟାଧର ମାନସିଂହଙ୍କ ସହିତ ଯୋଗଦାନ, ୧୧ ବର୍ଷ କାର୍ଯ୍ୟକରି ସେଇଠାରୁ ଅବସର ଗ୍ରହଣ ।

କେନ୍ଦୁଝର ରାଜାଙ୍କ ସହିତ ସୁସଂପର୍କ କାରଣରୁ ପଣ୍ଡିତଜୀଙ୍କ ଉଦ୍ୟମରେ ଏବଂ କେନ୍ଦୁଝର ରାଜାଙ୍କ ଦାନରେ କଲେଜର ପ୍ରଥମ ଛାତ୍ରାବାସ 'ବଳଭଦ୍ର ନାରାୟଣ ହଷ୍ଟେଲ୍' (ରାଜାଙ୍କ ନାମରେ ନାମିତ) ପ୍ରତିଷ୍ଠିତ ହୋଇଥିଲା । ସ୍ୱର୍ଗତ ଆଚାର୍ଯ୍ୟ ଥିଲେ ବିପୁଳ ଓ ବହୁମୁଖୀ ଜ୍ଞାନର ଅଧିକାରୀ । ସଂସ୍କୃତ ଭାଷାରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । କେନ୍ଦୁଝର ରାଜଦରବାରରୁ ସେ 'ବିଦ୍ୟାଭୂଷଣ' ଉପାଧି ପ୍ରାପ୍ତ ହୋଇଥିଲେ । ବହୁ ପ୍ରାଚୀନ ଓ ଦୁର୍ଲଭ ପୋଥି ସଂଗ୍ରହ ଓ ସଂପାଦନା କରି ସେଥିରୁ କେତୋଟି 'କେନ୍ଦୁଝର ଗ୍ରନ୍ଥମାଳା' ନାମରେ ପ୍ରକାଶ କରିଥିଲେ । ଅଳଙ୍କାର ଶାସ୍ତ୍ର 'ରସକଳ୍ପଦ୍ରୁମ', 'ରସ ମୁକ୍ତାବଳୀ' ଓ ସଂସ୍କୃତ ନାଟକ 'ଭକ୍ତି ଭାଗବତ' ଓ 'ଭକ୍ତି ବୈଭବ'ର ସଂପାଦନା ସହିତ ଅଭିମନ୍ୟୁଙ୍କ

'ବିଦଗ୍ଧ ଚିନ୍ତାମଣି' କାବ୍ୟର କେତୋଟି ଛାନ୍ଦ ସଂସ୍କୃତରେ ଅନୁବାଦ କରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ, ପ୍ରତ୍ନତତ୍ତ୍ୱ, ସଂଗୀତ, ଇତିହାସ, ଶିଳାଲେଖ ଓ ତାମ୍ରଲେଖ ଅନୁଶୀଳନରେ ତାଙ୍କର ପାରଦର୍ଶିତା ଥିଲା । ତାଙ୍କର ବହୁ ଗବେଷଣାତ୍ମକ ମୌଳିକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ସେଥି ମଧ୍ୟରୁ ପ୍ରତ୍ନତାତ୍ତ୍ୱିକ ନିବନ୍ଧ 'ପୁଷ୍ପଗିରି ', 'ଶାନ୍ତିଦେବ ଓ ଜହୋର ରାଜ୍ୟ', 'ଭଞ୍ଜ ବିରୁଦ ଓ ଜୈନଧର୍ମ', 'କେନ୍ଦୁଝରର ସୁନାଖଣି', 'ଧର୍ମସ୍ଥାନରେ ଅଶ୍ଳୀଳ ମୂର୍ତ୍ତି', ସର୍ବୋପରି ଇଂରାଜୀ ପ୍ରବନ୍ଧ Jain Remains in Keonjhar ବିଶେଷଭାବେ ଉଲ୍ଲେଖଯୋଗ୍ୟ ।



### ଶ୍ରୀଧର ଦାସ

ଜନ୍ମ : ୧୯୦୧ ଅକ୍ଟୋବର ୪

ସ୍ଥାନ : ପୁରୀ ଜିଲ୍ଲା କାକଟପୁର ଅଞ୍ଚଳର ନାଉସିରା ଗ୍ରାମ

ମୃତ୍ୟୁ : ୧୯୮୮ ଅପ୍ରେଲ ୨୪

୧୯୨୨ ମସିହାରେ ପୁରୀ ଜିଲ୍ଲା ସ୍କୁଲରୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକୁଲେସନ ପରୀକ୍ଷା ଦେଇ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ଲାଭ, ବିହାର ଇଞ୍ଜିନିୟରିଂ ସ୍କୁଲରେ ନାମଲେଖା ଓ ରୁଚି ଅନୁକୂଳ ନ ହେବାରୁ ସ୍କୁଲ ପରିତ୍ୟାଗ କରି ବିହାର ନେସନାଲ କଲେଜରୁ ଆଇ.ଏ. ପାଶ । ଅର୍ଥାଭାବରୁ ଉଚ୍ଚ ଶିକ୍ଷା ଆଶା ପରିତ୍ୟାଗ କରି କାକଟପୁର, ଓଳସିଂହ, ଖଣ୍ଡ ମଉଦା, ବାହାଡ଼ାଗୋଡ଼ା, କୋରୁଆ, ହରିହରପୁର (ଜଗତସିଂହପୁର) ପ୍ରଭୃତି ସ୍ଥାନରେ ଥିବା ମାଇନର ସ୍କୁଲ ଓ ହାଇ ସ୍କୁଲରେ ଶିକ୍ଷକତା, ପରେ ଘରୋଇ ଭାବରେ ବି.ଏ. ଓ ଓଡ଼ିଆରେ ଏମ.ଏ. ପାଶ, ଶିକ୍ଷକ ତାଲିମ ଡି.ଇଡ଼ି. ଡିଗ୍ରୀ ହାସଲ, ୧୯୩୦ରେ ବଉଦ ଷ୍ଟେଟ ହାଇସ୍କୁଲରେ ପ୍ରଥମେ ପ୍ରଧାନଶିକ୍ଷକ ଓ ପରେ Education Officer ଭାବରେ ନିଯୁକ୍ତି । ରେଭେନ୍ସା କଲେଜରେ ଓଡ଼ିଆ ଅଧ୍ୟାପକ ଭାବେ ନିଯୁକ୍ତ ପାଇଥିଲେ ମଧ୍ୟ ବ୍ୟକ୍ତିଗତ କାରଣରୁ ପ୍ରତ୍ୟାଖ୍ୟାନ ଓ ପରେ ୧୯୪୮ରେ ଉତ୍କଳ ଖ୍ରୀଷ୍ଟିଆନ କଲେଜ (ବର୍ତ୍ତମାନର ଖ୍ରୀଷ୍ଟ କଲେଜ)ରେ ଯୋଗଦାନ ଓ ୧୯୬୮ରେ ଅବସର ଗ୍ରହଣ ।

ସ୍ୱର୍ଗତ ଦାସ ଓଡ଼ିଆ ସମେତ ସଂସ୍କୃତ ଓ ଇଂରାଜୀ ଭାଷାରେ ପାରଦର୍ଶୀ ଥିଲେ ଓ ସରଳ, ନିରାଡମ୍ବର ଜୀବନ ଯାପନ କରୁଥିଲେ । ସେ ଓଡ଼ିଆ ଓ ଇଂରାଜୀରେ ୩ ଖଣ୍ଡ ଅଭିଧାନ ସମେତ ସ୍କୁଲ ପାଠ୍ୟପୁସ୍ତକ, ବ୍ୟାକରଣ, ଜୀବନୀ ଓ ଅନୁବାଦ ଇତ୍ୟାଦି ମିଶାଇ ୧୦୦ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି । ସାହିତ୍ୟ କୃତି ପାଇଁ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଓ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ସେ ସମ୍ମାନିତ ।



**ଡଃ ଦେବେନ୍ଦ୍ରନାଥ ମହାନ୍ତି**

ଜନ୍ମ : ୧୯୩୦ ନଭେମ୍ବର ୧୫

ସ୍ଥାନ : କଟକ ଜିଲ୍ଲାର ରାହାମା

ମୃତ୍ୟୁ : ୧୯୯୧ ଫେବୃୟାରୀ ୨୮, (ଦୋଳପୂର୍ଣ୍ଣିମା)

ରେଭେନ୍ସା କଲେଜରୁ ଓଡ଼ିଆରେ ଏମ.ଏ. ପାଶ କରିବା ପରେ ୧୯୫୯ ଅଗଷ୍ଟ ମାସରେ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଭାବରେ ଯୋଗଦାନ ଏବଂ ୧୯୯୦ ମସିହା ନଭେମ୍ବର ମାସରେ ଅଧ୍ୟକ୍ଷ ଭାବରେ ଅବସର ଗ୍ରହଣ । ଅବସର ଗ୍ରହଣର ମାତ୍ର ୩ ମାସ ପରେ ଆକସ୍ମିକ ବିୟୋଗ ।

ସ୍ୱଗତ ମହାନ୍ତି ଥିଲେ ଜଣେ ନିରଳସ, ନୀରବ ଓ ନିଷ୍ପାପର ସାଧକ ତଥା ବନ୍ଧୁବତ୍ସଳ, ମେଳାପି ଓ ମିଷ୍ଟଭାଷୀ ବ୍ୟକ୍ତିତ୍ୱ । ବହୁ ଦୁର୍ଲ୍ଲଭ ପତ୍ରପତ୍ରିକା ଓ ଗ୍ରନ୍ଥ ସଂଗ୍ରହ କରି ତାଙ୍କ ବ୍ୟକ୍ତିଗତ ଗ୍ରନ୍ଥାଗାରକୁ ସେ ସମୃଦ୍ଧ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ କିଛିକାଳ ଗବେଷକ ଭାବରେ କାର୍ଯ୍ୟ କରିଥିଲେ । ଛାତ୍ରୋପଯୋଗୀ ବହୁ ଗ୍ରନ୍ଥର ସେ ସଂପାଦନା କରିଛନ୍ତି । ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ଉତ୍ତରଣ (୪ ଖଣ୍ଡ), ଓଡ଼ିଆ ଶବ୍ଦ ସମ୍ଭାର(ପି.ଏଚ୍.ଡି. ଗବେଷଣା ଗ୍ରନ୍ଥ), ଯୁଗଜ୍ୟୋତି ରାଧାନାଥ, ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି, ପଞ୍ଚସଖା ଓ ଓଡ଼ିଆ ସାହିତ୍ୟ, ଚନ୍ଦ୍ର ଓ ଚମ୍ପା (ଗପ) ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ କୃତି । ସାହିତ୍ୟ ସାଧନା ପାଇଁ ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ବିଷୁବ ମିଳନରେ ପୁରସ୍କାର ଲାଭ କରିଥିଲେ ।

# ଅର୍ଦ୍ଧଶତାବ୍ଦୀର ଗୌରବ

## ଓଡ଼ିଆ ସାହିତ୍ୟ ସମାଜର
## ବାର୍ଷିକ ଉତ୍ସବ (୨୦୦୧)ରେ ସମ୍ବର୍ଦ୍ଧିତ
## ଓଡ଼ିଆ ବିଭାଗର ପ୍ରାକ୍ତନ ଅଧ୍ୟାପକଗଣ ।



ଶ୍ରୀ ଗୌରୀକୁମାର ବ୍ରହ୍ମା
ଜନ୍ମ : ୧୯୨୦ ଫେବୃୟାରୀ ୨୦
ସ୍ଥାନ : ଷଡ଼ଙ୍ଗୀପଲ୍ଲି, ଗଞ୍ଜାମ

ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ବି.ଏ., ପାଟନା ବିଶ୍ୱବିଦ୍ୟାଳୟରୁ ଡ଼ି.ଇଡ଼ି ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ.ଏ. ଡ଼ିଗ୍ରୀ ଲାଭ । ପ୍ରଥମେ ହାଇ ସ୍କୁଲରେ ଶିକ୍ଷକତା, ପରେ ଉତ୍କଳ ଖ୍ରୀଷ୍ଟିଆନ କଲେଜ (ବର୍ତ୍ତମାନର ଖ୍ରୀଷ୍ଟକଲେଜ)ରେ ୧୯୪୬ ରୁ ୧୯୫୦ ପର୍ଯ୍ୟନ୍ତ ଓ ରେଭେନ୍ସା କଲେଜରେ ୧୯୫୦ ରୁ ୧୯୫୮ ପର୍ଯ୍ୟନ୍ତ ଅଧ୍ୟାପନା । ୧୯୫୮ରୁ '୭୬ ମଧ୍ୟରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ସଂଗୀତ ନାଟକ ଏକାଡ଼େମୀ ଓ ଓଡ଼ିଶା ଲଳିତ କଳା ଏକାଡ଼େମୀର ସଂପାଦକ, ସଂସ୍କୃତି ଓ ପର୍ଯ୍ୟଟନ ବିଭାଗରେ ଡ଼େପୁଟି ଡ଼ାଇରେକ୍ଟର, 'କୋଣାର୍କ' ପତ୍ରିକାର ସଂପାଦକ, ଚିଫ ଟୁରିଷ୍ଟ ଗାଇଡ୍ ଇତ୍ୟାଦି ଭାବରେ କାର୍ଯ୍ୟ ସଂପାଦନ କରି ୧୯୭୮ ରେ ଅବସର ଗ୍ରହଣ ।

ଶ୍ରୀଯୁକ୍ତ ବ୍ରହ୍ମା ଅସାଧାରଣ ବିଦ୍‌ବତ୍ତା ଓ ବାଗ୍ମିତାର ଅଧିକାରୀ । ପ୍ରାଚୀନ ଓଡ଼ିଆ ସାହିତ୍ୟ, ସଂସ୍କୃତ ସାହିତ୍ୟ, ଜଗନ୍ନାଥ ସଂସ୍କୃତି, ରାମାୟଣ ,ମହାଭାରତ, ଗୀତା , ବେଦ, ଉପନିଷଦ , ଦର୍ଶନ ଇତ୍ୟାଦିରେ ତାଙ୍କର ଗଭୀର ପ୍ରବେଶ ଅଛି । ଓଡ଼ିଆ ସହିତ ହିନ୍ଦି, ଇଂରାଜୀ ଓ ସଂସ୍କୃତରେ ଅନର୍ଗଳ ଭାବରେ ଭାଷଣ ଦେଇ ଦେଶ ବିଦେଶରେ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ଉତ୍କଳ ବାଚସ୍ପତି (ପଣ୍ଡିଚେରି), ବାଗ୍ମୀପ୍ରବର (କଲିକତା), ପର୍ଯ୍ୟଟନ ବିଶାରଦ (ଓଡ଼ିଶା) ଇତ୍ୟାଦି ବହୁ ଉପାଧିରେ ଭୂଷିତ । ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ସଂସ୍କୃତରେ ପ୍ରାୟ ୮୦ ଖଣ୍ଡ ପୁସ୍ତକର ସେ ପ୍ରଣେତା । । ତାଙ୍କ ବ୍ୟକ୍ତିଗତ ପାଠାଗାରରେ ବହୁ ମୂଲ୍ୟବାନ ଓ ଦୁର୍ଲ୍ଲଭ ପୁସ୍ତକ ସଂରକ୍ଷିତ ରହିଛି । ସୁକଣ୍ଠ , ଅସାଧାରଣ ବାଗ୍ମିତା ଓ ପାଣ୍ଡିତ୍ୟ ହେଉଛି ତାଙ୍କ ବ୍ୟକ୍ତିତ୍ୱର ବଂଶେଷ ଦିଗ ।



ଶ୍ରୀ ବନମାଳୀ ମିଶ୍ର

ଜନ୍ମ : ୧୯୨୦ ଅଗଷ୍ଟ ୨୫

ସ୍ଥାନ: ପୁରୀ ଜିଲ୍ଲାର ବିଶ୍ୱନାଥପୁର ।

ପାଟନା ବିଶ୍ୱବିଦ୍ୟାଳୟରୁ ୧୯୪୦ରେ ମାଟ୍ରିକ ପାଶ, ୧୯୫୦ରେ ଖ୍ରୀଷ୍ଟ କଲେଜରୁ ବି.ଏ. ଓ ୧୯୫୩ରେ ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ.ଏ. ଡିଗ୍ରୀ ଲାଭ । ମାଟ୍ରିକ ପାଶ ପରେ ୧୯୪୩ ରୁ ୧୯୪୬ ପର୍ଯ୍ୟନ୍ତ ପଣ୍ଡିତ ନୀଳକଣ୍ଠଙ୍କ ସଂପାଦିତ ଦୈନିକ 'ନବଭାରତ' ପତ୍ରିକାର ସହ-ସଂପାଦକ ଓ ପରିଚାଳନା ସଂପାଦକ ଭାବେ କାର୍ଯ୍ୟ ସଂପାଦନ, ୧୯୫୩ରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦାନ, ୧୯୫୯ ଅଗଷ୍ଟରେ ଓଡ଼ିଶା ସରକାରଙ୍କ ଅଧୀନରେ Editor of Assembly Debates ଭାବରେ ନିଯୁକ୍ତି, ୧୯୮୨ରେ ଅବସର ଗ୍ରହଣ ।

ଶ୍ରୀଯୁକ୍ତ ମିଶ୍ର ଜଣେ ପଣ୍ଡିତ ବ୍ୟକ୍ତି ଭାବରେ ସୁପରିଚିତ । ତାଙ୍କର ବହୁ ଉଚ୍ଚକୋଟୀର ମୌଳିକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । 'ଅଭିନବ ଓଡ଼ିଆ ଅଭିଧାନ' ନାମରେ ସେ ଖଣ୍ଡିଏ ଅଭିଧାନ ପ୍ରଣୟନ କରିଛନ୍ତି ।



ଡକ୍ଟର ଶ୍ରୀନିବାସ ମିଶ୍ର

ଜନ୍ମ : ୧୯୨୭ ଅକ୍ଟୋବର ୩୦

ସ୍ଥାନ : ଗୋବିନ୍ଦପୁର , କଟକ

ଖ୍ରୀଷ୍ଟ କଲେଜର ଛାତ୍ରଭାବରେ ଶେଷବର୍ଷ ଓଡ଼ିଆ ଅନର୍ସ ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ୧ମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ଲାଭ । ରେଭେନ୍‌ସା କଲେଜରେ ଓଡ଼ିଆରେ ଏମ.ଏ ଅଧ୍ୟୟନ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉଭୟ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀର ପରୀକ୍ଷାର୍ଥୀଙ୍କ ମଧ୍ୟରେ ସର୍ବୋଚ୍ଚ କୃତିତ୍ୱ ନିମନ୍ତେ ବିଶ୍ୱବିଦ୍ୟାଳୟରୁ ଭକ୍ତକବି

ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ ଲାଭ । ଖ୍ରୀଷ୍ଟ କଲେଜରୁ ଅଧ୍ୟାପକ ଜୀବନ ଆରମ୍ଭ( ୧୯୫୧-୫୨ ), ପରେ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା, ବିଶ୍ୱଭାରତୀ ଓଡ଼ିଆ ବିଭାଗରେ ପ୍ରଫେସର , ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାରେ ଭାଷା ବିଶେଷଜ୍ଞ, ଭାରତ ସରକାରଙ୍କ ଭୁବନେଶ୍ୱରସ୍ଥିତ ପୂର୍ବାଞ୍ଚଳ ଭାଷା କେନ୍ଦ୍ରର ଅଧକ୍ଷ ଇତ୍ୟାଦି ବିଭିନ୍ନ ମହତ୍ୱପୂର୍ଣ୍ଣ ପଦବୀରେ ନିଷ୍ଠାର ସହିତ କାର୍ଯ୍ୟ ସଂପାଦନ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ କିଛିକାଳ ପ୍ରାଚୀନ ପୋଥି ସଂପାଦନା, ଓଡ଼ିଶା ସାହିତ୍ୟ ଏକାଡ଼େମୀ ସମେତ ଓଡ଼ିଶାର ବହୁ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । UGC ଦ୍ୱାରା ମନୋନୀତ ହୋଇ National lecturer ଭାବରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ପରିଦର୍ଶକ ଅଧ୍ୟାପକ ରୂପେ ଭାଷଣ ପ୍ରଦାନ, କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଓଡ଼ିଆ ପରମର୍ଶଦାତା କମିଟିର ୫ବର୍ଷ ଧରି ସଭ୍ୟ । ପ୍ରକାଶିତ ପୁସ୍ତକ ମଧ୍ୟରେ 'ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ' (ପି.ଏଚ. ଡ଼ି ପାଇଁ ଗବେଷଣା ନିବନ୍ଧ) 'ସାହିତ୍ୟ କଥା' (ପ୍ରବନ୍ଧ ସଂକଳନ) ବଙ୍ଗଳା ସାହିତ୍ୟର ଇତିହାସ (ସୁକୁମାର ସେନଙ୍କ ଇଂରାଜୀ ପୁସ୍ତକର ଅନୁବାଦ) ଇତ୍ୟାଦି ଉଲ୍ଲେଖଯୋଗ୍ୟ ।



ଶ୍ରୀ ପଠାଣି ପଟ୍ଟନାୟକ
ଜନ୍ମ : ୧୯୨୮ ସେପ୍ଟେମ୍ବର ୧୯
ସ୍ଥାନ : ଖୋର୍ଦ୍ଧା ନିକଟବର୍ତ୍ତୀ
ଗୋଳବାଇ

୧୯୫୧ରେ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ.ଏ ପାଶ, କିଛିକାଳ ଦୈନିକ ପ୍ରଜାତନ୍ତ୍ର, ମାସିକ ଝଙ୍କାର ଓ ଦୈନିକ ମାତୃଭୂମିର ସହକାରୀ ସମ୍ପାଦକ ,ସହକାରୀ ଗବେଷକ ଉତ୍କଳ ବିଶ୍ୱବିଦ୍ୟାଳୟ, ଭାରତୀୟ ପ୍ରଥମ ପ୍ରେସ କମିଶନର ସହଯୋଗୀ ଗବେଷକ, ଭଦ୍ରଖ କଲେଜରେ ସାମୟିକ ଅଧ୍ୟାପନା, ଶେଷରେ ୧୯୫୪ରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦାନ ଓ ଅଧକ୍ଷ ଭାବରେ ଅବସର ଗ୍ରହଣ । ଜଣେ ନୀତିବାନ , ଆଦର୍ଶ, ସମୟାନୁର୍ତ୍ତୀ, କର୍ତ୍ତବ୍ୟନିଷ୍ଠ ଓ ଶୃଙ୍ଖଳିତ ଅଧ୍ୟାପକ ଭାବରେ ସମ୍ମାନିତ, ସାହିତ୍ୟ ସମାଜରେ ଜଣେ ସୁସମାଲୋଚକ ଓ ସୁବକ୍ତା ଭାବରେ ପରିଚିତ ।

## ଅର୍ଦ୍ଧଶତାବ୍ଦୀର ଗୌରବ

ଛାତ୍ରାବସ୍ଥାରେ ନବୀନ (ବ୍ରହ୍ମପୁର), କୁଙ୍କୁମ (ବମ୍ବେ), ଜାଗରଣ ( ପୁରୀ), ଆସନ୍ତାକାଲି ( କଲିକତା ) ଓ ରବିବାର ପ୍ରଜାତନ୍ତ୍ରରେ ବହୁ ଲେଖା ପ୍ରକାଶିତ । ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ ସାହିତ୍ୟର ଭୂମିକା, ସାହିତ୍ୟ ପରିକ୍ରମା, ସାହିତ୍ୟ ଓ ସଂସ୍କୃତି, ସମାଜ ଓ ସାହିତ୍ୟ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ(ସଂପାଦନା), ସାହିତ୍ୟରେ ରହସ୍ୟବାଦ ଇତ୍ୟାଦି ତାଙ୍କ ଲିଖିତ ଉଲ୍ଲେଖଯୋଗ୍ୟ କୃତି ।

ସାମାଲୋଚନା କ୍ଷେତ୍ରରେ ବହୁ ଶାସ୍ତ୍ରଦର୍ଶିତା, ମୌଳିକତା ଓ ତୁଳନାତ୍ମକ ଅଧ୍ୟୟନ ତାଙ୍କର ବିଶେଷତ୍ୱ । 'ସାହିତ୍ୟ ଭାରତୀ' ସମ୍ମାନ ସହିତ ବହୁ ଅନୁଷ୍ଠାନ ଦ୍ୱାରା ସେ ପୁରସ୍କୃତ ଓ ସମ୍ମାନିତ । ସଂପ୍ରତି ସେ ଉତ୍କଳ ସାହିତ୍ୟ ସମାଜ ଓ ଓଡ଼ିଆ ସାହିତ୍ୟ ଏକାଡ଼େମୀର ସଭାପତି ।



**ଶ୍ରୀ ରଙ୍ଗାଧର ଷଡଙ୍ଗୀ**

ଜନ୍ମ ୧୯୨୯ ସ୍ଥାନ : ରାଧାଦେଇପୁର ଶାସନ, ଢେଙ୍କାନାଳ

ଇଣ୍ଟରମିଡିଏଟ ଶ୍ରେଣୀରେ ବିଜ୍ଞାନ ଅଧ୍ୟୟନ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ଏମ.ଏ. ଡିଗ୍ରୀ ଲାଭ, ୧୯୫୨ରେ ଖ୍ରୀଷ୍ଟ କଲେଜର ସଂସ୍କୃତ ବିଭାଗରେ ଅଧାପକ ଭାବରେ ଯୋଗଦାନ ଓ ୧୯୯୦ରେ ଅବସର ଗ୍ରହଣ । ୧୯୮୪ର ୧୯୮୮ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଅଧୀନରେ Administrative Glossary ଓ Legal Glossary ର Compiler ଭାବେ କାର୍ଯ୍ୟ ସଂପାଦନ, ଅବସର ଗ୍ରହଣ ପରେ ଋଷିକେଶର ଯୋଗବେଦାନ୍ତ ଏକାଡେମୀରେ କିଛି ଦିନ ପାଇଁ ପ୍ରଫେସର ଭାବରେ ନିଯୁକ୍ତି ।

ଶ୍ରୀଯୁକ୍ତ ଷଡଙ୍ଗୀ ସର୍ବଭାରତୀୟ ସ୍ତରରେ ଜଣେ ପ୍ରତିଭାବାନ ପଣ୍ଡିତ ଭାବେ ସ୍ୱୀକୃତ । B.H.U ଅଧୀନରେ ' Comparative Study of Siksas' ବିଷୟରେ ବଶେଷ ଅନୁଶୀଳନ କରି ସେ ଏକ ଗ୍ରନ୍ଥ ପ୍ରଣୟନ କରିଛନ୍ତି । ତାଙ୍କ କୃତିଗୁଡ଼ିକ ହେଉଛି ଖାଡଙ୍ଗା ଭାଗବତ ଓ ଓଡ଼ିଆ ରାମଚରିତ ମାନସର ସଂପାଦନା, ଚତୁରୀ ଚାତୁରୀ ( ସଂସ୍କୃତ ଶୁକ ସପ୍ତତିର ଅନୁବାଦ), ବଙ୍ଗଳା ପଦ୍ୟ 'କୃଷ୍ଣ ପ୍ରେମ ରଙ୍ଗିଣୀ'ର ଓଡ଼ିଆ ପଦ୍ୟାନୁବାଦ । ଇଂରାଜୀ ରଚନାଗୁଡ଼ିକ ହେଉଛି - Ten Topics of Bhagabat,

Rajyatantra in the Mahabharat, Critical Study of 'Sidhanta Darpan' by Balavadra Vidyabhusan. ବ୍ୟକ୍ତିଗତ ଜୀବନରେ ଶ୍ରୀଯୁକ୍ତ ଷଡ଼ଙ୍ଗୀ ଜଣେ ନିରାସକ୍ତ, ନିରଳସ, ସରଳ ଓ ରସାମୋଦୀ ମଣିଷ ଭାବରେ ବନ୍ଧୁ ମହଲରେ ଆଦୃତ ।

**ଡଃ ବିଚିତ୍ରାନନ୍ଦ ମହାନ୍ତି :**



ଜନ୍ମ : ୧୯୩୪ ଫେବୃୟାରୀ ୫

ସ୍ଥାନ : ବୁହାଳୋ, କଟକ

ଖ୍ରୀଷ୍ଟ କଲେଜରୁ ଓଡ଼ିଆରେ ଅନର୍ସ ସହିତ ବି.ଏ ଏବଂ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ୍. ଏ ପାଶ୍ । ଓଡ଼ିଶା ଇଞ୍ଜିନିୟରିଂ ସ୍କୁଲ, ଏନ୍. ସି.ସି. ଏକାଡ଼େମୀ(ପୁରନ୍ଦର), ଅଫିସରସ୍ ଟ୍ରେନିଙ୍ଗ ସ୍କୁଲ ( କାମଟି), ସ୍କୁଲ ଅଫ ଆର୍ଟିଲେରି (ଦେଓଲାଲି, ମହାରାଷ୍ଟ୍ର) ପ୍ରଭୃତି ବିଭିନ୍ନ ଅନୁଷ୍ଠାନରୁ ବୈଷୟିକ ଶିକ୍ଷାଲାଭ ।

ଖ୍ରୀଷ୍ଟ କଲେଜରୁ ୧୯୫୮ -୫୯ ରେ ଅଧ୍ୟାପକ ଜୀବନର ଶୁଭାରମ୍ଭ । ପରେ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା ଓ ଉପାଧ୍ୟକ୍ଷ ତଥା ଅଧ୍ୟକ୍ଷ ଭାବରେ ଦାୟିତ୍ୱ ସଂପାଦନ । ୪ର୍ଥ ଓଡ଼ିଶା ବାଟାଲିୟନର ସେକେଣ୍ଡ- ଇନ୍ କମାଣ୍ଡ ଏବଂ ପ୍ରଥମ ଓଡ଼ିଶା ବ୍ୟାଟେରି (ଆର୍ଟିଲେରି) ର ଅଫିସର କମାଣ୍ଡିଂ ଭାବରେ କାର୍ଯ୍ୟ ସଂପାଦନ ।

ଡଃ ମହାନ୍ତି ଶିକ୍ଷାବିଭାଗର ପ୍ରଶାସନିକ କ୍ଷେତ୍ରରେ ବିବିଧ ଅନୁଭୂତିର ଅଧିକାରୀ । ଜନସଂଖ୍ୟା ଓ ପରିବେଶ ବିଜ୍ଞାନ ବିଭାଗରେ ସେ ବହୁ ରଚନାତ୍ମକ କାର୍ଯ୍ୟ କରି ପ୍ରଶଂସିତ ହୋଇଛନ୍ତି । ତାଙ୍କର ସାହିତ୍ୟିକ ଜୀବନ ବେଶ୍ ପରିବ୍ୟାପ୍ତ । ଛାତ୍ରାବସ୍ଥାରେ ବିଶ୍ୱବିଦ୍ୟାଳୟ ଓଡ଼ିଆ ପ୍ରବନ୍ଧ ପ୍ରତିଯୋଗିତାରେ ୨ଥର ପ୍ରଥମ ସ୍ଥାନ ଅଧିକାର କରି ପୁରସ୍କୃତ । '' ସାହିତ୍ୟ, ସଂସ୍କୃତି ଓ ସ୍ଥାପତ୍ୟରେ ନୃସିଂହ : ଭାରତରେ ଓ ଓଡ଼ିଶାରେ ନୃସିଂହ ଆରାଧନା'' ଶୀର୍ଷକ ଗବେଷଣାତ୍ମକ ନିବନ୍ଧ ଲେଖି ପି.ଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ଓଡ଼ିଆ କବି ପରିଚୟ ଗ୍ରନ୍ଥମାଳା ସମେତ ବହୁ ପୁସ୍ତକର ପ୍ରଣେତା, ଗାନ୍ଧି ରଚନାବଳୀ, ନୀଳକଂଠ ଶତବାର୍ଷିକୀ ବକ୍ତୃତା ମାଳା, କର୍ପୂର ମଞ୍ଜରୀ ଇତ୍ୟାଦିର ଅନୁବାଦକ । ଖ୍ରୀଷ୍ଟ କଲେଜର ଓଡ଼ିଆ ସାହିତ୍ୟ ସମାଜ ଗଠନ ଦିଗରେ ସେ ପ୍ରଥମ ଉଦ୍ୟକ୍ତା ଏବଂ ତାର ପ୍ରଥମ ସଂପାଦକ ।



**ଶ୍ରୀ ବିଜୟଚନ୍ଦ୍ର ମହାପାତ୍ର**

ଜନ୍ମ : ୧୯୩୪, ସ୍ଥାନ : କଟକ ଜିଲ୍ଲା ମାହାଙ୍ଗା ଥାନାର ସଂକ୍ରୋଡ଼ା ଗ୍ରାମ ।

ରେଭେନ୍ସା ମହାବିଦ୍ୟାଳୟରୁ ଭୂଗୋଳରେ ଅନର୍ସ ସହିତ ବି.ଏ. ପାଶ ଓ ଓଡ଼ିଆରେ ଏମ.ଏ.ଡିଗ୍ରୀ ଲାଭ, ଓଡ଼ିଶା ସରକାରଙ୍କ ମୃତ୍ତିକା ସଂରକ୍ଷଣ ବିଭାଗରେ ପ୍ରଥମ କର୍ମନିଯୁକ୍ତି, ପରେ ୧୯୫୮ ରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦାନ, ୧୯୭୪ରେ ସ୍ୱେଚ୍ଛାକୃତ ଅବସର ଗ୍ରହଣ । ଆଇନ ଶାସ୍ତ୍ରରେ ଡିଗ୍ରୀ ସହିତ ହିନ୍ଦୁସ୍ଥାନୀ କ୍ଲାସିକାଲ ମିଉଜିକରେ ଡିଗ୍ରୀ ହାସଲ, ବିଶେଷଭାବରେ ସଂଗୀତ ଓ କଳାପ୍ରେମୀ, ୧୯୫୬ରେ Inter-University Youth Festival ନିମନ୍ତେ କ୍ଲାସିକାଲ ମିଉଜିକରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଦିଲ୍ଲୀରେ ପ୍ରତିନିଧିତ୍ୱ । ମୁଦ୍ରଣ ଶିଳ୍ପ ଓ ଗୁଣାତ୍ମକ ମୁଦ୍ରଣ କଳାରେ ସେ ବିଶେଷ ଆଗ୍ରହୀ । ଓଡ଼ିଶାରେ ଅଫସେଟ ଛାପା ପଦ୍ଧତିର ସେ ପ୍ରଥମ ପ୍ରବର୍ତ୍ତକ ।

ଶ୍ରୀଯୁକ୍ତ ମହାପାତ୍ର ଜଣେ ସରଳ, ନିରାଡମ୍ବର, ଉଦାର, ମିଷ୍ଟଭାଷୀ ଓ ବନ୍ଧୁବତ୍ସଳ ବ୍ୟକ୍ତିଭାବରେ ସମସ୍ତଙ୍କର ପ୍ରିୟଭାଜନ ।



**ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର**

ଜନ୍ମ : ୧୯୩୪, ସ୍ଥାନ : ପୁରୀ ଜିଲ୍ଲା ବୀର ବଳଭଦ୍ରପୁର ଶାସନ ।

ଖ୍ରୀଷ୍ଟ କଲେଜରୁ ଆଇ.ଏ. ପାଶ, ୧୯୫୭ରେ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ.ଏ. ପାଶ କରି ଓଡ଼ିଶା ସରକାରଙ୍କ ପ୍ରୌଢ଼ଶିକ୍ଷା ବିଭାଗରେ Writer-cum-Translator ଭାବେ ନିଯୁକ୍ତି, ୧୯୬୦ ମସିହାରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦେଇ

୧୯୯୫ ରେ ରିଡ଼ର ଓ ଉପାଧ୍ୟକ୍ଷ ଭାବରେ ଅବସର ଗ୍ରହଣ । ଜଣେ ନୀତିବାନ, ଶୃଙ୍ଖଳିତ, କର୍ତ୍ତବ୍ୟନିଷ୍ଠ ଓ ଆଦର୍ଶ ଶିକ୍ଷକ ଭାବରେ ଛାତ୍ରମାନଙ୍କ ନିକଟରେ ଆଦରଣୀୟ ।

ସେ NCC ନୌବାହିନୀର ଲେଫ୍‌ଟନାଣ୍ଟ କମାଣ୍ଡର ଭାବରେ କାର୍ଯ୍ୟ ସଂପାଦନ କରିଥିଲେ । ଆକାଶବାଣୀ କଟକ କେନ୍ଦ୍ରର ନାଟକ ବିଭାଗର ଜଣେ ନିୟମିତ କଳାକାର ତଥା 'ରସଧାରା', 'ଅତସୀ କୁସୁମ' ଓ 'ଭକ୍ତି ସଂଗୀତ' କାର୍ଯ୍ୟକ୍ରମର ଆଲୋଚକ । ସ୍ୱଲିଖିତ ଗଳ୍ପ ଗ୍ରନ୍ଥ 'ଆଳାପରୁ ପ୍ରଳାପ' ସମେତ ଅନେକଗୁଡ଼ିଏ ପୁସ୍ତକର ସଂପାଦନା ଓ ସାମାଲୋଚନା କରିଛନ୍ତି । ଅନୁବାଦ ପୁସ୍ତକଗୁଡ଼ିକ ହେଉଛି 'ବିଡମ୍ବିତ' (ଜାଁ ପଲ ସାର୍ତ୍ରେଙ୍କ ଉପନ୍ୟାସ), 'ଶେକ୍‌ସ ବନାମ ଶେଭ' (ବର୍ଣ୍ଣାଡ଼ଶ'ଙ୍କ ପୁତ୍ତଳି ନାଟିକା ), 'କଳାଘୋଡ଼ାର ନିଜକଥା ( ଆନ୍ନା ସିଓ୍ୱେଲଙ୍କ ଶିଶୁ ରଚନା), ମାନବ ସମାଜର ମହାନ ତ୍ରାଣକର୍ତ୍ତା ମାନଙ୍କ ଆଲୌକିକ ବ୍ୟାପାର ( ଡଃ ମନ୍ମନାଥ ଦାସଙ୍କ ଇଂରାଜୀ ପୁସ୍ତକ ) ଉଲ୍ଲେଖଯୋଗ୍ୟ ।



**ଶ୍ରୀ ମୃତ୍ୟୁଞ୍ଜୟ ନାୟକ**

ଜନ୍ମ : ୧୯୩୫ ଡିସେମ୍ବର ୧୩

ସ୍ଥାନ : ଗୋଡ଼ିସାହି, ନୟାଗଡ଼ (ପୁରୀ)

୧୯୫୯ ମସିହାରେ ରେଭେନ୍‌ସା କଲେଜରୁ ଏମ.ଏ. ପାଶ କରିବା ପରେ ସାରଳା ମହାଭାରତ ସଂକଳନ କାର୍ଯ୍ୟରେ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହିତ ସହଯୋଗ, ୧୯୬୦ରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବେ ଯୋଗଦାନ ଏବଂ ସାମୟିକ ଅଧ୍ୟକ୍ଷ ଦାୟିତ୍ୱ ତୁଲାଇ ୧୯୯୫ ଡିସେମ୍ବରରେ ଅବସର ଗ୍ରହଣ । ଜଣେ ଛାତ୍ରପ୍ରିୟ ଅଧ୍ୟାପକ ଭାବରେ ସୁପରିଚିତ । ତାଙ୍କ ରଚିତ ପୁସ୍ତକଗୁଡିକ ମଧ୍ୟରେ 'ଓଡ଼ିଆ ସାହିତ୍ୟର ଇତିହାସ', 'ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ଓ ବିସ୍ତୃତି', 'ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଇତିବୃତ୍ତ', 'ଓଡ଼ିଆ ଗଦ୍ୟ ସାହିତ୍ୟର ଉଦ୍ଭବ ଓ ବିକାଶ' 'ମାଦଳାପାଞ୍ଜି' ଓ 'ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା'ର ସଂପାଦନା ଉଲ୍ଲେଖଯୋଗ୍ୟ । ଏବେ ସେ 'ଜନସୁଧା' ନାମରେ ଏକ ମାସିକ ସାହିତ୍ୟ ପତ୍ରିକା ସଂପାଦନା କରୁଛନ୍ତି ।



ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ
ଜନ୍ମ : ୧୯୩୮ ଅକ୍ଟୋବର ୧୧
ସ୍ଥାନ : କଟକ ଜିଲ୍ଲା କିଶୋରନଗର
ଥାନା ହୋଲିପୁର ।

ଖ୍ରୀଷ୍ଟ କଲେଜରେ ବି.ଏ. ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରି ରେଭେନ୍ସା କଲେଜରୁ ଓଡ଼ିଆରେ ଏମ.ଏ. ପାଶ, ସତ୍ୟବାଦୀ ସାହିତ୍ୟ ସାଧକ 'ନୀଳକଣ୍ଠ' ଶୀର୍ଷକ ନିବନ୍ଧ ଲେଖି ଏମ. ଫିଲ. ଡ଼ିଗ୍ରୀ ଲାଭ, ଚୌଦ୍ୱାର କଲେଜରେ କିଛିଦିନ ଅଧ୍ୟାପନା, ୧୯୭୧ ନଭେମ୍ବର ମାସରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ଯୋଗଦାନ ଏବଂ ୧୯୯୮ ନଭେମ୍ବରରେ ଅବସର ଗ୍ରହଣ । ଖ୍ରୀଷ୍ଟ କଲେଜରେ NSS ଇଉନିଟରେ ୮ ବର୍ଷ ଧରି ପ୍ରୋଗ୍ରାମ ଅଫିସର ଏବଂ କିଛିଦିନ ପାଇଁ ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ସଂପାଦନ । ଶିଶୁ ଉପଯୋଗୀ କବିତା ପୁସ୍ତକ 'ହୀରା, ନୀଳା, ମାଣିକ' ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ପ୍ରବନ୍ଧ ପ୍ରକାଶିତ । ଅବସର ଗ୍ରହଣ ପରେ ସେ ଏବେ ସକ୍ରିୟ ରାଜନୀତିରେ ଯୋଗ ଦେଇଛନ୍ତି । ବନ୍ଧୁ ବତ୍ସଳତା, ଅତିଥି ପରାୟଣତା ଏବଂ ସାଂଗଠନିକତା ତାଙ୍କର ବିଶେଷ ଗୁଣ ।



*ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ସାମୟିକ ଭାବେ ଆଉ ଯେଉଁ କେତେଜଣ ବରେଣ୍ୟ ଅଧ୍ୟାପକ କାର୍ଯ୍ୟ କରି ଭିନ୍ନ ଭିନ୍ନ ବିଭାଗକୁ ଚାଲି ଯାଇଥିଲେ, ସେମାନଙ୍କ ସମ୍ପର୍କରେ ଆମେ ବିବରଣୀ ସଂଗ୍ରହ କରି ନପାରି ଦୁଃଖିତ । ଆଜି ବିଗତ ଅର୍ଦ୍ଧଶତାବ୍ଦୀର ଗୌରବମୟ ଅଧ୍ୟାୟକୁ ସ୍ମରଣ କଲାବେଳେ ସେମାନଙ୍କ ପ୍ରତି ଆମେ ଆମର ସଶ୍ରଦ୍ଧ ଭକ୍ତି ନିବେଦନ କରୁଛୁ ।*

*- ସଂପାଦକ*

# ଓଡ଼ିଆ କବିତା
## (୧୯୬୮-୮୦)
## ଏକ ଦୃଷ୍ଟିପାତ

•

ଡକ୍ଟର ଶତ୍ରୁଘ୍ନ ପାଣ୍ଡବ



*ଅଧ୍ୟାପକ, ଓଡ଼ିଆ ବିଭାଗ,*
*କେନ୍ଦ୍ରାପଡ଼ା କଲେଜ*

୧୯୬୮-୮୦ କବିତାର ଏକ ସାମଗ୍ରିକ କଳନା କଲାବେଳେ କହି ରଖିବା ପ୍ରାସଙ୍ଗିକ ଯେ କୌଣସି 'ବାଦ' ଦୃଷ୍ଟିରୁ ମୁଁ କବିତାକୁ ବିଚାର କରିନାହିଁ କିମ୍ବା ଉଦାହରଣ ପ୍ରସଙ୍ଗରେ ଏ କାଳର ସମସ୍ତ କବିଙ୍କ ନାମୋଲ୍ଲେଖ କରିନାହିଁ । ଏପରିକି ସୁପ୍ରତିଷ୍ଠିତ କବି ସଚ୍ଚି ରାଉତରାୟ, ବିନୋଦ ନାୟକ , ଗୁରୁ ପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚିନ୍ତାମଣି ବେହେରା ପ୍ରମୁଖଙ୍କୁ ମୁଁ ପ୍ରାୟ ବାଦ ଦେଇଛି । ବିଷୟଟି ଏକ ସନ୍ଦର୍ଭ ବ୍ୟାପାର । ତେଣୁ ପ୍ରବନ୍ଧରେ ଏ ପର୍ଯ୍ୟାୟର କେତୋଟି ଦିଗକୁ ଦେଖାଇବାର ପ୍ରୟାସ କରାଯାଇଛି ମାତ୍ର ।

ସପ୍ତମ ଦଶକର ଶେଷ ପାଦରେ ଓଡ଼ିଆ କବିତା କ୍ଷେତ୍ରରେ ପ୍ରବୀଣ ଓ ପ୍ରତିଷ୍ଠିତମାନଙ୍କ ପଦଚିହ୍ନ ସୁସ୍ପଷ୍ଟ ଅଟେ । ମାତ୍ର କ୍ରମଶଃ ସେମାନଙ୍କ ପଦଧ୍ୱନି ଶିଥିଳ ହୋଇଯାଇଥିବାର ଲକ୍ଷ୍ୟ କରାଯାଏ । ତରୁଣତମ ପୀଢିର ଦୃପ୍ତ ପଦଧ୍ୱନି ଗୁରୁଗମ୍ଭୀର ଶୁଭେ । ପରିମାଣାତ୍ମକ ଓ ଗୁଣାତ୍ମକ ମାନ ଦୃଷ୍ଟିରୁ ସପ୍ତମ ଦଶକର ମଧ୍ୟଖଣ୍ଡରେ ଯେତେ ବେଶି ସ୍ୱର୍ଦ୍ଧିତ ନୂତନ ସ୍ୱରର ଆବିର୍ଭାବ ଘଟିଛି, ଓଡ଼ିଆ କବିତା କ୍ଷେତ୍ରରେ ପୂର୍ବରୁ ସେପରି ଘଟି ନଥିଲା । ୧୯୬୮ ପରବର୍ତ୍ତୀ ସମୟ ହେଉଛି ଓଡ଼ିଆ କବିତାର ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ କେତେକ ନୂଆ ପ୍ରୟୋଗ ଓ ପ୍ରସ୍ତୁତିର କାଳ । ଅଧିକାଂଶ ସ୍ୱର ନୂତନ , କ୍ୱଚିତ୍ ପରିପକ୍ୱ ଏବଂ ଅଷ୍ଟମ ଦଶକରେ ଏହି ସ୍ୱରଗୁଡ଼ିକର ବିକାଶ ଏବଂ କେତେକଙ୍କ କ୍ଷେତ୍ରରେ ଉତ୍ତରଣ ସଂଘଟିତ ହୋଇଛ ।

## ଷଷ୍ଠ ଓ ସପ୍ତମ ଦଶକ କବିତାର ବୈଶିଷ୍ଟ୍ୟ :

ଷଷ୍ଠ ଦଶକ ଏବଂ ବିଶେଷକରି ସପ୍ତମ ଦଶକର ବୈଶିଷ୍ଟ୍ୟ ହେଉଛି ଆନ୍ତର୍ଜାତିକ କାବ୍ୟାଦର୍ଶ ସହ ବିଶେଷ ପରିଚିତି ସ୍ଥାପନ ଏବଂ ସେହି ପରିପ୍ରେକ୍ଷୀରେ ସ୍ୱକୀୟ କାବ୍ୟାଦର୍ଶ ନିର୍ମାଣ । ଏହାକୁ ନିମ୍ନମତେ ଅଧିକ ନିର୍ଦ୍ଦିଷ୍ଟ ଓ ତଥ୍ୟଭିତ୍ତିକ କରାଯାଇପାରେ ।

(କ) ଚିତ୍ରକଳ୍ପ ଓ ପ୍ରତୀକ ଆନ୍ଦୋଳନ ପ୍ରତି ଅଧିକ ଉନ୍ମୁଖତା ପ୍ରଦର୍ଶନ ଏବଂ ତା' ସହିତ ନିଜ ମାଟି ଓ ସଂସ୍କୃତିରୁ ଉପାଦାନ ସଂଗ୍ରହକରି ତା'ର ପ୍ରୟୋଗ ।

(ଖ) ଏଲିୟଟ, ଏଜରା ପାଉଣ୍ଡ ଏବଂ ହୁଇଟମ୍ୟାନ ପ୍ରଭୃତିଙ୍କ କବିତାରେ ପ୍ରତିଫଳିତ ପାଶ୍ଚାତ୍ୟର ମୂଲ୍ୟବୋଧ ବିପର୍ଯ୍ୟୟ ଜନିତ ଛିନ୍ନମୂଳ ନେତିବାଦୀ ଭାବ , ଅନ୍ୟାନ୍ୟ ଭାବଧାରା ସହ ସଂପୃକ୍ତି , ତା'ର ଅନୁସରଣ ଓ ଅନୁକରଣ ।

(ଗ) ବୋଦ୍‌ଲେୟାରୀୟ ପ୍ରବୃତ୍ତିଗତ ଏବଂ ବିଶେଷତଃ ଅବଚେତନର ମୁକ୍ତ ପ୍ରବଣତା ପ୍ରତି ଆଗ୍ରହ, ତା'ର ପରିପ୍ରକାଶ ପାଇଁ ଚେଷ୍ଟା, କିରକେଗାର୍ଡ଼ ଓ ସାର୍ତ୍ରେ ପ୍ରମୁଖଙ୍କ ସ୍ଥିତିବାଦୀ ଆଭିମୁଖ୍ୟ ଗ୍ରହଣ ।

(ଘ) ପାଶ୍ଚାତ୍ୟ ସାହିତ୍ୟର ଯୁଦ୍ଧ ସଂଜାତ ମୂଲ୍ୟବୋଧର ଅବକ୍ଷୟ ଓ ଶୂନ୍ୟତା-ବୋଧକୁ ଉତ୍କଳୀୟ ଓ ଭାରତୀୟ ଜୀବନ-ଜିଜ୍ଞାସା ପରିପ୍ରେକ୍ଷୀରେ ସଂଯୋଜିତ ଓ ଅନୁଭବ କରିବାର ପ୍ରୟାସ ଏହି ସମୟରୁ ହିଁ କ୍ରମଶଃ ବଳବତ୍ତର ହୋଇଛି । ପୁନଶ୍ଚ ପାଶ୍ଚାତ୍ୟ କାବ୍ୟାଦର୍ଶର ସମ୍ପୃକ୍ତିରୁ ମିଥ୍‌ର ପ୍ରୟୋଗ ସହିତ ବ୍ୟକ୍ତିକ ତଥା ସାମୂହିକ ଯନ୍ତ୍ରଣାବୋଧରୁ ନିସ୍ତାର ପାଇବା ପାଇଁ ଏକ ଆଧ୍ୟାତ୍ମିକ ସ୍ପର୍ଶ ବ୍ୟାକୁଳତାର ସ୍ୱର ଏହି ସମୟରୁ ହିଁ ପ୍ରକାଶ ପାଇଛି । ପାଶ୍ଚାତ୍ୟ ଜୀବନ-ଦୃଷ୍ଟି ସହିତ ଭାରତୀୟ ଜୀବନ ଦୃଷ୍ଟିର ସମ୍ମିଶ୍ରଣ ଘଟିଛି । ସପ୍ତମ ଦଶକରେ ଙ ଞ ଲୁ ଗୋଷ୍ଠୀ ଗଠନ, ଯୁବଲେଖକ ସମ୍ମେଳନର ପ୍ରତିଷ୍ଠା, ପାଶ୍ଚାତ୍ୟ ହିପି ସଂସ୍କୃତିର ଅନୁପ୍ରବେଶ, ତରୁଣ ପୀଢ଼ିର କାବ୍ୟସ୍ୱରରେ ସ୍ୱଚ୍ଛନ୍ଦ ପରିପ୍ରକାଶ ମୁକ୍ତ ମାନସିକତା ପୋଷଣପାଇଁ କେତେକାଂଶରେ କ୍ଷେତ୍ର ମଧ ପ୍ରସ୍ତୁତ କରିଛି । ଅଧିକାଂଶ କବିଙ୍କର ଦୃଷ୍ଟିକୋଣ ସ୍ଥୂଳଭାବରେ ରୋମାଣ୍ଟିକ ବାସ୍ତବବାଦୀ ଦୃଷ୍ଟିକୋଣ । ଉପର୍ଯ୍ୟୁକ୍ତ ପୃଷ୍ଠଭୂମିକୁ ନେଇ ୧୯୬୮-୮୦ କବିତାର ବିକାଶ-ବିବର୍ତ୍ତନ ସଂଘଟିତ ।

ସପ୍ତମ ଦଶକର କବିତାରେ ଆନ୍ତର୍ଜାତିକ କାବ୍ୟାଦର୍ଶକୁ ଓଡ଼ିଆ କବିତାସହ ସମ୍ମିଶ୍ରଣ କରାଇବାର ପ୍ରଚେଷ୍ଟା ହିଁ ବିଶେଷଭାବରେ ଲକ୍ଷଣୀୟ । କାବ୍ୟର ଆଙ୍ଗିକ କେତେକ କ୍ଷେତ୍ରରେ ଜଟିଳ । ଆବେଗଧର୍ମିତା ଅପେକ୍ଷା ବୌଦ୍ଧିକତାର ପରିପ୍ରକାଶ, ଭଙ୍ଗୀ ଚମତ୍କାରିତା ପ୍ରଦର୍ଶନରେ ଗୁରୁତ୍ୱ କେତେକ କାବ୍ୟସ୍ୱରକୁ କ୍ଲିଷ୍ଟ କରିଛି । ମୌଳିକ ଜୀବନଦୃଷ୍ଟିର ଅଭାବ, ଅନୁକରଣ

ପଟୁତା ସ୍ୱାଭାବିକ ବିକାଶକୁ କିଛିଟା ପ୍ରତିହତ କରିଛି । ଅନେକ ନୂତନ ସ୍ୱରରେ ପରିପକ୍ୱତା ଆସି ନଥିବାରୁ ଏପରି ହୋଇଛି ବୋଲି କୁହାଯାଇପାରେ । କ୍ରମଶଃ ଆବେଗ ଓ ବୌଦ୍ଧିକତା ମଧ୍ୟରେ ସମନ୍ୱୟ ଆସିଛି ଏବଂ କବିତାର ପ୍ରକାଶଭଙ୍ଗୀ ସ୍ୱଚ୍ଛନ୍ଦତା ଓ ସରଳତା ଆଡ଼କୁ ମୁହାଇଛି । ଭାଷା ଓ ଭାବବିନ୍ୟାସରେ ପାରମ୍ପରିକତାକୁ ପରିହାର କରିବା ସଙ୍ଗେ ସଙ୍ଗେ ପରମ୍ପରାର ନୂତନ ବିନ୍ୟାସ ଓ ଉଦ୍ଭାସନ ପ୍ରତି କବିମାନସ ସଚେତନ ହୋଇଛି । କବିତାର ଆତ୍ମକୈନ୍ଦ୍ରିକ ଭାବଜଗତଟି ଅଧିକ ଭାବରେ ନୈର୍ବ୍ୟକ୍ତିକ ହୋଇଛି । ଏ ପର୍ଯ୍ୟାୟର କାବ୍ୟପୁରୁଷଟିକୁ ଅନ୍ୟଭାବରେ ବିଚ୍ଛିନ୍ନତା ଜର୍ଜରିତ ନୈରାଶ୍ୟବାଦୀ ଆଧ୍ୟାତ୍ମିକ ଆକୁତିପ୍ରତ୍ୟାଶୀ ବୋଲି କୁହାଯାଇପାରେ । ଏହି ଦୃଷ୍ଟିଭଙ୍ଗୀଟି ଯେତେ ବେଶି ସ୍ୱ-ପରିବେଶର ସାମାଜିକ, ଆର୍ଥନୈତିକ ବୈଷମ୍ୟସଂଜାତ ନୁହେଁ ଅଧିକତଃ ବିଶ୍ୱମନୋଭୂମି ଓ ପାଶ୍ଚାତ୍ୟ ଜୀବନାଦର୍ଶ ପ୍ରସୂତ । କ୍ରମଶଃ ଓଡ଼ିଆ କବିତାର ଭାବ ଓ ଗଢଣରେ ଅଧିକ ମୌଳିକତା ଓ ସମନ୍ୱୟବାଦିତା ଦୃଷ୍ଟିଗୋଚର ହୁଏ । ଆଲୋଚ୍ୟ ୧୯୬୮-୮୦ କବିତା ରେ ଏହାର ସ୍ୱର ଅନୁରଣିତ । ୧୯୬୮ ପୂର୍ବବର୍ତ୍ତୀ ବା ସପ୍ତମ ଦଶକର ଏହି ବୈଚିତ୍ର୍ୟର ବିଶେଷ ପ୍ରତିଫଳନକୁ ସୂଚାଇବାପାଇଁ ବିଳମ୍ବରେ ପ୍ରକାଶିତ ଗୁରୁପ୍ରସାଦ ମହାନ୍ତିଙ୍କ 'ସମୁଦ୍ର ସ୍ନାନ'(୧୯୭୦), ସଚ୍ଚି ରାଉତରାୟଙ୍କ ବିଭିନ୍ନ ମସିହାନାମ ସଂଶ୍ଳିଷ୍ଟ କେତେକ କବିତା ଗ୍ରନ୍ଥ ତଥା ୧୯୬୭ ରେ ପ୍ରକାଶିତ 'ପିଙ୍ଗଳାର ସୂର୍ଯ୍ୟ', 'ଅନେକ କୋଠରୀ', 'ଅଷ୍ଟପଦୀ', 'କ୍ରମଶଃ', ୧୯୬୮ରେ ପ୍ରକାଶିତ 'ଅନୁଷ୍ଟୁପ୍', 'ବସନ୍ତର ସ୍କେଚ୍', 'ନୀଳହଂସର ଜ୍ୱାଳା' ଆଦି ସଂକଳନ ତଥା ପତ୍ରପତ୍ରିକାରେ ପ୍ରକାଶିତ ସଂଖ୍ୟାଧିକ କବିତାକୁ ଉଦାହରଣ ଭାବେ ନିଆଯାଇପାରେ ।

**ଭାବ ବୈଚିତ୍ର୍ୟ :**

୧୯୬୮-୮୦ର କବିତା ତାର ଭାବ ଓ ଗଢଣ କ୍ଷେତ୍ରରେ ଅନେକଟା ପରିପକ୍ୱତା ଓ ପୂର୍ଣ୍ଣତା ପାଇଛି । ମୌଳିକ ଜୀବନଦୃଷ୍ଟି ସହିତ ସାବଲୀଳ ସ୍ୱଚ୍ଛନ୍ଦ ପ୍ରକାଶଭଙ୍ଗୀ , ବହୁବିଧ ଭାବ ସଙ୍ଗମ , ମାଟି, ପାଣି ପବନର ନିଜସ୍ୱ ବାସ୍ନାରେ ଏ ସମୟର ଓଡ଼ିଆ କବିତା ସମୃଦ୍ଧ । ଏହା ଖୁବ୍ ବେଶି ନଗରୀ କେନ୍ଦ୍ରିକ ମାନସିକତା ଏବଂ ପୋଡ଼ାଭୂଇଁ ବା 'ନଷ୍ଟ ଭୂଇଁ'ର ଜ୍ୱଳନକୁ ପ୍ରକାଶ କରିବାରେ ଧ୍ୟାନନିଷ୍ଠ ନ ହୋଇ ଏକ ଭାରତୀୟ ମାନସିକତା ଓ ସମନ୍ୱୟବାଦୀ ଭାବ ପ୍ରତିଷ୍ଠା ପ୍ରତି ସଚେତନ ରହିଛି । ୧୯୬୭ ମସିହାକୁ ପରୀକ୍ଷା ଓ ପ୍ରସ୍ତୁତିର ଏକ ଶୀର୍ଷବିନ୍ଦୁ ଧରିନେଲେ ତାର ଫଳଶ୍ରୁତି ହେବ ଅଷ୍ଟମ ଦଶକ ବା ୧୯୬୮-୮୦ କବିତା । ବ୍ୟକ୍ତିକ ସ୍ତରରେ ବିଭିନ୍ନ କବିଙ୍କର ପ୍ରୟୋଗ ଓ ପ୍ରଯତ୍ନ ବଳବତ୍ତର ରହିଥିଲେ ମଧ୍ୟ ସାମଗ୍ରିକ ଆବେଦନଟି ବେଶ୍ ଶ୍ରୀ ଓ ସମୃଦ୍ଧିସମ୍ପନ୍ନ ଏବଂ କେତେକ ସ୍ୱର ଅଷ୍ଟମ ତଥା ନବମ ଦଶକରେ ଉତ୍ତରଣମୁଖୀ । ଏଠାରେ କହିରଖିବା ପ୍ରାସଙ୍ଗିକ ଯେ ବ୍ୟକ୍ତିକ ଜୀବନଚର୍ଯ୍ୟା ଦୃଷ୍ଟିରୁ ଓଡ଼ିଶାର ଅଧିକାଂଶ କାବ୍ୟସ୍ୱର ଯଥେଷ୍ଟଭାବେ କ୍ରିୟାଶୀଳ (Activist) ନୁହନ୍ତି । ଅତଏବ ଜୀବନ ଦୃଷ୍ଟିଟି

ଯେତେ ବେଶି ଅନୁଭୂତିଶାଣିତ ହେବାକଥା, ତା' ନହୋଇ ଅଧିକ ଧାରଣା , ବିଶ୍ୱାସ ଓ ପ୍ରଜ୍ଞାଯୁକ୍ତ ହୋଇଛି । ଅନ୍ୟ ଭାବରେ କହିଲେ ବହୁ ଶକ୍ତିଶାଳୀ ସ୍ୱର ଅକୃତ୍ରିମଭାବେ ସ୍ୱଚ୍ଛନ୍ଦ ନୁହନ୍ତି । ଗଦ୍ୟଛନ୍ଦରେ ଅସଫଳ ବ୍ୟବହାର ହେଉ କି ଭାବର ଜଟିଳତାକୁ ପ୍ରକାଶ କରିବାରେ ଭାଷା ସଂଯୋଜନା ଦୁର୍ବଳ ହୋଇଥିବା ହେତୁ ହେଉ , ଏହି ୧୩/ ୧୪ ବର୍ଷର ଓଡ଼ିଆ କବିତାର ପ୍ରଥମାର୍ଦ୍ଧଟି ସଙ୍ଗଠନ ଓ ଭାବଆବେଦନରେ ଜଟିଳ ବା ଦୁରୂହ ମନେହୋଇଥାଏ । ଏଥିନେଇ ଦୁର୍ବୋଧ ଓ ଅବୋଧତାର ଅଭିଯୋଗ କମ୍ ନୁହେଁ । ରମାକାନ୍ତ ରଥ, ସୌଭାଗ୍ୟ କୁମାର ମିଶ୍ର, ଦୀପକ ମିଶ୍ର, ହରପ୍ରସାଦ ଦାସ, ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ପ୍ରାରମ୍ଭିକ କବିତାରୁ ଏହି ଭାବ ଓ ବିନ୍ୟାସ-କାଠିନ୍ୟର ଉଦାହରଣ ନିଆଯାଇପାରିବ । ଅତିରିକ୍ତ ଗଦ୍ୟମୟତା ଓ ପ୍ରତୀକୀକରଣ ଏହି ଜଟିଳତା ସୃଷ୍ଟିର କାରଣ ହୋଇପାରନ୍ତି । ଏହି କବିମାନେ ଅଷ୍ଟମ ଦଶକର ମଧ୍ୟଭାଗରେ ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ସୁବୋଧ, ସ୍ୱଚ୍ଛନ୍ଦ ଓ ପରିଚ୍ଛନ୍ନ ହୋଇ ଉଠିଛନ୍ତି । ଏହା ଅଷ୍ଟମ ଦଶକର ମଧ୍ୟଭାଗରେ ନୂଆକରି ଲେଖୁଥିବା କବିମାନଙ୍କ କବିତାରେ ବଡ଼ ସଚେତନ ଭାବରେ ପ୍ରତିଫଳିତ ହୋଇଛି ।

ଆଲୋଚ୍ୟ କାଳରେ ନୂତନ କବିମାନଙ୍କର ଆବିର୍ଭାବ, ପ୍ରତିଷ୍ଠିତମାନଙ୍କର ବିକାଶ, ଉତ୍ତରଣ ଏବଂ ଅଜସ୍ର ଭାବ-ବୈଚିତ୍ର୍ୟର ପରିସ୍ଫୁଟନ ଏହାର ସ୍ୱରକୁ ବିବିଧ ଓ ବ୍ୟାପକ କରିଛି । କେତେକ ସ୍ୱରରେ ବିରୋଧାଭାସ ଏବଂ ଦୃଷ୍ଟିକୋଣରେ ଭିନ୍ନତା ମଧ୍ୟ ରହିଛି । ଜୀବନର ବିଭିନ୍ନ ରାଗ-ଅନୁରାଗ, ସୀମା-ସମ୍ଭାବନା ପରି ବହୁ ପ୍ରଶ୍ନ ଉଙ୍କି ମାରିଛି । ପୂର୍ବରୁ କବିତାରେ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଥିଲା ପ୍ରାୟତଃ ସମୟ ତଥା କବି-ବ୍ୟକ୍ତିତ୍ୱର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଅନୁସାରୀ । ମଧୁସୂଦନ ବା ବୈକୁଣ୍ଠନାଥଙ୍କ ଦାର୍ଶନିକ ଦୃଷ୍ଟିଭଙ୍ଗୀ, ସବୁଜର ସ୍ୱପ୍ନବିଳାସୀ, ସତ୍ୟବାଦୀର ଜାତୀୟବାଦୀ କିମ୍ବା ବହୁ କାବ୍ୟଶିଳ୍ପୀଙ୍କର ପ୍ରଣୟପ୍ରବଣ, ମାନବବାଦୀ ଦୃଷ୍ଟିଭଙ୍ଗୀ ଏବଂ ୧୯୬୮ ପୂର୍ବବର୍ତ୍ତୀ ବାସ୍ତବବାଦୀ ବିଷାଦାକ୍ରାନ୍ତ ସ୍ୱର ଭିନ୍ନ ରୂପ ନେଇଛି । ଜୀବନକୁ ସମକାଳୀନ ଜ୍ଞାନବିଜ୍ଞାନର ବହୁ ଧାରା,ଚେତନାସମୃଦ୍ଧ ବିଶ୍ୱମାନସିକତା ତଥା ସ୍ୱପରିବେଶ ଓ ପରମ୍ପରାର ଭାବ ନିୟନ୍ତ୍ରଣ କରୁଥିବାରୁ, ଜୀବନ ପ୍ରତି କବିର ଦୃଷ୍ଟିଭଙ୍ଗୀ ହୋଇଛି ଅଧିକ ବିଶ୍ୱସ୍ତ ଓ ବ୍ୟାପ୍ତ । ପାଶ୍ଚାତ୍ୟ ଦୃଷ୍ଟି ବଦଳିଛି ଏବଂ ମୌଳିକ ମାନସିକତା ସହିତ ସମନ୍ୱୟବାଦୀ ବିଶ୍ୱମାନସିକତାର ବିକାଶ ଘଟିଛି । ଜୀବନର ବିଫଳତା, ଅପାରଗତା, ଅର୍ଥହୀନତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ, ମହତ୍ତର ସମ୍ଭାବନା ପ୍ରତି ସଂଶୟ ଏବଂ ସର୍ବୋପରି ଜୀବନ ଅନ୍ୱେଷାର ବିଶେଷ ଦିଗ କବିତାରେ ପ୍ରତିଫଳିତ ହୋଇଛି । ଏ ସ୍ୱର ଏକାନ୍ତଭାବେ ପାଶ୍ଚାତ୍ୟ ସ୍ଥିତିବାଦୀ ଦର୍ଶନ ପ୍ରଭାବିତ ବୋଲି କହିଲେ ଠିକ୍ ହେବନାହିଁ । ଶୂନ୍ୟତାବୋଧ, ବିଚ୍ଛିନ୍ନତାବୋଧ, ଅପ୍ରାପ୍ତି ଓ ଅଚରିତାର୍ଥତାର ସ୍ୱର ଏ ପର୍ଯ୍ୟାୟରେ ବହୁ ପରିପ୍ରେକ୍ଷଣ ଓ ପ୍ରସଙ୍ଗ ନେଇ ଉଚ୍ଚାରିତ : 'ମୁଁ ଏକ ଉତ୍ତପ୍ତ ଅନ୍ଧାର/ ମୁଁ ଝରିଛି ଟୋପା ଟୋପା ସ୍ତନର ତାରାରୁ' ( ଶଙ୍ଖନାଭି: ହରିହର

ମିଶ୍ର ), 'ମୁଁ ବିକ୍ଷିପ୍ତ ମରୁଭୂମି ଅନାଦି କାଳର ' ( ସମର୍ପଣ : ଦୀପକ ମିଶ୍ର ), ' ମୁଁ ସିନା ଖରାରେ ପୋଡ଼େ,ବର୍ଷା ଖାଏ, ଶୀତ ସହେ /ସାହାଡ଼ା ଗଛର ଅପରିଚ୍ଛନ୍ନ ଗଣ୍ଡି ଭିତରେ ଲୁଚିଥିବା ହେ ସୁନ୍ଦରୀ........ (ସାହାଡ଼ାସୁନ୍ଦରୀ : ପ୍ରତିଭା ଶତ୍‌ପଥୀ) ଇତ୍ୟାଦି ସ୍ୱର ପ୍ରାୟତଃ ମୌଳିକ ଜୀବନାନୁଭୂତି ଓ ଜୀବନ ବିଡ଼ମ୍ବନାରୁ ସୃଷ୍ଟ । କାବ୍ୟ ଚେତନାର ବିଶ୍ୱମାନସିକତା ସହ ପରିଚୟ ହେତୁ ସମକାଳୀନତା ପରିପ୍ରେକ୍ଷୀରେ ମନୁଷ୍ୟର ସ୍ଥିତି ଓ ନିୟତି ସମ୍ପର୍କରେ ଏକ ଜିଜ୍ଞାସାବୋଧ ସୃଷ୍ଟି ହୋଇଛି । ଏକ ଦାର୍ଶନିକ ମନନଶୀଳ ଯୁକ୍ତିପ୍ରବଣ ଦୃଷ୍ଟିଭଙ୍ଗୀ ବହୁ କାବ୍ୟ ସ୍ୱରକୁ ନିୟନ୍ତିତ କରିଛି । ରମାକାନ୍ତ ରଥଙ୍କ ' ସନ୍ଦିଗ୍ଧ ମୃଗୟା', 'ସପ୍ତମ ଋତୁ', ସୌଭାଗ୍ୟ କୁମାର ମିଶ୍ରଙ୍କ ' ନଈ ପହଁରା ' କାବ୍ୟଗ୍ରନ୍ଥରେ ଏଇ ସ୍ୱରର ମାର୍ମିକ ପ୍ରତିଫଳନ । ଜଗନ୍ନାଥ ପ୍ରସାଦ ଦାସ, କମଳାକାନ୍ତ ଲେଙ୍କା, ଦୀପକ ମିଶ୍ର ପ୍ରମୁଖଙ୍କ କବିତାରେ ମଧ ଏହି ଦୃଷ୍ଟିକୋଣ ପ୍ରତିଫଳିତ । କବି ଦୃଷ୍ଟିରେ ଜୀବନ ମନେହୋଇଛି ଏକ ରୁଗ୍‌ଣ, ବିଭକ୍ତ ସତ୍ତା, ମୃତ୍ୟୁମୁଖୀ ଓ ଯନ୍ତ୍ରଣା ଜର୍ଜରିତ । କାବ୍ୟ ନାୟକ ଜୀବନକୁ ଗ୍ରହଣ ନ କରି ତା'ର ଚାରା କ'ଣ ?

ଶୁଖିଲା କୂଅ ଗରା ବାଲ୍‌ଟି ଧରିଯିବା ଲୋକଙ୍କର
କୁଢ଼ କୁଢ଼ କଙ୍କାଳରେ ପରିପୂର୍ଣ୍ଣ ଏ ମରୁଭୂମିରେ
ଜଣେ ମାତ୍ର ଲୋକ ଅଛି -
ସୁଲତାନ,ସେ କାନ୍ଦିବ ନାହିଁ××
ପ୍ରତ୍ୟେକ ମୁହୂର୍ତ୍ତ/ଛବିଳ ତା' ଅସରନ୍ତି ମରୁଡ଼ିର
କର୍କଶ ଖରାରେ । ( ବନ୍ଦୀର କାୟାକଳ୍ପ : ରମାକାନ୍ତ ରଥ )
କୂଳରେ ଆଉ ଅଛି କ'ଣ ?
ଆ, ଡ଼େଇଁ ପଡ଼ିବା ପାଣିକି ( ନଈ ପହଁରା : ସୌଭାଗ୍ୟ କୁମାର ମିଶ୍ର )
ପତ୍ନୀଙ୍କୁ ସନ୍ତାନ ଦିଅ, ସନ୍ତାନକୁ ଉତ୍ତରାଧିକାର
ଓ ତା'ପରେ ତ଼ାଳ ପତ୍ରର କୁହୁକ ଛତାକୁ ବୁଜିଧର
ଦୁଃଖ ଅବାନ୍ତର । ( ବନ୍ଦୀ : ହରପ୍ରସାଦ ଦାସ )

ଜୀବନର ଦୁଃଖ ଓ କାରୁଣ୍ୟକୁ ସ୍ୱପରିବେଶ ଓ ମାନସିକତାର ମାପକାଠିରେ ଅଧିକ ଭାବେ ବିଶ୍ଳେଷରେ କରାଯାଇଛି । ସୌଭାଗ୍ୟ ମିଶ୍ର ପ୍ରଶ୍ନ କରିଛନ୍ତି - ' ରୋଗ କ'ଣ ? ଭୀଷଣ ଓ ଭୟଙ୍କର ଜୀବନ ଜୀବନ ' ( ଜୀବନ ଚିଂତା) । ଦୀପକ ମିଶ୍ର ଜୀବନ ହିଁ ଗଭୀରତମ ଦୁଃଖ ବୋଲି କହନ୍ତି । ଜୀବନକୁ ସପ୍ତମ ଋତୁ ଓ ବିଷାଦର ଋତୁ ବୋଲି କାହିଁକି କୁହାଯିବ ? ସରୋଜ ରଞ୍ଜନ ମହାନ୍ତି ପ୍ରଶ୍ନ କରିଛନ୍ତି । ଗୋଟିଏ ପଟେ ନୈରାଶ୍ୟ ଓ ଅନ୍ୟ ପକ୍ଷରେ ଗଭୀର ଆଶାବାଦ ଓ ଆସ୍ତିବାଚକ ସ୍ୱର ଅନୁରଣିତ ହୋଇଛି । ନୈରାଶ୍ୟର ସ୍ୱର ମୂଳରେ ମଧ ରହିଛି ଜୀବନ ଅନୁରାଗର ଝଙ୍କାର । ସୀତାକାନ୍ତ ମହାପାତ୍ରଙ୍କର ' ସମୁଦ୍ର' ଓ 'ଚିତ୍ରନଦୀ' କବିତାଗ୍ରନ୍ଥ ଗଭୀର

ଜୀବନ ମୋହର ଉଚ୍ଚାରଣ । ଏହା ଜୀବନଚର୍ଯ୍ୟା, ମୃତ୍ୟୁସଚେତନତା ଭିତରେ ଆତ୍ମ ଅନ୍ୱେଷଣ ତଥା ଉର୍ଦ୍ଧ୍ୱତର ସମ୍ଭାବନାର ଆକୁତି ଦିଏ । ରାଜେନ୍ଦ୍ର କିଶୋର ପଣ୍ଡା କେଉଁ ମୋକ୍ଷ ବା ମୁକ୍ତିକାମନା ଅପେକ୍ଷା ଜୀବନର ବିପୁଳ ଢ଼ଅଁର ଭିତରେ ଛୋଟ ହୁଲିଡ଼ଙ୍ଗା ପରିକା ଭାସିରହି ତା'ର ହର୍ଷ ବିଷାଦକୁ ଗ୍ରହଣ କରିବାପାଇଁ ସ୍ପର୍ଦ୍ଧା ପୋଷଣକରନ୍ତି । ସୌଭାଗ୍ୟ ମିଶ୍ରଙ୍କ 'ଅନ୍ଧ ମହୁମାଛି' ରେ ଜୀବନ ପ୍ରତି ଯେଉଁ ଶ୍ରଦ୍ଧା ଓ ଆସ୍ଥା ପ୍ରକାଶ ପାଇଛି, ତାହା ୧୯୬୮-୮୦ କବିତାର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଯାବତୀୟ କଷ୍ଟ ଓ ସ୍ଖଳନ ସତ୍ତ୍ୱେ ଜୀବନର ସକଳ ଅପ୍ରାପ୍ତି, ଅସାରତା ଓ ବିରୋଧାଭାସକୁ ବିନା ସର୍ତ୍ତରେ ଏହା ଗ୍ରହଣକରି ନେବାର ଅନୁପ୍ରେରଣା ପ୍ରଦାନକରେ । ଅନ୍ଧ ଏଣୁ ମହୁମାଛି । ଶୁଣ୍ଢ ପୂରାଇ ତାକୁ ସବୁ ବିଡ଼ମ୍ବନା ଓ ବିରୋଧାଭାସକୁ, ଆନନ୍ଦ ଓ କୁତ୍ସିତତାକୁ ଚୋଷିନେବାକୁ ହୁଏ । ସବୁଠି ମହୁ : ଫୁଲରେ ଏବଂ କୁଷ୍ଠରୋଗୀର ଘା'ରେ ବି । ପାଶ୍ଚାତ୍ୟ ପ୍ରଭାବରୁ ଜୀବନଦୃଷ୍ଟିକୁ ମୁକ୍ତକରିବା ପାଇଁ ସର୍ବତ୍ର ଏକ ଆନ୍ତରିକ ପ୍ରୟାସ କବିମାନଙ୍କ ଅବଚେତନରେ ହିଁ ଗୁରୁତ୍ୱ ପାଇଛି ।

ବାଛି ବାଛି ନଈକୂଳେ ମୋ ପାଇଁ ତୋଳାହେଲା ଘର
ମନ ଛାଏଁ ଅଭ୍ୟସ୍ତ ହେବ ଦେଖି ବଢ଼ିପାଣି ଆଉ ମାଟିଆ କୁମ୍ଭୀର
(ଅବଜ୍ଞାର ମନ : ଦୀପକ ମିଶ୍ର)

ମୋତେ ଏଇ ବର ଦେ'ରେ ଜୀବନ !
ଥରକୁ ଥର ମୁଁ ଯେମିତି ତୋ'ର/ ଅଥଳ ଅଥୟ ଢ଼ଅଁର ଭିତରେ
ଅତି ଛୋଟ ଏକ ହୁଲି ଡ଼ଙ୍ଗାପରି/ ଏମିତି ଉଲ୍ଲାସରେ, ବେଦନାରେ
ନାଚୁଥିବି, ଡ଼େଉଁଥିବି, ଘୂରୁଥିବି, ଛିଟ୍‌କୁଥିବି
ମୋକ୍ଷ ଫୋକ୍ଷ ମୋର ଲୋଡ଼ା ନାହିଁ । (ଜୀବନପ୍ରତି : ରାଜେନ୍ଦ୍ର କିଶୋର ପଣ୍ଡା)

ଜୀବନ ବିଡ଼ମ୍ବନା ଓ ଅପ୍ରାପ୍ତିର ଅନୁଭବ ଏବଂ ତାକୁ ଅନୁରାଗ ସର୍ବସ୍ୱ କରିବାର ପ୍ରତ୍ୟୟ ଓ ମାନସିକତା ଏହି ସମୟଖଣ୍ଡରେ ବେଶ୍ ଅନୁଭବ୍ୟ । ଏ ସ୍ୱର କ୍ରମଶଃ ବଳିଷ୍ଠ ହୋଇଛି । ଜୀବନ ଯନ୍ତ୍ରଣାର ଉଲଙ୍ଘନ ଓ ଚେତନା ଉତ୍ତୀର୍ଣ୍ଣତାପାଇଁ ପ୍ରୟାସ ଓ ପ୍ରଯତ୍ନ ଜାରି ରହିଛି । ଊଣା ଅଧିକେ ଏ କାଳର ସବୁ କବିଙ୍କ ସ୍ୱରରେ ଏହି ମିଶ୍ର ସ୍ୱର ଅନୁରଣିତ । ଜୀବନଚର୍ଯ୍ୟା ସମ୍ପର୍କରେ ସିଧାସଳଖ କିଛି ବକ୍ତବ୍ୟ ପ୍ରକାଶ କରିବା କିମ୍ବା ସ୍ଥିତିର ପ୍ରତ୍ୟକ୍ଷ ପରିପ୍ରକାଶକୁ ଉପସ୍ଥାପନକରି ଜୀବନ ପ୍ରତି ଏକ ସାମଗ୍ରିକ ଧାରଣା ପୋଷଣ କରିବା ଅସଂପୂର୍ଣ୍ଣ ମନେହୋଇଥାଏ ।

ମୃତ୍ୟୁ ଚେତନା :

ଜୀବନ ଅନୁଭବର ପାଖାପାଖି ରହିଛି ମୃତ୍ୟୁ ସଚେତନତା । ଜୀବନ ପ୍ରତି ଥିବା ଆଭିମୁଖ୍ୟର ଏହା ଏକ ବଳିଷ୍ଠ ଦିଗ । ଜୀବନ ପ୍ରତି ଗଭୀର ଆସକ୍ତି, ଯାତନା ପ୍ରତି ସ୍ପର୍ଶକାତରତା, ସଭ୍ୟତା ଓ ମୂଲ୍ୟବୋଧର ଅବକ୍ଷୟ ଇତ୍ୟାଦିକୁ ପୁଞ୍ଜିକରି ମୃତ୍ୟୁବୋଧର

ସ୍ୱର ସଂଙ୍ଗାତ । ସର୍ବଶକ୍ତିମାନ କାଳ ଭାବେ ମୃତ୍ୟୁର ଚିରନ୍ତନ ରୂପ ଓ ବୈଚିତ୍ର୍ୟକୁ ସ୍ରଷ୍ଟାମାନସ ଅଙ୍କନ କରିଛି । ମୃତ୍ୟୁଭଳି ଏକ ଆବଷ୍ଟ୍ରାକ୍ଟ ଅଥଚ ବାସ୍ତବ ଓ ଅବବୋଧକୁ କବିତାର ଥିମ୍ ଓ ବିଷୟବସ୍ତୁ ଭାବେ ଗ୍ରହଣକରିବା ଆଲୋଚ୍ୟ ୧୯୬୮-୮୦ ପର୍ଯ୍ୟାୟରଏକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ । ମୃତ୍ୟୁବୋଧ ଯା' ପୂର୍ବରୁ କେବେ ଏତେ କଳାତ୍ମକ ଓ ବୈଚିତ୍ର୍ୟ ରୂପରେ ଚିତ୍ରିତ ହୋଇନାହିଁ । ମୃତ୍ୟୁର ଉପନିଷଦୀୟ ଅମୃତମୟ ଅବବୋଧ କିମ୍ବା ରବୀନ୍ଦ୍ରନାଥଙ୍କ 'ଶ୍ୟାମସମ' ମାନସିକତା ତ ଆଉ କେଉଁଠି ତା'ର ଭୀଷଣ ଭୟଙ୍କର ରୂପ ଚିତ୍ରିତ ହୋଇଛି । ପାରମ୍ପରିକ ଦୃଷ୍ଟିଭଙ୍ଗୀ ସହିତ ନୂତନ ଦୃଷ୍ଟିଭଙ୍ଗୀର ସମନ୍ୱୟ ଘଟିଛି । ବହୁ ଉପମା, ରୂପକ, ଚିତ୍ରକଳ୍ପ, ପ୍ରତୀକ ମାଧ୍ୟମରେ ମୃତ୍ୟୁ ରୂପାୟିତ ହୋଇଛି । ମୃତ୍ୟୁପ୍ରତି ପ୍ରକାଶ ପାଇଛି ଶାଣିତ ବ୍ୟଙ୍ଗ,ଶ୍ଳେଷ ଏବଂ ସଂବେଦନା । ଗଭୀର ଜୀବନ-ଆସକ୍ତିରୁ ଏହା ସୃଷ୍ଟ । ମୃତ୍ୟୁର ଦୁର୍ବିନୀତ ଓ ଭୟଙ୍କର ରୂପ ଅପେକ୍ଷା କାନ୍ତ କମନୀୟ ଶ୍ରଦ୍ଧାଶୀଳ ଏବଂ ଅନ୍ୟପକ୍ଷରେ କାକୁଷ୍ଟ, ସ୍ନେହକାଙ୍ଗାଳ ଅସହାୟରୂପ ମଧ୍ୟ ପ୍ରକଟିତ ହୋଇଛି । କବି ହୃଦୟର ସ୍ନେହ ସଂବେଦନାରେ ମୃତ୍ୟୁ କେଉଁଠି ମର୍ଯ୍ୟାଦାବନ୍ତ ତ ଆଉ କେଉଁଠି ମାତୃତ୍ୱର ମମତାରେ ଛଳ ଛଳ । ଗଭୀର ଜୀବନାନୁରାଗ, ମଙ୍ଗଳ ଆକାଂକ୍ଷା, ଉର୍ଦ୍ଧ୍ୱତର ସମ୍ଭାବନା ବା ଉତ୍ତୀର୍ଣ୍ଣତା ପ୍ରୟାସ ତଥା ଜୀବନର ଦାର୍ଶନିକ ଅବବୋଧ ନେଇ ଏ ପର୍ଯ୍ୟାୟର ମୃତ୍ୟୁ ସଚେତନତା ସବଳିତ । ପାଶ୍ଚାତ୍ୟ ମୃତ୍ୟୁ ସଚେତନତାର ଧାରଣା ଅପେକ୍ଷା ଏହା ଅଧିକ ଭାବରେ ଭାରତୀୟ ପରମ୍ପରା ତଥା ମୌଳିକ ଜୀବନ ଦୃଷ୍ଟିର ପରିଚାୟକ । ମୃତ୍ୟୁ ଚେତନାଟି ସମୁଦ୍ର, ନଦୀ, ଶାଗୁଣା, ଚିଲ,ପେଚା, ଅରଣାମଇଁଷି, ବାମନଭିକ୍ଷୁକ, ସବା ସାନପୁଅ, ରମଣୀର କୋଳ, ଅତିଥି, ମାଲଭାଈ ଇତ୍ୟାଦି ବହୁ ପ୍ରତୀକ ବା ଚିତ୍ରରେ ଅଭିବ୍ୟଂଜିତ ହୋଇଛି । କିଛି ପ୍ରତୀକ ପାରମ୍ପରିକ ହୋଇଥିଲେ ମଧ୍ୟ ନୂତନ ପ୍ରୟୋଗରେ ଅଭିଷିକ୍ତ । ଜୀବନ ଯନ୍ତ୍ରଣାପିଷ୍ଟ କାବ୍ୟ ନାୟକ ଦୃଷ୍ଟିରେ ମୃତ୍ୟୁ 'ଛେଉଣ୍ଡ' ଓ 'ନିର୍ବୋଧ' । ଅସଲ ମୃତ୍ୟୁ ଆସିବା ଆଗରୁ ମଣିଷ ବହୁବାର ମରିସାରିଥାଏ । ମୃତ୍ୟୁ ବହୁ ଭାବରେ, ବହୁ ରୂପରେ ଆସେ । ମୃତ୍ୟୁର ସତ୍କାରପାଇଁ କାବ୍ୟ ନାୟକ ତା'ର ଶବକୁ ଶ୍ମଶାନଘାଟ ନେବାର ପ ରିକଳ୍ପନା ମଧ କରିଛି । ଦେହର ଯାତ୍ରାକୁ ବିମାନର ଯାତ୍ରା, ଜାହାଜ ବା ଟ୍ରେନ୍‌ଯାତ୍ରା ବୋଲି ତର୍କଣା କରାଯାଇଛି । ରମାକାନ୍ତ ରଥଙ୍କ 'ସପ୍ତମ ଋତୁ', 'ସଚିତ୍ର ଅନ୍ଧାର', ଦୀପକ ମିଶ୍ରଙ୍କ 'ନିର୍ଜନ ନକ୍ଷତ୍ର', 'ଅରଣା ମଇଁଷି', ସୀତାକାନ୍ତ ମହାପାତ୍ରଙ୍କ 'ସମୁଦ୍ର', ଜଗନ୍ନାଥ ପ୍ରସାଦ ଦାସଙ୍କ ' ଅନ୍ୟ ସବୁ ମୃତ୍ୟୁ ଓ ଅନ୍ୟାନ୍ୟ କବିତା' ପ୍ରମୁଖ କବିତା ଗ୍ରନ୍ଥ ମୁଖ୍ୟତଃ ଆଲୋଚ୍ୟକାଳର ମୃତ୍ୟୁ ସଚେତନତା ଏବଂ ଅନ୍ୟ ପକ୍ଷରେ ଜୀବନାନୁରାଗର ଭାଷା ବହନ କରନ୍ତି । ମୃତ୍ୟୁ ସଚେତନତା ଭିତରେ ବ୍ୟକ୍ତିର ମୁକ୍ତି, ଉତ୍ତୀର୍ଣ୍ଣତା ଓ ଉର୍ଦ୍ଧ୍ୱତର ସମ୍ଭାବନାର ସ୍ୱର ମଧ୍ୟ ପ୍ରତିଫଳିତ ହୋଇଛି । ଅନେକତ୍ର ବୌଦ୍ଧିକତା ଓ ଦାର୍ଶନିକତାର ପରିପ୍ରକାଶ ଘଟିଛି ।

ଏଠାରେ ମୃତ୍ୟୁର ଗନ୍ଧ
ବେଳେବେଳେ ଉତ୍କଟ ତ ପୁଣି
ଦୁଃଖ କଷ୍ଟ ପୋଛିଦେଇ ମହକି ଯାଉଛି
କଅଁଳ ହାଡ଼ରେ,ଏହି ନଈ କୂଳେକୂଳେ । ( ସ୍ଥାୟୀ ବାସିନ୍ଦା : ରମାକାନ୍ତ ରଥ )

ଜାଣିଚି ପଛରେ ଆସୁଚ, ଆସୁଚ
ଲକ୍ଷ୍ମୀପାଦ ପକେଇ ପକେଇ
ନୁପୂରର ରୁଣୁଝୁଣୁ ଶୁଭୁଚି, ଶୁଭୁଚି
କେତେ ଜନ୍ମ, କେତେ ମୃତ୍ୟୁ ଡ଼େଇଁ ? ( ସମୁଦ୍ର :ସୀତାକାନ୍ତ ମହାପାତ୍ର )

ମୃତ୍ୟୁ ପଡ଼େ ଝରି
ବିଶୁଦ୍ଧ ବିଭୂତିପରି ଲୋକଙ୍କ କାନ୍ଧରେ । ( ପାରିହେବା : ଦୀପକ ମିଶ୍ର )

ମୃତ୍ୟୁ ଅନୁଭବଟି ପ୍ରେମ, ଦେହବୋଧ, ସୌନ୍ଦର୍ଯ୍ୟର ଅବକ୍ଷୟ, ବୈରାଗ୍ୟ ଭାବନା ଓ ସନ୍ନ୍ୟାସଚେତନା ସହ ମଧ୍ୟ କ୍ଷେତ୍ର ବିଶେଷରେ ସମୀକୃତ ହୋଇଛି । ଅତଏବ ମୃତ୍ୟୁ ଚେତନା ଅନେକଭାବେ ଜୀବନର ବହୁଧା ଦିଗ ସହ ସଂପୃକ୍ତ । ମୃତ୍ୟୁ ପ୍ରତି ଏକ ସ୍ନେହମୟ କଲ୍ୟାଣମୟ ତଥା ମହିମାମଣ୍ଡିତ ଭାବ ପୋଷଣକରିବା ୧୯୬୮-୮୦ ପର୍ଯ୍ୟାୟର କବିତାରେ ଅଧିକ ଭାବେ ପରିଦୃଷ୍ଟ ।

ଦେହବାଦ ଓ ରୂପତୃଷ୍ଣା :

ଆଲୋଚ୍ୟ କାଳର କବିତାରେ ପ୍ରେମର ସ୍ୱରକୁ ମଧ୍ୟ ଭିନ୍ନ ଦୃଷ୍ଟି କୋଣରୁ ବିଚାର କରାଯାଇପାରେ । ୧୯୬୮ ପୂର୍ବବର୍ତ୍ତୀ କବିତାରେ ଗୁରୁପ୍ରସାଦଙ୍କ କାବ୍ୟ ନାୟକ ଦେହ, ଗୋଲ ଛାତି, ସମ୍ଭୋଗ ପ୍ରକ୍ରିୟା ଓ ତଦ୍‌ଜନିତ କ୍ଳାନ୍ତି ଓ ଅବକ୍ଷୟର କଥା କହିଛି । ଭାନୁଜୀ ରାଓଙ୍କ କବିତାରେ ଦେହବୋଧ ସହିତ ସୌନ୍ଦର୍ଯ୍ୟ ନିରାଜନା, ରମାକାନ୍ତ ରଥ, ଜଗନ୍ନାଥ ପ୍ରସାଦ ଦାସଙ୍କ କବିତାରେ ଦାର୍ଶନିକ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ବିନୋଦ ନାୟକ ପ୍ରବୃତ୍ତିର ସରୀସୃପୀୟ ପ୍ରବଣତାକୁ ରୂପ ଦେଇଛନ୍ତି । ‘ ଆତ୍ମନେପଦୀ’ରେ ସୌଭାଗ୍ୟ ମିଶ୍ର ରୋମାଣ୍ଟିକ ଭାବାବେଗ ଅବତାରଣା କରିଛନ୍ତି । ୧୯୬୮-୮୦ କବିତାରେ ଯେ ଏ ଭାବ ଆଦୌ ନାହିଁ, ଏପରି ନୁହେଁ । ସ୍ଥୂଳ ଭାବରେ କହିଲେ- ରୋମାଣ୍ଟିକ ଓ ଆଣ୍ଟିରୋମାଣ୍ଟିକ ବା କଳ୍ପନା- ବାସ୍ତବତାର ମିଶ୍ର ସ୍ୱର ପ୍ରେମାବେଗକୁ ନିୟନ୍ତ୍ରଣ କରିଛି । ପ୍ରେମରେ ଆବେଗ ପ୍ରବଣତା ଅପେକ୍ଷା ଯୁକ୍ତିନିଷ୍ଠତା, ବିଶ୍ଳେଷଣ ଧର୍ମିତା ଓ ଭୋଗ ସର୍ବସ୍ୱ ଅପେକ୍ଷା ମାଧୁର୍ଯ୍ୟମୟରୂପ ଅଧିକ ପ୍ରକଟିତ । ଦେହବୋଧରୁ ଦେହ ସର୍ବସ୍ୱତା ଓ ରୂପତୃଷ୍ଣାର ପରିପ୍ରକାଶ ସହିତ ପ୍ରେମ ବିଦେହ ବା ଦେହୋତ୍ତର ଅବବୋଧକୁ ଉତ୍ତୀର୍ଣ୍ଣ ହୋଇଛି । କେଉଁଠି ଦୈହିକ ଲାଳସା ବା ବିକୃତି ସର୍ବସ୍ୱତା

ଉଲଙ୍ଗ ଭାବରେ ପ୍ରକାଶ ପାଇଛି । ନାରୀ ଏକ ସୌନ୍ଦର୍ଯ୍ୟମୟୀ ସତ୍ତା ଭବେ ଉପସ୍ଥାପିତା । ଯେ ଏକ ଆଧାର, ପକ୍ଷ ବା ମାଧ୍ୟମ ଭାବେ ଚିତ୍ରିତା । ନାରୀ ସତ୍ତାଟି ଏକ ବ୍ୟକ୍ତିତ୍ୱ ଭାବେ କେଉଁଠି ବି ଆତ୍ମପ୍ରକାଶ କରିଥିବା ମନେହୁଏ ନାହିଁ। ତେବେ ଗୋଟିଏ ବାକ୍ୟରେ କହିଲେ ଏ ପର୍ଯ୍ୟାୟର ପ୍ରେମ ଚେତନାଟି ରୂପ ଓ ଦେହବୋଧର ଯେପରି ନିରାଜନା କରିଛି, ରୂପାତୀତ ଓ ଦେହୋତ୍ତର ଭାବ ପ୍ରତି ମଧ୍ୟ ସେପରି ପ୍ରବଣତା ପ୍ରକାଶକରିଛି । ପ୍ରେମ ଚେତନାଟି ମୃତ୍ୟୁ, ଅବକ୍ଷୟ-ଭାବନା,ପାପବୋଧ ଓ ସୌନ୍ଦର୍ଯ୍ୟ ତଲ୍ଲୀନତା ସହ ସମନ୍ୱିତ ହୋଇଛି ।

ପ୍ରେମ ଏକ ରଢ଼ ନିଆଁ / ପୋଡ଼ିଦିଏ ସବୁ କିଛି
ହାତର ପାପୁଲି ଆଉ ଆଖିପତା, ଓଠର ପାଖୁଡ଼ା
ପ୍ରଜ୍ୱଳନ୍ତ ମେଘଭଳି ଘୋଟିଯାଏ ଦେହର ଆକାଶ । ( ପ୍ରେମ : ଭାନୁଜୀ ରାଓ )

ପ୍ରେମ ମାନେ କିଛି ନୁହଁ : ଆଖି ଏବଂ ଆଖିର ନିଃଶ୍ୱାସ
ବତାସରେ ଘୂରାଇବା ।
ସମ୍ଭବତଃ ରକ୍ତର ନଈକୁ ଭିଡ଼ି / ରକ୍ତର ତୁଠରେ
ଠିଆ କରାଇବା ।
ବେଶୀ ହେଲେ/ ଓଠ, ସ୍ତନ, ଜଙ୍ଘର ଦ୍ୱନ୍ଦ୍ୱରୁ
ଆପଣାକୁ ନିବର୍ତ୍ତାଇ/ ଶୂନ୍ୟରେଇଁ / ଶୂନ୍ୟକୁ ଯୋଖିବା ।
( ମାନଚିତ୍ର : କମଳାକାନ୍ତ ଲେଙ୍କା )

ତୁମକୁ ଛୁଇଁଲା ପରେ
ପାପ କାହିଁ ପୁଣ୍ୟ କାହିଁ ତୁମରି ଉରୁରେ
ମଲ୍ଲିକା, ମୁଁ ସ୍ୱର୍ଗଚ୍ୟୁତ ଅପଭ୍ରଷ୍ଟ ଦେବତା କେବଳ ।
( ମଲ୍ଲିକା ମଲ୍ଲିକା : ଦେବଦାସ ଛୋଟରାୟ)

ରମାକାନ୍ତ ରଥଙ୍କ ' ତୁମେ ' ( ସଚିତ୍ର ଅନ୍ଧାର), ସୌଭାଗ୍ୟ କୁମାର ମିଶ୍ରଙ୍କ 'ହୃଦୟେଶ୍ୱରୀ ', 'ମାୟା ଦର୍ପଣ' ( ଅନ୍ଧ ମହୁମାଛି ), ଦୀପକ ମିଶ୍ରଙ୍କ 'ବୃତ୍ତ' ସଂକଳନର ଅନେକ କବିତା ନିତ୍ୟାନନ୍ଦ ପତିଙ୍କ 'ସପତ୍ନୀକୁ ଶେଷକଥା', 'ମାଳତୀ ଓ ମାୟାମୃଗ' ଆଦି କବିତା ପ୍ରେମାନୁଭବ ଦୃଷ୍ଟିରୁ ଅନୁପମ । ଦେବଦାସ ଛୋଟରାୟଙ୍କ 'ନୀଳ ସରସ୍ୱତୀ' ତଥା ଗିରିଜା କୁମାର ବଳିୟାରସିଂହଙ୍କ 'କ୍ରୌଞ୍ଚମିଥୁନ' ସଙ୍କଳନରେ ପ୍ରେମ ପ୍ରତି ବହୁବିଧ ଏବଂ ସ୍ଥଳବିଶେଷରେ ମାଧୁର୍ଯ୍ୟମୟ ଦୃଷ୍ଟିକୋଣ ପ୍ରକାଶ ପାଇଛି । ଆଲୋଚ୍ୟ କାଳରେ ଜଗନ୍ନାଥ ପ୍ରସାଦ ଦାସ, ଦିଲୀପ ଦାସ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ସରୋଜ ରଞ୍ଜନ ମହାନ୍ତି, ରାଜେନ୍ଦ୍ର କିଶୋର ପଣ୍ଡା,ଦୁର୍ଗା ଚରଣ ପରିଡ଼ା, ବିଭୁଦତ୍ତ ମିଶ୍ର, ମନମୋହନ ଦାଶ,ସୁରେଶ ପରିଡ଼ା ପ୍ରମୁଖଙ୍କ

ବହୁ କବିତାରେ ପ୍ରେମ ଚେତନାର ବହୁବିଧ ରୂପ ପ୍ରକଟିତ । ଦେହ ଅବବୋଧ ଭିତରେ ସ୍ତନ, ଯୋନି, ଓଠ,ଜଙ୍ଘ ଆଦିର ଭିଡ଼, ରୂପ ଓ ରୂପୋତ୍ତର ଅନୁଭବ ପାଇଁ ଉପାଦାନ ହୋଇଛନ୍ତି । ଏ ପ୍ରତି ପ୍ରବଣତା କାବ୍ୟନାୟକର ସୌନ୍ଦର୍ଯ୍ୟ ଅନୁରାଗର ପରିଚାୟକ । ସେକ୍ସର ସ୍ୱାଭାବିକତା ଓ ଭୋଗସର୍ବସ୍ୱତା ପ୍ରେମ ଚେତନାର ଏକ ସ୍ୱର ହୋଇଥିଲାବେଳେ ତାହାର ଏକ ସମାହିତ ବା ଊର୍ଦ୍ଧ୍ୱାୟିତ ଅନୁଭବ ଓ ସୌନ୍ଦର୍ଯ୍ୟ ସଂପ୍ରୀତି ପ୍ରତି କବିମାନସ ସଚେତନ ହୋଇଛି । ଦେହାନୁଭବ ମଧ୍ୟରେ କବି ଅସୀମ ଅନୁଭବ ଓ ସୌନ୍ଦର୍ଯ୍ୟ ତଲ୍ଲୀନତାକୁ ପ୍ରକାଶ କରିଛି ।

ତମ ପରେ କିଛି ନାହିଁ, ଆକାଶ ତମଠିଁ
ସରିଯାଏ, ତମ ନାଭିମଣ୍ଡଳ ପାଖରେ
ସୂର୍ଯ୍ୟ ଚନ୍ଦ୍ର ଝଲସନ୍ତି । × × ମୁଁ ତମ କାନରେ
ମୋ ଦୁଃଖର ଶତାବ୍ଦୀଙ୍କ ଖବର କହିବି
ଦେବୀମାନେ ବୁଝିବା ଭାଷାରେ । ( ଏ ନଈ କୂଳରେ : ରମାକାନ୍ତ ରଥ )

କେତେକଙ୍କ କବିତାରେ ଦାମ୍ପତ୍ୟ-ଅନୁରାଗ ନେଇ ପ୍ରେମ ଅନୁଭବ ସଂପୁଟିତ ଓ ବୈଚିତ୍ର୍ୟମଣ୍ଡିତ । ପ୍ରେମାନୁଭବରେ ପାପପୁଣ୍ୟ ଅନୁଭବ ବା ସ୍ୱର୍ଗ ନରକ ମାନସିକତା , ନାରୀର ରହସ୍ୟମୟ ସତ୍ତାର ପରିପ୍ରକାଶ, ଅପ୍ରାପ୍ତିଜନିତ ଜ୍ୱଳନ ଆଦି ବିଶେଷତ୍ୱ ମଧ୍ୟ ଏ ପର୍ଯ୍ୟାୟର କବିତାରେ ପରିଲକ୍ଷିତ ହୁଏ ।

ଈଶ୍ୱର ଅବବୋଧ :

୧୯୬୮-୮୦ କବିତାରେ ଅନେକଙ୍କ ଠାରେ ଈଶ୍ୱର ଅବବୋଧ ଓ ଆଧ୍ୟାତ୍ମିକ ଆସ୍ପୃହା ମିଶିକରି ରହିଛି । ଏକ ମହତ୍ତର ଚେତନା ବା ବୃହତ୍ତର ସତ୍ତାର ସ୍ପର୍ଶକାମନା ପାଇଁ ଆକାଂକ୍ଷା ଓ ଆକୁଳତା ଏହି ଭାବର ପ୍ରତିନିଧିତ୍ୱ କରେ । ଆଧୁନିକ ସମସ୍ୟା ସଙ୍କଟରୁ ୧୯୬୮ ପୂର୍ବବର୍ତ୍ତୀ ସପ୍ତମ ଦଶକର କବିତାରେ ଈଶ୍ୱରଙ୍କ ପ୍ରତି ଦୃଷ୍ଟିଭଙ୍ଗୀ ହୋଇଉଠିଥିଲା କିଛି ମାତ୍ରାରେ ବ୍ୟଙ୍ଗାତ୍ମକ । ଈଶ୍ୱର ଚେତନା ଅଷ୍ଟମ ଦଶକରେ ମଧ୍ୟ ବ୍ୟଙ୍ଗର ଶରବ୍ୟ ହୋଇଛି । ସୌଭାଗ୍ୟ ମିଶ୍ର, କମଳାକାନ୍ତ ଲେଙ୍କା (‘ଛେରାପହଁରା’, ‘ଈଶ୍ୱରଙ୍କ ଫାଶି ପାଇବା ଦିନ’ ଆଦି କବିତା), ବଂଶୀଧର ଷଡ଼ଙ୍ଗୀ ପ୍ରଭୃତିଙ୍କ କବିତାରେ ଏହି ବ୍ୟଙ୍ଗାତ୍ମକ ଭାବର ପରିଚୟ ମିଳିପାରିବ । ଅନାମ କାବ୍ୟ ସ୍ୱରରେ ଜଗନ୍ନାଥ ଚେତନା ରୂପାୟିତ ହୋଇଛି । ପ୍ରୟୋଗବାଦୀ ଧାରାରେ ମୃତ୍ୟୁଞ୍ଜୟ ନାରାୟଣ ବଳ ଜଗନ୍ନାଥଙ୍କୁ ଉପଜୀବ୍ୟ କରି ଆଧୁନିକ ଜୀବନଯନ୍ତ୍ରଣାକୁ ଅତି ଆବେଗାତ୍ମକ ଭାବେ ପ୍ରକାଶ କରିଛନ୍ତି । ସଂସ୍କୃତି ଓ ପରମ୍ପରାର ଚରାଭୂଇଁରୁ କେହି କେହି ଈଶ୍ୱର ଅବବୋଧର କଥା କହିଛନ୍ତି । ବ୍ରହ୍ମୋତ୍ରୀ ମହାନ୍ତି, ହରିହର ମିଶ୍ର, ଫନୀ ମହାନ୍ତିଙ୍କ କେତେକ କବିତା ଏହି ଧାରାର । ତେବେ ଈଶ୍ୱର ଅବବୋଧ ନେଇ ପ୍ରତିଫଳିତ ଆବେଗ କୌଣସି

ଭକ୍ତିଗତ ବା ଧର୍ମଗତ ଅନୁରାଗବା ଔତ୍ସୁକ୍ୟର ଧାର ଧାରିନାହିଁ । ଐଶ୍ୱରୀୟ ଭାବ କବି ଚେତନାରେ ଦ୍ୱନ୍ଦ୍ୱ ସୃଷ୍ଟି କିରିଛି । ଏକପକ୍ଷରେ ଈଶ୍ୱରଙ୍କ ପ୍ରତି ଏକ ସନ୍ଦିଗ୍ଧ ବା ସଂଶୟାଚ୍ଛନ୍ନ ଦୃଷ୍ଟିଭଙ୍ଗୀ ଏବଂ ଅନ୍ୟ ପକ୍ଷରେ ତାଙ୍କର ମହିମାନ୍ୱିତ ସତ୍ତା ପ୍ରତି ଆସ୍ଥା ପ୍ରକାଶିତ ହୋଇଛି । ଈଶ୍ୱରଙ୍କୁ ଏକ ଆଶ୍ୱାସନାମୟ ସତ୍ତା ହେବାର ପକ୍ଷ ଓ ବିଷୟରେ କବିର ଅବବୋଧ ପ୍ରଶ୍ନପ୍ରବଣ ହୋଇଛି । ଅନ୍ୟ ଭାବରେ କହିଲେ ପାଶ୍ଚାତ୍ୟ ସ୍ଥିତିବାଦୀ ଆଭିମୁଖ୍ୟ ସହ ପ୍ରାଚ୍ୟ ବିଶ୍ୱାସବୋଧର ସମନ୍ୱୟରେ ଈଶ୍ୱର ଅବବୋଧଟି ହିଁ ରୂପାୟିତ । ତେବେ ସଂଶୟ ଅପେକ୍ଷା ବିଶ୍ୱାସର ଭାବଟି ଅଧିକ ।

ଈଶ୍ୱରଙ୍କୁ ଦେଖୁନା ?
ପୂରାପୂରି ସ୍କୁ ଢ଼ିଲା
ୟାଡୁସ୍ୟାଡୁ କେଇଟା ବଙ୍କା ରଙ୍ଗ
କ'ଣ ନା ଇନ୍ଦ୍ରଧନୁ ! ( ହୃଦୟେଶ୍ୱରୀ : ସୌଭାଗ୍ୟ ମିଶ୍ର )

ଈଶ୍ୱର କରିଲେ ଚିନ୍ତା ରାତି ହୁଏ ଅଭୟ ଅରଣ୍ୟ
ଓ ଏ ଘରର ସମର୍ଥ ଲୋକ ସବୁ ପରିଣତ ହେବେ
ମୁର୍ଦ୍ଦାରରେ । ମୁଁ ମଧ ମୁର୍ଦ୍ଦାର ହୋଇ ଜଗିଥିବି
ସେମାନଙ୍କ ସଫା ଶରୀରକୁ । ( ନାମକରଣ : ଦୀପକ ମିଶ୍ର )

ଭଗବାନଙ୍କ ଖୋଦ୍ ଅବତାରର ସ୍ୱରୂପ ତୁ !
ତୋ'ର ବା ଯାଏ କେତେ ଆସେ କେତେ ସବୁ ତ ଈଶ୍ୱର
ସବୁ ତ ଈଶ୍ୱରର ଆଖଡ଼ା
ତୁ ମୂକ ଦରୁଆନ ! ଆପଣାକୁ ଚିହ୍ନି ନ ପକାଇବାର
ପ୍ରବୃତ୍ତିର ଶିକାର । ( ବିଶ୍ୱସ୍ତ ମାଛ : ଗୋପାଳକୃଷ୍ଣ ରଥ )

ଅବଶ୍ୟ କିଛି ପଂକ୍ତି ଈଶ୍ୱର ଅବବୋଧର ବୈଚିତ୍ର୍ୟକୁ ସୂଚାଇବା ଦିଗରେ ଯଥେଷ୍ଟ ହୁଏ ନାହିଁ ।

ବ୍ୟକ୍ତିକ ଯନ୍ତ୍ରଣାବୋଧ, ଅପ୍ରାପ୍ତି, ଅପାରଗତା,ଅପରାଧବୋଧରୁ ମୁକ୍ତିପାଇଁ ବ୍ୟାକୁଳତା, ଏକ ବୃହତ୍ତର ସତ୍ତା ସହ ମିଳିତ ହୋଇ ନିଜର ମଳିନ ସ୍ଥିତିକୁ ନୂଆ ରୂପାନ୍ତର ଦେବା ପିପାସାରେ ଆଧ୍ୟାତ୍ମିକ ଆସ୍ପୃହାର ଦିଗଟି ସମୃଦ୍ଧ । ୧୯୬୮ ପୂର୍ବବର୍ତ୍ତୀ ସମୟ ଥିଲା ମୁଖ୍ୟତଃ ପାଶ୍ଚାତ୍ୟ ଧାରଣାପୁଷ୍ଟ ଜୀବନ ଯନ୍ତ୍ରଣାରୁ ମୁକ୍ତିପାଇଁ ପ୍ରାର୍ଥନା, ଭାଙ୍ଗିଯାଇଥିବା ସଭ୍ୟତା ଓ ମୂଲ୍ୟବୋଧର ଭୂଇଁ ଉପରୁ ଏ କାତରତା । 'କାଳ ପୁରୁଷ ', 'ଅକ୍ରୂର ଉବାଚ' ଏବଂ 'ଅଷ୍ଟପଦୀ' କବିତା ଗ୍ରନ୍ଥରେ ଏହି ସ୍ୱରର ପ୍ରତିଫଳନ । ଅବଶ୍ୟ ଚେତନାର ଉତ୍କର୍ଷପାଇଁ ପ୍ରୟାସ ଖୁବ୍ କମ୍ କବିତାରେ ପ୍ରତିଫଳିତ ହୋଇଥିଲା । ଏଠାରେ ବେଣୁଧର ରାଉତଙ୍କ

'ପିଙ୍ଗଳାର ସୂର୍ଯ୍ୟ' ସ୍ମର୍ତବ୍ୟ । ୧୯୬୮-୮୦ କବିତାରେ ଆଧାତ୍ମିକ ଅନ୍ୱେଷା ଏକ ଦୀପ୍ତ, ଦିବ୍ୟ ସନ୍ନ୍ୟାସୀ ଭାବନାକୁ ପ୍ରକାଶ କରିଛି । ଆତ୍ମାର କରୁଣ କାତରୋକ୍ତିରେ ଏହା ଉଚ୍ଚାଟିତ । ମହତ୍ତର ଓ ଆଲୋକିତ ହେବାର ବ୍ୟାକୁଳତା ଏହି ସ୍ୱରକୁ ଅଧିକ ଦୀପ୍ତ କରିଛି । ଏହି ଅବବୋଧଟି ସୀମା ଓ ଅସୀମକୁ ଯୋଡ଼ିବାର ଭାବ ମଧ୍ୟ ପ୍ରଦାନ କରେ । କେହି କେହି କ୍ଷେତ୍ର ବିଶେଷରେ ଏହାକୁ ରହସ୍ୟବାଦ, ଇନ୍ଦ୍ରିୟୋତ୍ତର /ଊର୍ଦ୍ଧ୍ୱତର ଅନୁଭବ ବୋଲି ଗ୍ରହଣ କରିଛନ୍ତି । ଏହି ଆଧାତ୍ମିକ ଅନ୍ୱେଷାଟି ଉତ୍ତୀର୍ଣ୍ଣ ଏବଂ ମହନୀୟ ହେବାର ବ୍ୟାକୁଳତାରେ ବୁଦ୍ଧିମନ୍ତ । ଏ ପ୍ରସଙ୍ଗର କେତେକ ଉଦାହାରଣ-

ଦୟା ମୁଁ ମାଗୁନାହିଁ ମ'
କରୁଣା ମାଗୁନି ;
ମାଗୁଣି ଖାଲି ଏତିକି
ମୋ ବେଢ଼ଙ୍ଗ ବଙ୍କା ପାପୁଲିରେ
କ୍ଷୀଣ ସ୍ମିତ ଆଲୋକିତ କଳାମୁହଁ ତୋର
ଉଇଁଆସୁ କଳାକାହ୍ନୁ ହୋଇ । ( ନାମକରଣ : ସୀତାକାନ୍ତ ମହାପାତ୍ର)

ହେ ଶୀତଳ ସମୁଦ୍ର ମୁଁ ଆଜିକ ନ ଫେରେ
ତମ ନିକଟକୁ, ଆଜି ରାତି ସାରା
ବୁଲୁଥାଏଁ କକ୍ଷଚ୍ୟୁତ ତାରାଙ୍କ ସାଙ୍ଗରେ ।
× × ଆଜି କିନ୍ତୁ ଛାଡ଼ିଦିଅ ମୋ ଆତ୍ମାକୁ
ବୁଲିବାକୁ ନିର୍ଭୟ ଭାବରେ
ଆଜି ସେ ପାଲଟିଯାଉ ସ୍ୱପ୍ନଟିଏ × (ଅନ୍ଧତର ରାତିଟିଏ : ରମାକାନ୍ତ ରଥ)

ବିଭିନ୍ନ ଅନୁଭବମାନ ଅଧିକ ବ୍ୟକ୍ତିଗତ ମନେହେଉଥିଲେ ହେଁ ଆକୁତି ଓ ଆସ୍ପୃହା ପ୍ରକୃତରେ ଆବେଦନ ଦୃଷ୍ଟିରୁ ବେଶ ସାର୍ବଜନୀନ । ଦୁଃଖ ଓ ଜ୍ୱଳନକୁ ଅତିକ୍ରମକରି ଆତ୍ମା ଉଲ୍ଲସିତ ଓ ବାତ୍ମୟ ହେବାର ପ୍ରଚୋଦନା ପ୍ରଦାନକରେ । ଏ ଆସ୍ପୃହାଟି ବଡ଼ ସୂକ୍ଷ୍ମ ଭାବରେ ବହୁ କବିତାରେ ବ୍ୟଞ୍ଜିତ ହୋଇଛି । କିଛି ଉଦ୍ଧୃତି ଉପସ୍ଥାପନ ପ୍ରକୃତ ଅଭିବ୍ୟକ୍ତିକୁ ପ୍ରକାଶ କରିବାରେ ସମର୍ଥ ହୁଏନା । ସୀତାକାନ୍ତ ମହାପାତ୍ରଙ୍କ 'ସମୁଦ୍ର', 'ଆରଦୃଶ୍ୟ', ପ୍ରମୋଦ ମହାନ୍ତିଙ୍କ 'ଦେବୀପାଦ' (୧୯୮୨), କମଳାକାନ୍ତ ଲେଙ୍କାଙ୍କ 'ସ୍ରୋତର ନାମ ଋତୁ', ପ୍ରତିଭା ଶତପଥୀଙ୍କ 'ସାହାଡ଼ା ସୁନ୍ଦରୀ' ଓ 'ନିୟତ ବସୁଧା'ର ଅନେକ କବିତାରେ ଏହି ଆଧାତ୍ମିକ ଆକୁତି ଓ ଅନ୍ୱେଷାର ସ୍ୱର ଅନୁରଣିତ । ଦୀପକ ମିଶ୍ରଙ୍କ ' କାୟାପ୍ରବେଶ ', 'ସମର୍ପଣ','ଅନ୍ଧକାରର ନିଦ' ଆଦି କବିତା ଆଧାତ୍ମିକ ଆସ୍ପୃହାର ସ୍ୱର ପ୍ରକାଶ କରିବାରେ

ଅନବଦ୍ୟ । ବ୍ରହ୍ମୋତ୍ରୀ ମହାନ୍ତି , ଦୁର୍ଗାଚରଣ ପରିଡ଼ା, ଲକ୍ଷ୍ମୀନାରାୟଣ ମହାପାତ୍ର ପ୍ରଭୃତିଙ୍କ କବିତାରେ ଏଇ ଆଧ୍ୟାତ୍ମିକ ଆସ୍ପୃହାଟି  କିଞ୍ଚିତ୍ ଭିନ୍ନଭାବରେ ପ୍ରକାଶିତ । ରମାକାନ୍ତ ରଥଙ୍କ ଅନେକ କବିତାରେ ଉତ୍ତୀର୍ଣ୍ଣ  ଅବବୋଧର ପ୍ରୟାସ ଏହି ଆଧ୍ୟାତ୍ମିକ ଆସ୍ପୃହାର ସମପର୍ଯ୍ୟାୟୀ ବୋଲି ମନେହୋଇଥାଏ । 'ସପ୍ତମ ଋତୁ' କବିତା ଗ୍ରନ୍ଥରୁ ଉଦାହରଣ ନେଇହେବ । ବଂଶୀଧର ଷଡ଼ଙ୍ଗୀଙ୍କ କେତେକ  କବିତା ଏଦିଗଟିକୁ ସମୃଦ୍ଧ କରିଛି । ନିଜର ସୀମିତ ,ବିଡ଼ମ୍ବିତ  ଅସାର୍ଥକ ସ୍ଥିତିରୁ ଆତ୍ମାର ଏ ଅନ୍ୱେଷଣ ଏକ ଆଶ୍ୱାସନାମୟ କଲ୍ୟାଣକାମୀ ଭାବନାର ପରିଚାୟକ । ଏ ସ୍ୱରରେ ଗୋପନ ନିଶ୍ଚଳ ଅଭିସାରଠୁଁ ମହାଜାଗତିକ ସତ୍ତା ସହିତ ଏକାତ୍ମ ହେବାର ଅଭିଭୂତ ମାନସିକତା ପ୍ରତିଫଳିତ ।

ସମାଜ ଚେତନା :

୧୯୬୮-୮୦ ପର୍ଯ୍ୟାୟରେ ସମାଜ ଚେତନାର ସ୍ୱର ଓ ସ୍ୱରୂପ ପୂର୍ବବର୍ତ୍ତୀ ସମୟ ତୁଳନାରେ ଅଧିକ ତୀବ୍ର ମନେହୋଇଥାଏ । ପ୍ରୟୋଗବାଦୀ ଧାରା ପ୍ରତ୍ୟକ୍ଷ ସମାଜ ଚେତନା ପ୍ରତି ସହଜାତ ଭାବେ ଉନ୍ମୁଖତା ପ୍ରକାଶ କରିନାହିଁ । ଏ ଧାରାରେ ସମାଜ ଚେତନା  ପ୍ରତ୍ୟକ୍ଷ ଓ ମୁଖ୍ୟ ନୁହେଁ । ଆମ କବିତାରେ ସମାଜ ଚେତନାଭିତ୍ତିକ ସାମ୍ୟ-ସମତା ଆଭିମୁଖ୍ୟର ସ୍ୱର ପୂର୍ବବତ୍ ବଳବତ୍ତର ରହିଛି । ଏଥିରେ ସମଗ୍ର ବିଶ୍ୱ ଓ ଭାରତବର୍ଷର ବିଭିନ୍ନ ଘଟଣା କବିତାର ବିଷୟବସ୍ତୁ  ଓ ଆବେଦନକୁ ପ୍ରାଣବନ୍ତ କରିଛି । ଅନନ୍ତ ପଟ୍ଟନାୟକଙ୍କ ପରେ ପରେ ରବି ସିଂ , ମନମୋହନ  ମିଶ୍ର, ରଘୁନାଥ ଦାସ , ବ୍ରଜନାଥ  ରଥଙ୍କ କବିତାରେ ଏଇ ସ୍ୱର ଅଧିକ ଶାଣିତ । ଏମାନଙ୍କ  ସହ  ଯୋଗଦିଅନ୍ତି ପ୍ରସନ୍ନ ପାଟଶାଣି , ସଦାଶିବ  ଦାସ ପ୍ରମୁଖ ବହୁ ନୂତନ ସ୍ୱର । ଅଷ୍ଟମ ଦଶକର  ଶେଷ ପାଦରେ ଡ଼ଃ ପ୍ରସନ୍ନ କୁମାର ମିଶ୍ର, ଆଶୁତୋଷ ପରିଡ଼ା ପ୍ରମୁଖ ଏହି ଧାରାକୁ  ଭିନ୍ନ ମୋଡ଼ ଦେବାରେ ପ୍ରୟାସ କରିଛନ୍ତି । ତେବେ ପ୍ରୟୋଗବାଦୀ ଧାରାରେ  ସମାଜ ଚେତନା ଆଭିମୁଖ୍ୟଟି  ମୁଖ୍ୟତଃ ମାନବିକ  ସମ୍ବେଦନାର ପରିସ୍ଫୁଟନରେ ହିଁ  ରୂପାୟିତ । ଅବହେଳିତ , ଦୁର୍ଦ୍ଦଶାପିଷ୍ଟ ଚରିତ୍ରଙ୍କ  ପ୍ରତି ସହାନୁଭୂତି , ସେମାନଙ୍କର  ସ୍ଥିତି ସହ କାବ୍ୟମାନସର ଆତ୍ମିକ ସହଭାଗିତା , ସମାଜ-ରାଜନୈତିକ ଶଠତା ଓ ଚଞ୍ଚକତା  ପ୍ରତି  ବ୍ୟଙ୍ଗ ଏ କବିତାର ସ୍ୱରକୁ ସମ୍ବେଦନାର୍ଦ୍ର ଏବଂ କ୍ଷେତ୍ର ବିଶେଷରେ ବିଦ୍ରୋହୀ କରିଛି । ବର୍ଣ୍ଣନାତ୍ମକ ଓ ସମ୍ବୋଧନାତ୍ମକ ଢଙ୍ଗରେ  ଏ  କାଳରେ  କିଛି  ଚରିତ୍ରପ୍ରଧାନ  ଓ  ଘଟଣାପ୍ରଧାନ  କବିତା  ରଚିତ  ହୋଇଛି । ଘଟଣାପ୍ରଧାନ କହିଲେ -ସମକାଳୀନ ବିଶ୍ୱ ବା  ଭାରତବର୍ଷ ର କୌଣସି ସମସ୍ୟା ବା ଦୁଃସ୍ଥିତିର ଚରିତ୍ରକୁ  ଭିତ୍ତିକରି  କବିତା  ରଚନା । ନୂତନ  ବାଂଲାଦେଶ  ଗଠନ  -କେନ୍ଦ୍ରିତ  ଯୁଦ୍ଧ  ପ୍ରକ୍ରିୟାରୁ ବରିଷ୍ଠ କବି ସଚ୍ଚିଦାନନ୍ଦ ରାଉତରାୟ କେତେଗୁଡ଼ିଏ ଏକାନ୍ତ ମାନବବାଦୀ କବିତା ଲେଖିଥିବା ସ୍ଥଳେ,  ଅଷ୍ଟମ  ଦଶକର  ମଧ୍ୟବର୍ତ୍ତୀ  କାଳରେ  ଦେଶରେ  ଜାରି  ହୋଇଥିବା   ଜରୁରି  କାଳୀନ ପରିସ୍ଥିତିର କ୍ରିୟା-ପ୍ରତିକ୍ରିୟା ନେଇ ଓଡ଼ିଆ କବିତାରେ ସେପରି କିଛି ଉଲ୍ଲେଖଯୋଗ୍ୟ ଉଲ୍ଲେଖ

ନାହିଁ । ମାତ୍ର ଏଠାରେ ପ୍ରଶ୍ନ ଉଠେ, ମନୁଷ୍ୟର ଭାଗ୍ୟ, ଦୁଃସ୍ଥିତି, ଉତ୍ତୀର୍ଣ୍ଣତା ପ୍ରୟାସ ସର୍ବୋପରି ଭାବଗତ ଆକୁଳତାକୁ ରୂପ ଦେଉଥିବା କବିମାନସକୁ କ'ଣ ଅନ୍ଧ ସମାଜ ସଚେତନ ବୋଲି କୁହାଯିବ ?

ପଲ୍ଲୀ ଓ ପ୍ରକୃତି ସଂପ୍ରୀତି :

ଷଷ୍ଠ ଓ ସପ୍ତମ ଦଶକର କବିତାରେ ପଲ୍ଲୀ ଓ ପ୍ରକୃତି ସଂପ୍ରୀତି ପାଶ୍ଚାତ୍ୟ ଜୀବନାଦର୍ଶର ଅନୁସରଣ ଫଳରେ କିଛିଭାବେ ବ୍ୟାହତ ହୋଇଥିବାର ମନେହୁଏ । ୧୯୬୮-୮୦ ପର୍ଯ୍ୟାୟରେ ସହରୀ ସଭ୍ୟତାର ସଂକ୍ରମଣ ମଧ୍ୟ ଏହି ଉନ୍ମୁଖତା ଦିଗରେ ଅନୁକୂଳ ପରିବେଶ ସୃଷ୍ଟି କରେନାହିଁ । ତଥାପି ଗ୍ରାମ୍ୟବିଭବ ଓ ପ୍ରକୃତିର ସୁଷମା ପ୍ରତି ଅନ୍ତରଙ୍ଗତା, ପ୍ରକୃତିରୁ ଉପମା, ରୂପକ , ଚିତ୍ରକଳ୍ପ ଆଦି ସଂଗ୍ରହ , ପ୍ରକୃତି ଭିତରେ ସୌନ୍ଦର୍ଯ୍ୟ ଅନ୍ୱେଷଣ ପ୍ରଭୃତିରେ ସ୍ରଷ୍ଟାମାନସର ପ୍ରକୃତି ସଂପ୍ରୀତି ପ୍ରକଟିତ ହୋଇଛି । ବିଭିନ୍ନ ଋତୁ ବା ଦୃଶ୍ୟ ଏ ପର୍ଯ୍ୟାୟରେ କେବଳ ସୌନ୍ଦର୍ଯ୍ୟ ଅନ୍ୱେଷଣର କ୍ଷେତ୍ର ଭାବରେ ନୁହେଁ; ମାନସିକ ବା ଆତ୍ମିକ ଅଭିବ୍ୟକ୍ତିର ମାଧ୍ୟମ ଭାବରେ ମଧ୍ୟ ରୂପାୟିତ । ପ୍ରକୃତି ହୋଇଛି ଚେତନାର ଅବସ୍ଥା ବିଶେଷ ପୁଣି ଭଲମନ୍ଦ ସମୟର ବାହକ । ସଂକଳନର ନାମ 'ସପ୍ତମ ଋତୁ', 'ବିଷାଦ ଏକ ଋତୁ', 'ବାଇଗଣୀ ଋତୁ' ।

ଋତୁମାନେ ବହୁ କବିଙ୍କ କବିତାରେ ବିଭିନ୍ନ ପରିପ୍ରେକ୍ଷୀରେ ଚରିତ୍ରାୟିତ ଓ ଚିତ୍ରିତ ହୋଇଛନ୍ତି । ଦୃଶ୍ୟ ଭିତରେ କବି ଦୃଶ୍ୟାନ୍ତରର ରୂପାୟନ କରିଛନ୍ତି । ସୀତାକାନ୍ତ ମହାପାତ୍ର ଓ ପ୍ରତିଭା ଶତପଥୀଙ୍କ ଅସୀମ ଜିଜ୍ଞାସା, ରମାକାନ୍ତ ରଥଙ୍କ ଉତ୍ତୀର୍ଣ୍ଣ ଅବବୋଧର ପୃଷ୍ଠଭୂମି ଭାବେ ପ୍ରକୃତି ହିଁ ରୂପାୟିତ ହୋଇଛି । ସମୁଦ୍ର, ନଦୀ, ଝଡ଼, ବତାସ, ଖରା, ପବନ, ଜହ୍ନରାତି, ବୃକ୍ଷଲତା, କଢ଼, ଫୁଲ ଦୃଶ୍ୟବିଶେଷ ନ ହୋଇ ବିଭିନ୍ନ ଅବସ୍ଥା, ଅବବୋଧ, ଚେତନା, ଆବେଗ ଓ ଅଭିବ୍ୟକ୍ତିର ମାଧ୍ୟମ ପାଲଟିଛନ୍ତି । ଏହି ସବୁ ଶିରୋନାମାରେ ଏ କାଳରେ ଅଜସ୍ର କବିତା ସଙ୍କଳନର ନାମ 'ସମୁଦ୍ରସ୍ନାନ', 'ସମୁଦ୍ର' ,'ଚିତ୍ରନଦୀ' , 'ନଈ ଆଉ ମାଛ ହଂସ ଓ ସାରସ ' ଇତ୍ୟାଦି । ପ୍ରକୃତିର ବିଭିନ୍ନ ଉପାଦାନ କବିତାରେ ନୂଆ ଅର୍ଥ ଓ ଆବେଦନ ମଣ୍ଡିତ ହୋଇଛି । ନିମ୍ନରେ ଦୁଇଟି ଉଦାହରଣ :

ଫଗୁଣର ଖରାବେଳ/କଅଁଳ ପତର ଆଉ ଆମ୍ବ ବଉଳରେ
କି ଭାଷା ଆସିଛି ଆଜି କେଉଁ ଦେଶୁ, କାହା ପାଖୁ
କୋଉଠି ମୋ ଘର ?
କିଏ ଅନେଇ ବସିଛି ମୋ ଲେଉଟାଣି ବାଟକୁ
କୋଇଲିର ଗୀତ ଖାଲି ମୋ ଆଖିରେ ଦିଏ ଲୁହଧାର ।

(ପରକୀୟା : ସୀତାକାନ୍ତ ମହାପାତ୍ର )

ଯାଆରେ ଚଢ଼େଇ ଯାଆ/ ତିନିଟି କୁଟାରେ
ତିଆରି ବସାରୁ ଉଡ଼ି /ଗଛ ପତ୍ର ଶୂନ୍ୟ ଆକାଶରେ
ସୂର୍ଯ୍ୟ ଚନ୍ଦ୍ର ଝୁଅନ୍ତୁ ତୋ'/ କାନର ଝୁମୁକା
ନିଶ୍ଚଳ ପବନେ ଉଡ୍ଡୁ/ ତୋ' ଉଡ଼ନ୍ତା ନାଆର ପତାକା ।

( ଆତ୍ମୀୟତାର ତିନୋଟି ପର୍ଯ୍ୟାୟ : ରମାକାନ୍ତ ରଥ )

ପଲ୍ଲୀଆମୁଖତା କବିତାରେ ଜୀବନମୋହ ଓ ସୌନ୍ଦର୍ଯ୍ୟତୃଷ୍ଣାର ପରିପ୍ରକାଶକ । ଏ ପର୍ଯ୍ୟାୟରେ କବି ସହରୀ ମାନସିକତା ତ୍ୟାଗକରି ଗାଁ ପ୍ରତି ଦୃଷ୍ଟି ଫେରାଇଛି । ଏହି ଦୃଷ୍ଟିକୋଣଟି କେବଳ ଏକ ନଷ୍ଟାଲ୍‌ଜିକ୍ ମୋହ ବା ବିଭବ ପ୍ରତି ଉନ୍ମୁଖତା ନୁହେଁ ; ବରଂ ଧୂଳି, ଧୂଆଁ, ଯାନ୍ତ୍ରିକତା, ପିଚୁ, ସିମେଣ୍ଟର ସହରୀ ମାନସିକତାରୁ ମୁକ୍ତ ହେବାର ଆକାଂକ୍ଷା ପୋଷଣ । ପଲ୍ଲୀ ଆମୁଖତା ଛିନ୍ନମୂଳ ନଗର କେନ୍ଦ୍ରିତ ଜୀବନ ଓ ମାନସିକତାରୁ ମୁକ୍ତିପାଇଁ ଏକ ବଡ଼ ଉପାଦାନ । ପୁନଶ୍ଚ ଏହା ଦୃଶ୍ୟ ତଲ୍ଲୀନତା, ପ୍ରାକୃତିକ ଜୀବନ ଚର୍ଯା ଏବଂ ଚେତନାକୁ ଉତ୍ତୀର୍ଣ୍ଣ କରିବାପାଇଁ ଏକ ମାଧ୍ୟମ । ଗାଁ, ଶ୍ୟାମଳ ବିଲବନ, ବଗିଚା, ନଦୀ, ତଡ଼ାଗ, ହ୍ରଦ, ପଦ୍ମ, କଇଁ, ହଂସ, ସାରସ, ବୃକ୍ଷଲତା ପ୍ରଭୃତି ବହୁ କବିତାରେ ବହୁ ପରିପ୍ରେକ୍ଷୀରେ କଳାତ୍ମକ ଭାବେ ଚିତ୍ରିତ ହୋଇଛନ୍ତି । ସୀତାକାନ୍ତ ମହାପାତ୍ର, ଶରତ ଚନ୍ଦ୍ର ପ୍ରଧାନ, କମଳାକାଂତ ଲେଙ୍କା,ପ୍ରତିଭା ଶତପଥୀ, ପ୍ରମୋଦ ମହାନ୍ତି, ବିବେକାନନ୍ଦ ଜେନା, ନିତ୍ୟାନନ୍ଦ ନାୟକ, ନିଳାଦ୍ରି ହରିଚନ୍ଦନ ଏବଂ ଆଲୋଚ୍ୟ କାଳର ଶେଷ ଭାଗରେ ହୃଷୀକେଶ ମଲ୍ଲିକ, ଅଶ୍ୱିନୀ କୁମାର ମିଶ୍ର, ନୀଳମଣି ପରିଡ଼ା, କୁଞ୍ଜବିହାରୀ ଧଳ ପ୍ରଭୃତିଙ୍କ କବିତାରେ ଅଧିକ ଭାବରେ ଗ୍ରାମୀଣ ବିଭବ ପ୍ରତି ମୋହ ପ୍ରକଟିତ । ହଜି ଯାଉଥିବା ଜୀବନ, ଚଳଣି ଓ ସଂସ୍କୃତିର ବହୁ ଦିଗ ଏ ପର୍ଯ୍ୟାୟୀ କବିତାରେ ରୂପ ପାଇଛି । ଏପ୍ରକାର ଭାରତୀୟ ତଥା ଉତ୍କଳୀୟ ସଂସ୍କୃତି ଓ ଐତିହ୍ୟ ପ୍ରବଣତାର ସ୍ୱର ଏଥିରୁ ବାରିହୁଏ ।

ପ୍ରକୃତି ସଂପ୍ରୀତି ପ୍ରସଙ୍ଗରେ ସୌନ୍ଦର୍ଯ୍ୟ ସଂପ୍ରୀତି ବା ତଲ୍ଲୀନତା ଆଲୋଚ୍ୟ କାଳର ଏକ ସୁଦୃଶ୍ୟ ବିଭାବ । ଏହି ସୌନ୍ଦର୍ଯ୍ୟ ସଂପ୍ରୀତିଟି ବିଭିନ୍ନ ଭାବାଭିବ୍ୟକ୍ତି ସହ ଏପରିଭାବେ ମିଶି ରହିଥାଏ ଯେ, ତାକୁ ନିର୍ଦ୍ଦିଷ୍ଟଭାବେ କଳନା କରିବା ସହଜ ନୁହେଁ । ସୌନ୍ଦର୍ଯ୍ୟରେ ଅଭିଭୂତ ହେବା ନିଶ୍ଚିତଭାବେ ଏକ ଉତ୍ତୀର୍ଣ୍ଣତାର କଥା । ସୌନ୍ଦର୍ଯ୍ୟମଗ୍ନତା ଚେତନାକୁ ଭିନ୍ନ ଜଗତକୁ ନେଇଯାଏ, ଭିନ୍ନ ରୂପାନ୍ତର ଦେଇଯାଏ । ଜୀବନାନୁରାଗ ଓ ଅସୀମ ଜିଜ୍ଞାସା ସୌନ୍ଦର୍ଯ୍ୟ ତଲ୍ଲୀନତାର କଥା । କ୍ଷେତ୍ର ବିଶେଷରେ ଏହାକୁ ରୋମାଣ୍ଟିକ ବା ରହସ୍ୟବାଦୀ ଭାବଧାରା ଭାବରେ ମଧ୍ୟ ଗ୍ରହଣ କରାଯାଇଛି । ସୃଷ୍ଟିର ମହାର୍ଘତାର ପ୍ରକାଶ, ଦିବ୍ୟ ଭାବନାର ସ୍ଫୁରଣ, ଦୃଶ୍ୟ ଭିତରେ ଦୃଶ୍ୟାନ୍ତରର କଳ୍ପନା ଇତ୍ୟାଦି ପ୍ରସଙ୍ଗ ସୌନ୍ଦର୍ଯ୍ୟ ସଂପ୍ରୀତି ବା ସୌନ୍ଦର୍ଯ୍ୟର ନିରାଜନା ଚେତନା ବଳୟକୁ ପ୍ରସାରିତକରେ । ବିଭିନ୍ନ ପଶୁ, ପକ୍ଷୀ, ପତଙ୍ଗ କେବଳ ପ୍ରତୀକ

ଭାବରେ ନୁହେଁ ,ସେମାନଙ୍କୁ ଆଶ୍ରା ଓ ଉପଜୀବ୍ୟ କରି ସ୍ରଷ୍ଟା ମନର ସୌନ୍ଦର୍ଯ୍ୟ ସଂପ୍ରୀତି ଚରମ ଅଭିବ୍ୟକ୍ତି ଲାଭକରିଛି । ପ୍ରକୃତିର ବିଭିନ୍ନ ଦୃଶ୍ୟ, ଉପାଦାନ ହୋଇଛି ଏହି ସୌନ୍ଦର୍ଯ୍ୟ ସଂପ୍ରୀତିର ଉପକରଣ । ପ୍ରକୃତି ଏକ ସ୍ଥୂଳ ସତ୍ତା ନ ହୋଇ ହୋଇଛି, ଆତ୍ମିକ ଅଭିବ୍ୟକ୍ତି ପାଇଁ ଏକ ସୂକ୍ଷ୍ମ ସତ୍ତା । ସୃଷ୍ଟିର ରୁକ୍ଷତା, ଅପୂର୍ଣ୍ଣତା,କୁତ୍ସିତତା ମଧ୍ୟରେ ବି କବି ସୌନ୍ଦର୍ଯ୍ୟର ଅନୁସନ୍ଧାନ କରିଛି । ହଳଦିବସନ୍ତ ପକ୍ଷୀ ଏବଂ ଘାସଫୁଲ ଭିତରେ ସୌନ୍ଦର୍ଯ୍ୟ ସଂପ୍ରୀତି, ଚେତନାରେ ଏକ ମହତ୍ତର ଅବବୋଧ ଦେଇଯାଏ ।

ପଲକେ ଦେଖା ଦେବା ଓ ପଲକେ ଲୁଚିଯିବା
ଯେପରି କି ହଳଦିବସନ୍ତର ଆଭିଜାତ୍ୟ ଓ ବିଳାସ ।
ସେ ଗାୟିକା ନୁହେଁ........ଏକ ଅପାର୍ଥିବ ଗୀତ ସେ ନଟୀ ନୁହେଁ......
ଏକ ଆକାଂକ୍ଷିତ ନାଟର ଦୃଶ୍ୟ ।
ଏକ ଆଶ୍ଚର୍ଯ୍ୟ ବସନ୍ତ ପରି ସେ ଆସେ ଓ ବ୍ୟାକୁଳ ପ୍ରାଣରେ
ମନ୍ଦିରର ସହସ୍ର ଘଣ୍ଟା ବାଜିଉଠେ । ( ହଳଦିବସନ୍ତ : ପ୍ରସନ୍ନ କୁମାର ମିଶ୍ର )

ଫୁଲ କେବେ ଫୁଟିପାରେ
ବିନା ସଭା, କରତାଳି, ଉଦ୍‌ଘାଟନ, ସାମ୍ବାଦିକ ସମ୍ମିଳନୀ
ସର୍ବୋପରି ବିନା ସମ୍ବାଦରେ ।
ପହଁଚି ଦେଖିଲେ କିନ୍ତୁ/ ସତରେ ଘାସ ଗଛରେ
ନଙ୍ଗଳା ନେଳି ଫୁଲଟି
ଥରୁଅଛି କୁହୁଡ଼ିଆ ସକାଳର ଥଣ୍ଡା ପବନରେ
ଧୂଳି ଓ କୋଇଲା ଗୁଣ୍ଡି ଭରପୂର ବଗିଚାର ଏଣ୍ଟୁଡ଼ିଶାଳରେ ।
( ଘାସ ଫୁଲ : ସୀତାକାନ୍ତ ମହାପାତ୍ର )

ହଳଦିବସନ୍ତର ସୌନ୍ଦର୍ଯ୍ୟ ଅପାର୍ଥିବ ଓ ଦିବ୍ୟ ଭାବନାର ଉଦ୍ରେକ କରିଛି । ସେହିପରି ଧୂଳି ଓ କୋଇଲାଗୁଣ୍ଡ ଭର୍ତ୍ତି ସଂସାରର ବଗିଚାରେ ଘାସଫୁଲ ମଧ୍ୟ ସୃଷ୍ଟିର ସୌନ୍ଦର୍ଯ୍ୟ ଓ ମହାନତାକୁ ପ୍ରକାଶ କରିଛି । ଅଧିକାଂଶ କବିଙ୍କ କବିତାରୁ ଏହି ସୌନ୍ଦର୍ଯ୍ୟ ସଂପ୍ରୀତିର ନମୁନା ସଂଗ୍ରହ କରିହେବ ।

**ସମୟ ଚେତନା :**

୧୯୬୮-୮୦ କବିତାରେ ସମୟ ଚେତନାର ପରିପ୍ରକାଶ ମଧ୍ୟ ସୁଦୃଶ୍ୟ । ଏହା ସମକାଳୀନତାକୁ କେବଳ ବୁଝାଏ ନାହିଁ ; କାଳର ପରିପ୍ରକାଶ ଓ ଗତିଶୀଳତାକୁ ମଧ୍ୟ

ସୂଚାଇଥାଏ । 'ସମୁଦ୍ରସ୍ନାନ'ରେ ପାଶ୍ଚାତ୍ୟ କାବ୍ୟାଦର୍ଶର ଆଖିରେ ଭାରତୀୟ ମାନସିକତାକୁ ରୂପ ଦିଆଯାଇଥିଲା । ଆଲୋଚ୍ୟ ସମୟଖଣ୍ଡରେ ସମୟ ପ୍ରତି ଏକ ଦାର୍ଶନିକ ମନନଶୀଳ ଦୃଷ୍ଟିଭଙ୍ଗୀ ଅଧିକ ପ୍ରକାଶ ପାଇଛି । ତାହା ମୁହୂର୍ତ୍ତ ମାନସିକତା, ମୃତ୍ୟୁ ତଥା ଅବକ୍ଷୟବୋଧର ରୂପନେଇ ବିଶେଷଭାବେ ପ୍ରକାଶିତ । ବ୍ୟକ୍ତିର ଯାତ୍ରା, ଶତାବ୍ଦୀର ସ୍ଥିତି ଓ ସ୍ୱର, ଆକସ୍ମିକତା, ଅଘଟଣ, ଭଲ ସମୟ, ଖରାପ ସମୟ ଆଦି ଅଭିବ୍ୟକ୍ତି ଦେଇ ଏହା ପ୍ରମୂର୍ତ୍ତ । ମୃତ୍ୟୁ ସଚେତନତା ହିଁ ଏହି ସମୟ ଚେତନାର ଏକ ଅଂଶ । କାବ୍ୟ ମାନସ ସମକାଳୀନତା ଅପେକ୍ଷା ସମୟର କ୍ଷୟକାରୀ ରୂପ, ସମୟର ଚିରନ୍ତନତା ଓ ମୃତ୍ୟୁ ସଚେତନତା ପ୍ରତି ଅଧିକ ଉନ୍ମୁଖ ବୋଲି ମନେହୋଇଥାଏ । ଆତ୍ମିକ ଅନ୍ୱେଷଣ, ସ୍ଥିତିଗତ ସଂକଟ,ଚେତନାର ଊର୍ଦ୍ଧ୍ୱାୟନ, ସବୁ କ୍ଷେତ୍ରରେ ସମୟ ଏକ ବଡ଼ ବିଭବ ରୂପେ ରୂପାୟିତ । ବହୁ କବିତାର ଶିରୋନାମା ଓ ପଂକ୍ତିରେ ସମୟର ଉଲ୍ଲେଖ । ବହୁ ପ୍ରତୀକ, ରୂପକ, ସୂଚନା ନେଇ ସମୟଚେତନା ପ୍ରମୂର୍ତ୍ତ । ସମୟକୁ ଅତୀତ, ବର୍ତ୍ତମାନର ସେତୁ ଭାବେ କେବଳ ଗ୍ରହଣ କରାଯାଇନାହିଁ,ଏହାକୁ ଭିନ୍ନ ବ୍ୟାପ୍ତି ଓ ପ୍ରୟୋଗ ଦିଆଯାଇଛି । ଆଲୋଚ୍ୟ କାଳରେ ସମୟକୁ ଏକ ଶକ୍ତିମାନ ସତ୍ତା ଓ ଅନ୍ୱେଷଣର କାନ୍‌ଭାସ ଭାବେ ରମାକାନ୍ତ ରଥ ଅଧିକ ମର୍ଯ୍ୟାଦା ଦେଇଛନ୍ତି । ତାଙ୍କ ଭିନ୍ନ ସୀତାକାନ୍ତ ମହାପାତ୍ର,ଦୀପକ ମିଶ୍ର,ଜଗନ୍ନାଥ ପ୍ରସାଦ ଦାସ ଓ ସୌଭାଗ୍ୟ କୁମାର ମିଶ୍ରଙ୍କ କବିତାରେ ଏହି ସମୟ-ଜିଜ୍ଞାସା ମୁଖ୍ୟତଃ ଦାର୍ଶନିକ ଉପଲବ୍ଧି ନେଇ ପ୍ରକାଶିତ ।

ସମୟ କୃପଣ କେଡ଼େ ! ମନା କରିଦେଲା
ଆଉ ଏକ ଚନ୍ଦ୍ରପକ୍ଷ ରାତି ମୋ ଦେହକୁ
କୋଇଲିର ତଣ୍ଟି ଚିପିଦେଲା × × (ଉଜ୍ଜ୍ୱଳ ଭବିଷ୍ୟତ : ରମାକାନ୍ତ ରଥ )

ସମୟ କାହାକୁ ଦେବ ପୁନର୍ଜନ୍ମ ମତେ ନା ତୁମକୁ ?
ଯେଉଁମାନେ ବଞ୍ଚୁଥିବେ ମୃତ୍ୟୁରେ ବା
ଯେଉଁମାନେ ମରୁଥିବେ ବଞ୍ଚିବାରେ, ସେମାନଙ୍କୁ ?
( ସ୍ମୃତିର କାୟାକଳ୍ପ : ଜଗନ୍ନାଥ ପ୍ରସାଦ ଦାସ )

ସମୟର ଉଜୁଡ଼ା କୂଳକୁ
ସମସ୍ତେ ହୁଅନ୍ତି ପାର ସହି ସହି
କପାଳ ଲିଖନ × × ଦୁଃଖର ଦୀର୍ଘଶ୍ୱାସ
ହେଉଛି ସମୟର ଏକଲବ୍ୟ ଧ୍ୟାନ,
ସୁଖର ସ୍ୱର୍ଣ୍ଣ-ବଳୟ

ହେଉଛି ସମୟର ଇମନ କଲ୍ୟାଣ । ( ପାରିହେବା : ଦୀପକ ମିଶ୍ର)

ସମୟ ତା' ନିଜ ନଈ / ବହିଯାଏ ଆପେ ଆପଣାର
ସମୟ ତା' ନିଜ ସମୁଦ୍ର
ଅଧା ବୁଝେ ଭିତରର ଶୋକ ଦୁନିର୍ବାର × × ×
ନଈ ତା' ନିଜ ସମୟ/ବହୁଥାଏ ଆପେ ଆପଣାର

( ମୃତ ନଦୀ : ସୀତାକାନ୍ତ ମହାପାତ୍ର)

**ସଂସ୍କୃତି ଓ ସଂହତି ଚେତନା :**

ସଂହତି ଚେତନା ଓ ସଂସ୍କୃତି ପ୍ରବଣତାର ସ୍ୱର ବିଭିନ୍ନ ଭାବରେ ୧୯୬୮-୮୦ କବିତାରେ ରୂପାୟିତ ହୋଇଛି । ସଂହତି ଚେତନା ହେଉଛି ମୁଖ୍ୟତଃ ନିଜ ମାଟି ଓ ତା'ର ମଣିଷ ପ୍ରତି ଅନୁରାଗ ପୋଷଣ । ଏହା ବିଶ୍ୱଭାବନା ଓ ଦେଶଭାବନାର ଅଙ୍ଗୀକାରକ । ଏକଦା ସ୍ୱାଧୀନତା କାମନା ନେଇ କାବ୍ୟସ୍ୱର ଥିଲା ଦେଶାତ୍ମବୋଧକ ଏବଂ ସ୍ୱାଧୀନତୋତ୍ତର ସ୍ୱପ୍ନଭଙ୍ଗ ନେଇ ବିଷଣ୍ଣତାରେ ଆକୁଳ । ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଙ୍ଗର ଚିତ୍ର ଏପର୍ଯ୍ୟାୟର କେତେକ କବିତାରେ କଳାତ୍ମକ ଭାବେ ପ୍ରକାଶିତ । ବିଶେଷତଃ 'ଭାରତବର୍ଷ' ଶିରୋନାମା ଓ ବିଷୟବସ୍ତୁ ନେଇ ରଚିତ କବିତା ତା'ର ଦାରିଦ୍ର୍ୟ, କ୍ଷୁଧା, କଷଣ ଏବଂ ଜାତି ଧର୍ମନେଇ ଦଙ୍ଗା, ରକ୍ତପାତ ଆଦିର ଚିତ୍ର ବହନ କରନ୍ତି । ପୁଣି ଭାରତ ବର୍ଷର କମନୀୟ, ମହନୀୟ ଶାନ୍ତି ସୌହାର୍ଦ୍ଦ୍ୟର ଅମୃତାମୟ ରୂପ ତା'ର ଭୂଗୋଳ ଓ ଐତିହ୍ୟର ପୃଷ୍ଠଭୂମି ନେଇ ବିରଚିତ । ନିମ୍ନ ଉଦାହରଣ ଦ୍ୱୟରେଏଇ ଦୁଇ ମୁଖ୍ୟ ଆଭିମୁଖ୍ୟର କଥା ସୂଚିତ ।

କେବେଠୁଁ ଛାତିରେ/ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ନାମକ
ଚନ୍ଦା ଲୋକର/ ଫ୍ରେମ୍ ବନ୍ଧା ମୁହଁ ଝୁଲୁଛି
ଏଣେ ମଦ ଗିଲାସରେ
ମୁର୍ଗିର ଗୋଡ଼ ଖସିପଡୁଛି । ( ରାଜେନ୍ଦ୍ର କିଶୋର ପଣ୍ଡା )

ଆଜି ଏଇ ରକ୍ତବସ୍ତ୍ର ପହରଣ, ଆଲୋକର ସ୍ତମ୍ଭଭଳି
ରୂପ । ପେଟ୍ରୋମାକ୍ସ ଆଲୁଅରେ ଦାଉଦାଉ ଜଳି କାମ
ଶୁଖିଲା ମନ୍ଦାର ପରେ ମହିଷର ରକ୍ତ । ତୁମକୁ ଚିହ୍ନାଏ
ଆଗୋ ମହାଦେବୀ ! ପ୍ରାଣବନ୍ତ ହେ ଭାରତବର୍ଷ ।

( ପ୍ରମୋଦ କୁମାର ମହାନ୍ତି )

ସଂହତି ଭାବନା ସଂପୁଟିତ କବିତାମାନଙ୍କରେ ' ମା-ପ୍ରବଣତା' ସମକାଳୀନ ଦୁଃସ୍ଥିତି ପରିପ୍ରେକ୍ଷୀରେ ବହୁ ଆସ୍ଥା ଓ ଆଶ୍ୱାସନାର ସ୍ୱର ବହନକରେ । ସମାଜ-ରାଜନୀତିକ ପୃଷ୍ଠପଟରେ ଦୁଃସ୍ଥିତିର ଚିତ୍ର ପରିବେଷଣ ଏବଂ ସେଥିପ୍ରତି ବ୍ୟଙ୍ଗ ବିଦ୍ରୂପ ସମକାଳୀନ ସମସ୍ୟା ସଂକଟକୁ ପ୍ରକାଶ କରୁଥିଲେ ହେଁ, ପ୍ରାୟ ସ୍ଲୋଗାନଧର୍ମୀ ହୋଇନାହିଁ । ତେବେ ସଂହତି ଭାବରେ ଏ ପର୍ଯ୍ୟାୟ ବିଶେଷ ସୁଦୃଶ୍ୟ ନୁହେଁ ।

'ଭାରତବର୍ଷ' ପରି ଓଡ଼ିଶାର କ୍ଷୁଧା, ଦାରିଦ୍ର୍ୟ ଏବଂ ଅନ୍ୟ ପକ୍ଷରେ ତା'ର ମହିମ୍ନରୂପ ବିଭିନ୍ନ କବିତାରେ ଐଶ୍ୱର୍ଯ୍ୟମୟୀ ଅତୀତର ସ୍ମୃତିସଜଳ ପୃଷ୍ଠଭୂମି ଉପରେ ଲିଖିତ । ପୁରୀ, କଟକ, ଭୁବନେଶ୍ୱର, କୋଣାର୍କ ଆଦି ସ୍ଥାନର ଭୌଗୋଳିକ, ଐତିହାସିକ ବିଭବକୁ ପୁଞ୍ଜିକରି କବିମାନସ ଅନ୍ତରଙ୍ଗତା ପୋଷଣକରିବା ସଙ୍ଗେସଙ୍ଗେ ତାକୁ ବାର୍ତ୍ତମାନିକ ଦୃଷ୍ଟିଭଙ୍ଗୀରେ ଆବେଗପ୍ରବଣ ଓ କଳାତ୍ମକଭାବେ ପ୍ରକାଶ କରିଛି । ଏହା ତା'ର ସଂସ୍କୃତି ପ୍ରବଣତା ଓ ସୌନ୍ଦର୍ଯ୍ୟ ପିପାସାକୁ ମଧ୍ୟ ରୂପ ଦେଇଛି । ଜାନକୀବଲ୍ଲଭ, ଉମାଶଙ୍କର , ସୀତାକାନ୍ତ, ରମାକାନ୍ତ, ରାଜେନ୍ଦ୍ର, ଦୀପକ, ଦେବ ଦାସ, ଅମରେଶ ଏବଂ ଫନୀ ମହାନ୍ତି ପ୍ରମୁଖଙ୍କ କବିତାରୁ ଏହାର ଉଦାହରଣ ସଂଗ୍ରହକରି ହେବ । ଏ ସବୁ ସ୍ଥାନ ନାମଭିତ୍ତିକ ଓଡ଼ିଶାପ୍ରାଣିତ କବିତାରେ ମାଟି ଓ ସଂସ୍କୃତି ପ୍ରବଣତା,ଅତୀତଚାରିତା, ସୌନ୍ଦର୍ଯ୍ୟ ସମ୍ମୋହନ ପ୍ରତିଫଳିତ ହେବା ସହିତ ସମକାଳୀନ ସମାଜ, ରାଜନୈତିକ ଅବ୍ୟବସ୍ଥା ତଥା ସାଂପ୍ରତିକ ବିଷଣ୍ଣ ସ୍ଥିତି ପ୍ରତି ବ୍ୟଙ୍ଗ ଓ ସମ୍ବେଦନା ପ୍ରକାଶପାଇଛି । ତେବେ ସଂସ୍କୃତି ପ୍ରବଣତା ଅତୀତ ବିଭବ, କୀର୍ତ୍ତିଗାଥା ନେଇ ବିକଶିତ ହୋଇପାରନ୍ତା । କବି ଗଡ଼ନାୟକ ଅପୂର୍ବ ଛାନ୍ଦସିକତା ନେଇ 'ଉତ୍କଳିକା' ଠାରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ଯେଉଁ ଗାଥା କବିତା ରଚନାର ଧାରା ଅବ୍ୟାହତ ରଖିଥିଲେ, ପ୍ରୟୋଗବାଦୀ ଧାରାରେ ତା'ର ସୁସଂହତ ବିକାଶ ପରିଲକ୍ଷିତ ହୁଏନା । ସାଂସ୍କୃତିକ ଭାବସ୍ପନ୍ଦନ ଦୃଷ୍ଟିରୁ କବିତାକୁ ରୂପ ଦେବାର ପ୍ରଯତ୍ନ ହରିହର ମିଶ୍ର, ସୀତାକାନ୍ତ ମହାପାତ୍ର ପ୍ରଭୃତିଙ୍କ କବିତାରେ ପରିଲକ୍ଷିତ ହୁଏ । ଅନାମଧାରାର କୁମାର ମହାନ୍ତି ପ୍ରମୁଖଙ୍କ ଜଗନ୍ନାଥ ଚେତନାଶ୍ରିତ କବିତା ଏ ଦିଗରେ ଏକ ପ୍ରୟାସ । ପ୍ରକୃତି ସଂପ୍ରୀତି ଓ ପଲ୍ଲୀ ଆମୁଖତା ଏହି ସଂସ୍କୃତି ପ୍ରବଣତାର ସମପର୍ଯ୍ୟାୟୀ । ସଂସ୍କୃତି ପ୍ରବଣତା ଓଡ଼ିଆ କବିତାରେ ଓଡ଼ିଆମିର ବାହକ । ତାହା ୧୯୬୮-୮୦ କବିତା ପର୍ଯ୍ୟାୟରେ ଖୁବ୍ ବେଶି ବିକଶିତନୁହେଁ ବୋଲି କୁହାଯାଇପାରେ ।

ଆତ୍ମିକ ଅନ୍ୱେଷଣ :

୧୯୬୮-୮୦ କବିତାରେ ବ୍ୟକ୍ତିର ପ୍ରବୃତ୍ତିଜନିତ ସ୍ୱୀକାରୋକ୍ତି ବା ଅଙ୍ଗୀକାର, ମୁକ୍ତିକାମନା ଓ ଆତ୍ମ ବ୍ୟଙ୍ଗ ଆଉ ଏକ ଦିଗ । ଅନ୍ୟ ଭାବ ସହିତ ଏହା ମିଶି ରହିଛି । ଏହା ଏକ ଆତ୍ମିକ ଅନ୍ୱେଷଣର ପ୍ରସଙ୍ଗ । ତଥାକଥିତ ନୈତିକ ପତନଜନିତ ଅପରାଧବୋଧ, ଦେହ ପ୍ରବଣତା, ଅହଂକାରବୋଧ, ସର୍ବୋପରି ରକ୍ତମାଂସଗତ ଭୋଗବାଦିତାରୁ ପ୍ରବୃତ୍ତିର ଏହି ଦିଗଟି

ସୃଷ୍ଟ । ଏଥିରୁ ଉତ୍ତୀର୍ଣ୍ଣ ହୋଇଯିବାର ପ୍ରୟାସ ଓ ମାନସିକତା ଏ ପର୍ଯ୍ୟାୟର ପ୍ରାୟ ସମସ୍ତ କବିଙ୍କ କବିତାରେ ପ୍ରତିଫଳିତ । ପାପ ପଙ୍କରେ ବୁଡ଼ବୁଡ଼ ହୋଇ ଅନ୍ଧଗଳିରୁ ମୁକ୍ତ ହେବା ଏବଂ ପାପବୋଧକୁ ସୌନ୍ଦର୍ଯ୍ୟବୋଧରେ ରୂପାନ୍ତର କରିବାର ମାନସିକତାରେ ବହୁ କବିତା ରଚିତ ହୋଇଥିଲା । ଏହା ପ୍ରବୃତ୍ତିର ପୀଡ଼ନ ଓ ମାନସିକତାରୁ ଚେତନାର ଉର୍ଦ୍ଧ୍ୱାୟନ ବା ରୂପାନ୍ତରୀକରଣ । କମଳାକାନ୍ତ ଲେଙ୍କା(ମୋ'ମା'ପ୍ରତି), ସୌଭାଗ୍ୟ କୁମାର ମିଶ୍ର ( ଶୁକଦେବ ଜେନା,କ୍ରୀସ୍ ମାସ, ୧୯୭୧ ), ରାଜେନ୍ଦ୍ର କିଶୋର ପଣ୍ଡାଙ୍କ କେତେକ କବିତାରେ ଏହା ସୁସ୍ପଷ୍ଟ । ଏ କାଳର ପ୍ରାୟ ଅଧିକାଂଶ କବିଙ୍କର କିଛି କବିତା ଏଇ ଧାରାର । କବିତାର ପରିଣତିରେ ଆତ୍ମସ୍ୱୀକାରୋକ୍ତି ଓ ଆତ୍ମବ୍ୟଙ୍ଗ ସହିତ କାବ୍ୟମାନସ ଈଶ୍ୱର ଅବବୋଧ ଓ ମହତ୍ତର ସତ୍ତା ପ୍ରତି ପ୍ରବଣତା ପ୍ରକାଶକରିଛି । ଉତ୍ତୀର୍ଣ୍ଣତା ବା ମୁକ୍ତିକାମି-ଚେତନାର ରୂପାନ୍ତର ଧ୍ୟେୟ ହୋଇପଡ଼ିଛି । ନିଜର ଅସ୍ତିତ୍ୱ ଓ ସତ୍ତାର ଆତ୍ମିକ ପରିଚୟ ସନ୍ଧାନ ଓ ରୂପାନ୍ତର ଏ କ୍ଷେତ୍ରରେ ବିଶେଷ ଲକ୍ଷଣୀୟ । ୧୯୬୮-୮୦ କବିତାର ଭାବପକ୍ଷ ବା ଆତ୍ମିକ ଦିଗ ଏହି ସବୁ ବିଶେଷତ୍ୱ ଭିନ୍ନ ମଧ୍ୟବିତ୍ତର କାରୁଣ୍ୟ, ଗାର୍ହସ୍ଥ୍ୟ-ବିଡ଼ମ୍ବନା, ସ୍ନେହ ସୌହାର୍ଦ୍ଦ୍ୟ ଆଦି ମାନସିକତା, ସ୍ମୃତିଚାରଣ ବା ଅତୀତ ପ୍ରତି ମୋହାବିଷ୍ଟତା ଆଦି କେତେକ ଭାବକୁ ରୂପ ଦେଇଛି । ପରବର୍ତ୍ତୀ ଦଶକ କେତେକ ସ୍ୱରର ଉତ୍ତରଣ ପର୍ବ । ଆଲୋଚ୍ୟ ସମୟଖଣ୍ଡର କବିତା, କବିମାନଙ୍କର କୌଣସି ବିଧିବଦ୍ଧ ସମବେତ ସଚେତନ ପ୍ରୟାସର ଫଳଶ୍ରୁତି ନୁହେଁ । କୌଣସି ଭାବଗତ ଭିନ୍ନତା ଓ ନିର୍ଦ୍ଦିଷ୍ଟତା ପାଇଁ ସାମଗ୍ରିକ ଉଦ୍ୟମ ବା School of Thoughts ଯୋଜନା ମଧ୍ୟ କରାଯାଇ ନାହିଁ । ବ୍ୟକ୍ତିକ କୃତିତ୍ୱକୁ ନେଇ ଏକ ସାମଗ୍ରିକ ସ୍ୱରର ସ୍ୱରୂପ ହିଁ କବିମାନଙ୍କ କୃତିରେ ବିଶେଷ ଭାବରେ ଚିହ୍ନିତ ।

ଆଙ୍ଗିକ ବିଶେଷତ୍ୱ:

୧୯୬୮-୮୦ କବିତାର ଆଙ୍ଗିକ ବା କଳାପକ୍ଷଟି ଭାବପକ୍ଷ ପରି ପୂର୍ବବର୍ତ୍ତୀ ସମୟ ଏବଂ ପରବର୍ତ୍ତୀ ସମୟ ମଧ୍ୟରେ ଏକ ସେତୁ ସଦୃଶ । ଭାବପକ୍ଷ ନେଇ କଳା କାରିଗରୀ ନିର୍ଭରଶୀଳ । ଉଭୟଙ୍କର ବିବର୍ତ୍ତନ ସମାନ ଭାବରେ ଘଟିଥାଏ ; ତେବେ କଳାପକ୍ଷର ବିବର୍ତ୍ତନ ବରଂ ଅଧିକ ମନ୍ଥର । ୧୯୬୭-୬୮ ମସିହାବେଳେ ପ୍ରବୀଣ କବି ( ରାଉତରାୟ, ବିନୋଦ ନାୟକ, ଗୁରୁପ୍ରସାଦ, ବେଣୁଧର ପ୍ରମୁଖ ) ମାନଙ୍କ କଳା-କାରିଗରୀ ନିର୍ଦ୍ଦିଷ୍ଟ ରୂପରେଖ ନେଇ ସାରିଥିଲା । ପ୍ରୟୋଗବାଦୀ ଧାରାର ପ୍ରାୟ ସମସ୍ତ ଆଙ୍ଗିକ ବିଶେଷତ୍ୱ ପରୀକ୍ଷା ନିରୀକ୍ଷାର କଷଟି ଛୁଇଁ ସାରିଥିଲା । ଚିତ୍ରକଳ୍ପ ଚୟନ, ପ୍ରତୀକୀକରଣ, ମିଥିମନସ୍କତା, ପଂକ୍ତିସଂରଚନା, ଶବ୍ଦ ଚୟନ, ଭଙ୍ଗୀ ଚମତ୍କାରିତା ସର୍ବୋପରି କବିତାର ଗଢ଼ଣ ଓ ଭାଷାଶୈଳୀରେ ନୂଆ ନୂଆ ପ୍ରୟୋଗ କବିତାକୁ ନୂତନ ଅର୍ଥ ଓ ସ୍ୱାଦମଣ୍ଡିତ କରିଥିଲା । ୧୯୬୮ ପୂର୍ବ ସମୟରେ ଯାହା ପରୀକ୍ଷାନିରୀକ୍ଷା ସ୍ତରରେ ଥିଲା ଅଷ୍ଟମ ଦଶକରେ ତାହା ଅଧିକ ସ୍ୱଚ୍ଛନ୍ଦ , ବ୍ୟାପ୍ତ ଓ ସମୃଦ୍ଧ ।

୬୮ ପୂର୍ବବର୍ତ୍ତୀ ଜଟିଳ; କ୍ଲିଷ୍ଟ, ଅପରିଣତ କେତେକ କାବ୍ୟସ୍ୱର ଅଷ୍ଟମ ଦଶକର ମଧ୍ୟଭାଗରୁ ଅଧିକ ସୁବୋଧ ଓ ସହଜଗମ୍ୟ ହୋଇଉଠିଲା । ଗଦ୍ୟଛନ୍ଦର ଅସାର୍ଥକ ପ୍ରୟୋଗ ଓ ଫେସନ ପ୍ରବଣତା ଦୋଷରୁ ଅଷ୍ଟମ ଦଶକ ଅନେକଟା ମୁକ୍ତ । ଅନୁସରଣ ଓ ଅନୁକରଣ ପଟୁତାର ପ୍ରାଧାନ୍ୟ ମଧ୍ୟ ଏ ପର୍ଯ୍ୟାୟରେ ହ୍ରାସ ପାଇଛି । ବାକ୍ରୀତି ଓ ପଦ୍ୟ ଛନ୍ଦର ପ୍ରୟୋଗ ଭିତରେ ଏକ ଅନ୍ତରୀଣ ସାଙ୍ଗୀତିକତା ବା ଗୀତିମୟତା ଅନେକଙ୍କଠାରେ ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରକାଶିତ ହୋଇଛି । ଗଦ୍ୟରୀତି ଛନ୍ଦପ୍ରବଣତାକୁ ପାସୋରି ଦେଇନାହିଁ । ଏକାନ୍ତ ଗଦ୍ୟ ଚିତ୍ରମୟତା ଓ କଥକତାକୁ ଆଶ୍ରାକରିଛି । କେତେକ କ୍ଷେତ୍ରରେ ଆବେଗଶୁଷ୍କତା ଓ ବୌଦ୍ଧିକ ଜଟିଳତା କବିତାର କୋମଳତାକୁ ମଧ୍ୟ ଗ୍ରାସ କରିଛି । ଭଙ୍ଗୀ ଚମତ୍କାରିତା ଯୋଗୁଁ ପୋତି ହୋଇପଡୁଥିବା ଭାବ ମଧ୍ୟ କ୍ରମଶଃ ମୁକ୍ତ ହୋଇଛି । ପଂକ୍ତିଗୁଡ଼ିକ ଅଭିବ୍ୟକ୍ତି ଓ କ୍ଷେତ୍ରନେଇ କେବେ ଦୀର୍ଘ ଲହର ବିଶିଷ୍ଟ ତ କେବେ କେବେ ଅଳ୍ପ ଶବ୍ଦ ଓ ବାକ୍ୟର ସମାହାରରେ କ୍ଷୁଦ୍ରାୟତନ । ପ୍ରମୁଖ କବିମାନେ ସ୍ୱକୀୟ ପ୍ରକାଶଭଙ୍ଗୀ ନିର୍ମାଣ କରିଛନ୍ତି । ନିର୍ଦ୍ଦିଷ୍ଟ ଶବ୍ଦ ଓ ଚିତ୍ର ପ୍ରତି କବି ମନର ଦୁର୍ବଳତା ସହଜ ଲକ୍ଷ୍ୟ । ଭିନ୍ନ ଭିନ୍ନ ପରିପ୍ରେକ୍ଷୀରେ ଗୋଟିଏ ଗୋଟିଏ ଶବ୍ଦ ପ୍ରୟୋଗ ମାନ୍ୟତା ପାଇଛନ୍ତି । ଭାବକୁ ଭାଷା ଓ ଶୈଳୀ ଅନୁସରଣ କରିଛି । ଆଲୋଚ୍ୟ କାଳର କବିତାରେ ଅଧିକ ନାଟକୀୟ ପ୍ରକାଶଭଙ୍ଗୀ, ପ୍ରଶ୍ନବାଚୀ, ବିସ୍ମୟଚିହ୍ନ, ସ୍ୱଗତଃ ସଂଳାପ ସମୃଦ୍ଧ । ଆନୁପ୍ରାସିକ ଛଟା, ଶବ୍ଦମାନଙ୍କର ପୁନର୍କଥନ, ଭ ଙ୍ଗୀ ଚମତ୍କାରିତା କବିତାର ବର୍ଣ୍ଣନା ଚାତୁର୍ଯ୍ୟକୁ ତଥା ଧ୍ୱନି ସୌନ୍ଦର୍ଯ୍ୟକୁ ସମୃଦ୍ଧ କରିଛି । ୧୯୬୮-୮୦ କବିତା କ୍ଲିଷ୍ଟ, ଜଟିଳ, ଅନୁସରଣ ଅଭିଯୋଗରୁ ବହୁ ଭାବରେ ମୁକ୍ତହୋଇ ଅଧିକ ପରିମିତ, ସ୍ୱଚ୍ଛନ୍ଦ ଭାବେ ଆତ୍ମପ୍ରକାଶ କରିଛି । ପୂର୍ବରୁ କୁହାଯାଇଛି ଯେ' ୬୮ର ପ୍ରାରମ୍ଭ ଭାଗର ଜଟିଳ, କ୍ଲିଷ୍ଟ ହୋଇପଡ଼ିଥିବା ସ୍ୱରମାନ ସହଜ ସ୍ୱଚ୍ଛନ୍ଦ ହୋଇ ଉଠିଛନ୍ତି ।

> ପଡ଼ୋଶିନୀ ଏକାକିନୀ, ସନ୍ଦେହୀ ସମବୟସ୍କ ନାହାନ୍ତି । ପବନ
> ପରିଷ୍କାର କରିନେଲା ରାସ୍ତା ଓ ଫୁଲ ଉତ୍ତେଜିତ । ଈଶ୍ୱର ଅନ୍ୟମନସ୍କ,
> ପିତାମାତା ରଖନ୍ତିନି ସବୁ ଖବର, ମୁଁ ଜାଣେ ମୋର ଭବିଷ୍ୟତ ।
>
> (ପାପ : ହରପ୍ରସାଦ ଦାସ )

> ଅଯୋଗ୍ୟ ଏ ମାଟି ଓ ଝାଉଁବଣ, ଘର ଓ ସମୁଦ୍ର
> ଅଯୋଗ୍ୟ ଏ ଲାଳସା, ଏ ଦେହର, ହାତର ପଲଙ୍କର
> ଆଯୋଗ୍ୟ ସହର, ଜାତି ଇତିହାସ, ଅଯୋଗ୍ୟ ଏ ଗ୍ରହ ।
>
> (ସକାଳ : ସୌଭାଗ୍ୟ ଏ ଗ୍ରହ )

> ଘୋଡ଼ା ପିଠିରେ ଆରୋହୀ ନାହିଁ ଯେ
> ନଈରେ ଆଗପରି ପାଣି ନାହିଁ ଯେ

ଘୋଡ଼ା ପଠିରେ ଯେଉଁ ମାଦଳ ସଇସ ବସିଚି
ସେ ଆତତାୟୀରେ ଗଣାଯାଏନା ।
ନଈରେ ଯେଉଁ ରକ୍ତର ସୁଅ ଛୁଟିଚି
ତାକୁ ପାଣି ବୋଲି କୁହାଯାଇ ପାରେନା । ( କାରିଗର : ବଂଶୀଧର ଷଡ଼ଙ୍ଗୀ )

କବିତାର ପଂକ୍ତି ଦୀର୍ଘ ଅବା କ୍ଷୁଦ୍ର ହେଉ, ରମାକାନ୍ତ ରଥ ଗଦ୍ୟଛନ୍ଦ ଭିତରେ ପଦ୍ୟଛନ୍ଦ ବା ଆବୃତ୍ତିଗତ ଯତିପାତ ଅବ୍ୟାହତ ରଖିଛନ୍ତି । ଅନ୍ୟ ବହୁ ସ୍ୱର ଏହି ରୀତି ପ୍ରତି ପ୍ରବଣତା ପ୍ରକାଶକରିଥିଲେ ମଧ୍ୟ ଗଦ୍ୟରୀତି ବା ବାକ୍‌ରୀତିକୁ ସେମାନେ ପ୍ରାଧାନ୍ୟ ଦେଇଛନ୍ତି । ତେବେ କବିତାର ଆଙ୍ଗିକ ବିନ୍ୟାସପାଇଁ କୌଣସି ନିର୍ଦ୍ଦିଷ୍ଟ ସୂତ୍ର/ରୀତି ଅନୁସୃତ ହୋଇ ନାହିଁ । ବାକ୍‌ସଂଯମ, ଶବ୍ଦର ସୂଚନାଧର୍ମୀ ବ୍ୟବହାର ଭାଷା ପ୍ରୟୋଗ ରୀତିର ଅଭିବୃଦ୍ଧି ଘଟାଇଛି । କବି ସୌଭାଗ୍ୟ ମିଶ୍ର ଏ ସମୟରେ ଗଦ୍ୟରୀତିରେ ନୂତନତା ଆଣିବାପାଇଁ ଅଧିକ ପ୍ରଯତ୍ନକରି ସଫଳ ହୋଇଛନ୍ତି । ଆଙ୍ଗିକ ପରିମିତତା ପ୍ରତି ହରପ୍ରସାଦ ଦାସ ଅଧିକ ସଚେତନତା ପ୍ରକାଶ କରିଛନ୍ତି । ସୀତାକାନ୍ତ ମହାପାତ୍ର ଗାଉଁଲି, ଅପ୍ରଚଳିତ କଥ୍ୟ ଭାଷାର ଅଧିକ ପ୍ରୟୋଗକରିଛନ୍ତି । ଏକାନ୍ତ ଗଦ୍ୟକବିତା, ଆଭାସ କବିତା, ଆକାର କବିତା, ମିନିକବିତା ଆଦି ଲେଖାଯିବାର ପ୍ରୟାସ ଏ ପର୍ଯ୍ୟାୟରେ ପରିଲକ୍ଷିତ ହୋଇଥିଲେ ହେଁ, ତାହା ଆଦୌ ବିକଶିତ ହୋଇନାହିଁ । ଅନାମ କବିତା ଚିତ୍ରକଳ୍ପ, ପ୍ରତୀକର ଆଶ୍ରା ନ ନେଇ କଥ୍ୟରୀତି ଓ ଛନ୍ଦ ପ୍ରବଣତାକୁ ଗ୍ରହଣ କରିଛି - ଏହା ମଧ୍ୟ ଖୁବ୍ ଆଖିଦୃଶିଆ ନୁହେଁ ।

୧୯୬୮-୮୦ କବିତାର ଆକାର ପ୍ରକାର ଅଭିବ୍ୟକ୍ତିର ଆବଶ୍ୟକତା ମତେ ନିରୂପିତ । ଭାବ ଅଭିବ୍ୟକ୍ତିର ବିଭିନ୍ନତା ହେତୁ ଦୀର୍ଘ କବିତା ଓ କ୍ଷୁଦ୍ରାବୟବ କବିତା ମଧ୍ୟ ଲେଖାଯାଇଛି । ଅନ୍ୟ ସାଧାରଣ କବିତା ଅପେକ୍ଷା ଦୀର୍ଘ କବିତାରେ ବିଶେଷ ବକ୍ତବ୍ୟ ଏବଂ ସାନ କବିତାରେ ଶାଣ / ସଂକ୍ଷିପ୍ତ ବକ୍ତବ୍ୟ ହିଁ ପ୍ରକାଶ ପାଇଛି । ରମାକାନ୍ତ ରଥଙ୍କ 'ତୁମେ' ( ସଚିତ୍ର ଅନ୍ଧାର), ସୀତାକାନ୍ତ ମହାପାତ୍ରଙ୍କ 'ପରକୀୟା' ( ଚିତ୍ରନଦୀ), 'ଶରଧା ବାଲିର ବୁଢ଼ାଲୋକ ', ହରିହର ମିଶ୍ରଙ୍କ 'ଶଙ୍ଖନାଭି', ସୌଭାଗ୍ୟ ମିଶ୍ରଙ୍କ 'ହୃଦୟେଶ୍ୱରୀ','ସକାଳ' (ଅନ୍ଧ ମହୁମାଛି ), ଦୀପକ ମିଶ୍ରଙ୍କ 'ଡ଼ାକବଙ୍ଗଳା' (ସପ୍ତମ ପୃଥିବୀ), କମଳାକାନ୍ତ ଲେଙ୍କାଙ୍କ 'ନିଜ ସହ ଗୋଟେ ସାକ୍ଷାତକାର', ପ୍ରସନ୍ନ ପାଟଶାଣିଙ୍କର ' ବର୍ଷା', ପ୍ରସନ୍ନ କୁମାର ମିଶ୍ରଙ୍କ ' ଧର୍ମପଦର ଶେଷ ସଂଗୀତ' ( ଆ, ପକ୍ଷୀ ଫେରିଆ) ପ୍ରଭୃତି ଦୀର୍ଘ କବିତା ରଚନା ଧାରାର ଉଦାହରଣ । ବିଭିନ୍ନ ସଂକଳନରେ ସ୍ଥାନିତ କବିତା ବ୍ୟତୀତ ସାନ କବିତାର ସଂକଳନ ମଧ୍ୟ ପ୍ରକାଶପାଇଛି । ରାଜେନ୍ଦ୍ର ପଣ୍ଡାଙ୍କ ' ଶତଦ୍ରୁ ଅନେକ', ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ଜୀଅନ୍ତା ଶାଳଗ୍ରାମ', କମଳାକାନ୍ତ ଲେଙ୍କାଙ୍କ 'ନିତ୍ୟ ନିୟମିତ ' ଏବଂ କିଞ୍ଚିତ୍ ବିଳମ୍ବରେ ପ୍ରକାଶିତ ଜଗନ୍ନାଥ ପ୍ରସାଦ ଦାସଙ୍କ ' ଅନ୍ୟଦେଶ ଭିନ୍ନ ସମୟ' ଏ ପ୍ରସଙ୍ଗର ଉଦାହରଣ ।

ଦୀର୍ଘ କବିତା ଓ କ୍ଷୁଦ୍ରାବୟବ କବିତା ଯେଉଁଠି ଅଧିକ ସ୍ୱତଃସ୍ଫୂର୍ତ୍ତ, ସେଠି ଆବେଦନ ବେଶ୍ ସଂଚରଣକ୍ଷମ ।

ଚିତ୍ରକଳ୍ପ ଓ ପ୍ରତୀକ

ଚିତ୍ରକଳ୍ପ, ପ୍ରତୀକ ଓ ମିଥ୍ କବିତାର ସଂଗଠନ ଓ ଭାଷାଶୈଳୀର ବିଶିଷ୍ଟ ଉପାଦାନଭାବେ ୧୯୬୮-୮୦ କବିତାରେ ଗୁରୁତ୍ୱ ପାଇଛି । ଏଇ ସବୁକୁ ବାଦଦେଇ ଏ ସମୟଖଣ୍ଡର କବିତାର ଅସ୍ତିତ୍ୱ କଳ୍ପନାକରିବା ସହଜ ହୁଏନା । ଏଗୁଡ଼ିକ ସହଜାତଭାବେ କବିତାପାଇଁ ଅନିବାର୍ଯ୍ୟ ହୋଇପଡ଼ିଛି ।

ଚିତ୍ରକଳ୍ପ ମୁଖ୍ୟତଃ ଯେଉଁ ଭାବଗତ ରୂପ ସାଦୃଶ୍ୟର ପ୍ରତିନିଧିତ୍ୱ କରେ, ତାକୁ ଏ ପର୍ଯ୍ୟାୟର କବିତା ସଂପୂର୍ଣ୍ଣଭାବରେ ସ୍ୱକୀୟ ପରିବେଶରୁ ସଂଗ୍ରହ କରିଛି । କବିର ସାମୂହିକ ଅବଚେତନର ରଙ୍ଗରେ ଚିତ୍ରକଳ୍ପ ମଧ ରଞ୍ଜିତ । ବିଦେଶୀ ଅନୁସରଣର ଗନ୍ଧ ଅପେକ୍ଷା ଭାରତୀୟ ଦୃଶ୍ୟଧର୍ମର ସ୍ୱାଦ ଏଥିରେ ନିବିଡ଼ଭାବେ ଅନୁଭବ୍ୟ । ଚିତ୍ରକଳ୍ପମାନ କବିର ବକ୍ତବ୍ୟ ଓ ବ୍ୟକ୍ତିତ୍ୱଦ୍ୱାରା ନିୟନ୍ତ୍ରିତ ହୋଇଥାନ୍ତି । ଏ ପର୍ଯ୍ୟାୟରେ ଚିତ୍ରକଳ୍ପର ବହୁଧା ପରିପ୍ରକାଶ । ଏହା କେବଳ ବୌଦ୍ଧିକତା ସମୃଦ୍ଧ ନହୋଇ ଆବେଗର ଉଚ୍ଚାରଣରେ ଅଭିଷିକ୍ତ । ଚିତ୍ରକଳ୍ପର ଇନ୍ଦ୍ରିୟସଂବେଦୀ ତଥା ଭାବ ପ୍ରବୋଧନା ଗୁଣ ବେଶ୍ ଆକର୍ଷଣୀୟ । ଅଭିବ୍ୟକ୍ତି ବା ବକ୍ତବ୍ୟର ବିସ୍ତାରପାଇଁ କବିତାରେ ଚିତ୍ରକଳ୍ପର ସହାୟତା ଓ ଅନିବାର୍ଯ୍ୟତା ବହୁ ପଂକ୍ତିକୁ ଚିତ୍ରମୟ କରିଛି, କ୍ଷେତ୍ରବିଶେଷରେ କେତେକ କବିତା ସଂପୂର୍ଣ୍ଣ ଭାବରେ ଚିତ୍ରକଳ୍ପମାଳାଦ୍ୱାରା ଅଳଙ୍କୃତ ହୋଇଛି । ଦୁଇଟି ଶବ୍ଦର ସମାହାରଠୁଁ ଏକାଧିକ ଧାଡ଼ିରେ ଏହାର ପ୍ରୟୋଗ । ସାଧାରଣ ଦୃଶ୍ୟଧର୍ମୀ ଚିତ୍ରକଳ୍ପଠୁଁ ସୁଦୂରକଳ୍ପୀ ଚିତ୍ରକଳ୍ପ ପର୍ଯ୍ୟାୟରେ ଏହାର ପ୍ରୟୋଗ । କେବଳ ପ୍ରକାର ଦୃଷ୍ଟିରୁ ନୁହେଁ ; ଚିତ୍ରକଳ୍ପର ପ୍ରୟୋଗ ବୈଚିତ୍ର୍ୟ ମଧ ବେଶ୍ ଉପଭୋଗ୍ୟ । ପୂର୍ବରୁ ଚିତ୍ରକଳ୍ପ ଏତେ ଅଧିକ ଭାବରେ ପ୍ରଯୁକ୍ତ ହୋଇ ନ ଥିଲା । ମିଥ୍ ଓ ପ୍ରତୀକ ଉପାଦାନ ମଧ ହୋଇଛି ଚିତ୍ରକଳ୍ପର ଚାରଣଭୂଇଁ । ଚିତ୍ରକଳ୍ପରେ ମଧ ଚିତ୍ରକଳା ପ୍ରତିଫଳିତ ହୋଇଛି । ବହୁ ଅମୂର୍ତ୍ତ ଓ ଜଟିଳ ଅନୁଭବମାନ ଚିତ୍ରକଳ୍ପକୁ ଆଶ୍ରାକରି ଅଧିଷ୍ଠିତ ହୋଇଛନ୍ତି ।

ଶବ୍ଦ ସବୁ ଡେଇଁ ଡେଇଁ ହଂସ ଛୁଆପରି
ଚାଲିଯିବେ ଶାଳ ଜଙ୍ଗଲକୁ । ( ଛୁଟିଲେ ଘଟ-ରମାକାନ୍ତ ରଥ )
ଶବ୍ଦ ଅନ୍ଧ ଭିକାରୀଙ୍କ ପରି
ବୁଲୁଥିବେ ଅପନ୍ତରା ଇତିହାସ ଯାକ । ( ଶିଷ୍ଟାଚାର - ରମାକାନ୍ତ ରଥ )

ଏଠାରେ 'ଶବ୍ଦ' ପରି ଏକ ଧ୍ୱନିମୟ ରୂପକୁ ଚିତ୍ରାୟିତ ଓ ଚରିତ୍ରାୟିତ କରାଯାଇଛି । ଏହା ଆବେଗ ଓ ଆତ୍ମସତ୍ତାର/ ଶକ୍ତିର ପରିପକାଶକ ।

ଶବ୍ଦ ସବୁ କି ମାଛଧରାଳି
ଅଇଁଠା ଥାଳିରେ ମାଛକଣ୍ଟା ପରି ମୁଁ
କଂସା ବାଟି ପରି ସ୍ତ୍ରୀର ମୁହଁ । (ସୌଭାଗ୍ୟ କୁମାର ମିଶ୍ର )

ଏ ଚିତ୍ରକଳ୍ପଗୁଡ଼ିକ ଆମର ନିଜସ୍ୱ ପରିବେଶରୁ ସଂଗୃହୀତ ସାଧାରଣ ଅଥଚ ତୀକ୍ଷ୍ଣ ଓ ଭାବ ପ୍ରବୋଧକ ।

ପ୍ରେମ ଏକ ନିର୍ଜନ ଅହଂକାର
ମୃତ୍ୟୁ ଏକ ପରିଚ୍ଛନ୍ନ କାରାଗାର
ମୋ ଛାତିରେ/ ଭଲ ପାଇବାର ଭୃଗୁ ପଦଚିହ୍ନ
ମୋ ପିଠିରେ/ ମଲା ମଣିଷର ମଲା-କଇଁବନ । (ଦୃଷ୍ଟାନ୍ତ, ଦୀପକ ମିଶ୍ର )

ଏ ଚିତ୍ରକଳ୍ପ କେତୋଟି ପ୍ରେମ ଓ ମୃତ୍ୟୁପରି ଭାବକୁ ଚିତ୍ରମୟତା ଦେଇଛି । ଭୃଗୁ ପଦଚିହ୍ନ ଚିତ୍ରକଳ୍ପରେ ମିଥିର ସଂଯୋଜନା ।

ପବନ ମେଷ ପାଳକ । ଆକାଶର ନୀଳମ ପ୍ରାନ୍ତରେ
ସଫେଦ ବାଦଲମାନେ ମସ୍ତବଡ଼ ମେଣ୍ଢାପଲ ଭଳି
ଠେଲି ଠେଲି ଚାଲିଥାନ୍ତି ଦକ୍ଷିଣୁ ଉତ୍ତରେ ।( ଅନ୍ତର୍ଲିପି -ପ୍ରତିଭା ଶତପଥୀ )
ଏଥର ଆସିବେ ପୁଣି ସେଇ ଲୋକ
ମଲା ଶାଗୁଣାର ଏକ ପକ୍ଷ ପରି
ଟାଇଟାଏ ଝୁଲାଇ ଝୁଲାଇ ମଞ୍ଚ ଉପରକୁ । ( ପ୍ରଧାନ ଅତିଥି -ପ୍ରସନ୍ନ ମିଶ୍ର)

ଉପର୍ଯ୍ୟୁକ୍ତ ଚିତ୍ରକଳ୍ପରେ ଦୃଶ୍ୟଧର୍ମୀ ଉପାଦାନ ସଂଯୋଜିତ ।

୧୯୬୮-୮୦ ପର୍ଯ୍ୟାୟର କବିତାରେ ପ୍ରୟୋଗ ହୋଇଥିବା ପ୍ରତୀକ ପ୍ରାୟତଃ ପାରମ୍ପରିକତାକୁ ତ୍ୟାଗ କରିଛି । ପ୍ରତୀକୀକରଣରେ ଅଧିକ ବ୍ୟକ୍ତିଗତତା ପରିଲକ୍ଷିତ ହୁଏ । ବକ୍ତବ୍ୟକୁ ଅଧିକ ପ୍ରଭାବଶାଳୀ କରିବାପାଇଁ ଆଲୋଚ୍ୟ କାଳରେ କବି ପରିପାର୍ଶ୍ୱର ବସ୍ତୁ, ଦୃଶ୍ୟ, ପ୍ରାଣୀ, କୀଟପତଙ୍ଗଠୁଁ ଆରମ୍ଭକରି ପୁରାଣ, କାବ୍ୟ ଓ ଲୋକକଥାରୁ ପ୍ରତୀକ ସଂଗ୍ରହ କରିଛି । ପ୍ରତୀକଗୁଡ଼ିକ ସୂଚନାଧର୍ମୀ , ଅର୍ଥବ୍ୟାପକ ହୋଇପାରିଛି । ଅବଚେତନର ରଙ୍ଗରେ ସେଗୁଡ଼ିକ ଚିତ୍ରିତ ହୋଇଛନ୍ତି । ପ୍ରତୀକର ବ୍ୟାପକ ପ୍ରୟୋଗ ପ୍ରସଂଗରେ ବ୍ୟକ୍ତିକ ପ୍ରତୀକ ପ୍ରୟୋଗ ହିଁ କବିର ମୌଳିକ ଶକ୍ତିମତ୍ତା ବୋଲି କହିବାକୁ ହେବ । ସେଗୁଡ଼ିକର କ୍ଲିଷ୍ଟ ପ୍ରୟୋଗ ଅର୍ଥବୋଧରେ ଏକାନ୍ତ ବାଧା ସୃଷ୍ଟି କରିଛି । ପ୍ରତୀକ ପ୍ରୟୋଗର ବିଭିନ୍ନତା ଓ ଶକ୍ତିମତ୍ତା ଦର୍ଶାଇବା ସକାଶେ ଦୁଇଟି ବିଶିଷ୍ଟ କବିତା ଗ୍ରନ୍ଥର ଶୀର୍ଷକ କବିତାରୁ କିଛି ଅଂଶର ସାମାନ୍ୟ ବିଶ୍ଳେଷଣ କରାଯାଇପାରେ ।

ମଲା ଓଟ ଶୀଣ୍ଡ ହାଡ଼ ପଛରେ ଲୁଚିବସି ସେ ଦୂବଘାସ
ମରୁଭୂମି ବାଲିକୁ ପଚାରେ/ ସମୁଦ୍ର ଠିକଣା ତମେ
ଜାଣିଚ କି ? କେଉଁଠି ତା' ନୀଳ ଦୀପ ଜଳେ ?

( ସମୁଦ୍ର - ସୀତାକାନ୍ତ ମହାପାତ୍ର )

ଏ ପଂକ୍ତିଟିରେ ପ୍ରକାଶିତ ପ୍ରତୀକର ଅର୍ଥ ଚୟନପାଇଁ 'ସମୁଦ୍ର' କବିତା ଏବଂ ଗ୍ରନ୍ଥ ସଂକଳିତ 'ଓଟ, ଓଏସିସ୍‌ର ରାତି' କବିତା ପଠନୀୟ । ମଲାଓଟ, ଶୀଣ୍ଡହାଡ଼,ମରୁଭୂମି ବାଲି ଏକ ନୈରାଶ୍ୟ ଜର୍ଜ୍ଜରିତ, ଅପାରଗ, ବିଭଙ୍ଗ, ପ୍ରାଣହୀନ ପରିବେଶର ପ୍ରତୀକତା କରେ । ଦୂବଘାସ ହେଉଛି ଜୀବନର, ଅସ୍ତିତ୍ୱର, ସତ୍ତାର ପ୍ରତୀକ । ସମୁଦ୍ର ବ୍ୟାପକ ଭାବରେ ଅନନ୍ତ, ଅସୀମ, ମହାକାଳ, ଉର୍ଦ୍ଧ୍ୱତର ଚେତନା, ସୃଷ୍ଟି ଓ ବିଲୟର ପ୍ରତୀକତା କରେ । ନୀଳଦୀପ ସମୁଦ୍ରର ଦିବ୍ୟ କମନୀୟ ଶ୍ୟାମମୟ ଶୋଭାର ସୂଚନା ଦିଏ । ତେବେ କବିଙ୍କ ସାମଗ୍ରିକ ଆଭିମୁଖ୍ୟ ଦୃଷ୍ଟିରୁ ଏହାର ଅର୍ଥ ବ୍ୟାପକତା ନିର୍ଣ୍ଣୟ କରାଯାଇପାରେ ।

ସବୁଠି ମହୁ : କଟକରେ,କଦମ୍ବରେ, ଖଟରେ, ଖଳାରେ
ଗୁମାନରେ, ଗରୁଡ଼ ସ୍ତମ୍ଭରେ × × ×
ଫୁଲରେ ଓ କୁଷ୍ଠରୋଗୀର ଘା'ରେ ।

( ଅନ୍ଧ ମହୁମାଛି - ସୌଭାଗ୍ୟ କୁମାର ମିଶ୍ର)

ଏହି ପଂକ୍ତିର ଅର୍ଥ ଓ ଆବେଦନ ନିମିତ୍ତ ସମଗ୍ର କବିତାଟି ପଠନୀୟ । 'ମହୁ' ଏଠାରେ ଜୀବନ ଅନୁରାଗ ବା ସୃଷ୍ଟିର ଆନନ୍ଦ ଓ ମଧୁମୟତାର ପ୍ରତୀକ । ଆମ ପରମ୍ପରାରୁ ଏହି ପ୍ରତୀକଟି ହୁଏତ କବି ଚେତନାରେ ସ୍ଥାନପାଇଛି । ଏକଦା ଋଷିକଣ୍ଠରୁ ଉଚ୍ଚାରିତ ହୋଇଥିଲା 'ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ ...... ଇତ୍ୟାଦି ' । ମଧୁସୂଦନ ଓ ଗଙ୍ଗାଧର ସୃଷ୍ଟିକୁ ମଧୁମୟ ଓ ଅମୃତମୟ ବୋଲି ଘୋଷଣା କରିଥିଲେ । କଟକର ଅର୍ଥ ବ୍ୟାପକ । ନଗର, ଦୁର୍ଗ, ପୁର, ଅନ୍ତଃପୁରକୁ ଏହା ବୁଝାଇଥାଏ । ସର୍ବତ୍ର ଏମିତି ଅର୍ଥରେ ଏହା ସଂଯୋଜିତ । କଦମ୍ବ ପ୍ରତୀକ ନେଇ ଆମ ଚେତନାରେ ପ୍ରେମ, ପ୍ରଣୟ, କୃଷ୍ଣଚେତନା, ରୋମାଞ୍ଚ, ବାସ୍ନାମୟତା ଓ ସୌନ୍ଦର୍ଯ୍ୟବୋଧର ଅର୍ଥ ସଂଚରିଯାଏ । ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ 'ଶକୁନ୍ତଳା' ଉପନ୍ୟାସରେ 'ଭାରତୀୟତା'ର ଅର୍ଥ ଅନ୍ୱେଷଣ କରିବାକୁ ଯାଇ 'କଦମ୍ବ' ପ୍ରୟୋଗ କରିଛନ୍ତି । ଖଟ -ଦେହଜ ସଂଭୋଗ, ତୃପ୍ତି, କ୍ଳାନ୍ତି ଓ ବିଶ୍ରାମର, ସର୍ବୋପରି ପାର୍ଥିବତାର ପ୍ରତୀକ । ଖଳା- ଅନ୍ନର, ଫସଲର, ଲକ୍ଷ୍ମୀଙ୍କର ପ୍ରତୀକତା କରେ । ଗୁମାନ ଶବ୍ଦଟି ଅନୁରାଗ,ଅଭିମାନ, ଆତ୍ମୀୟତାର, ଗରୁଡ଼ସ୍ତମ୍ଭ ଜଗନ୍ନାଥ ଚେତନାର, ପବିତ୍ର, ଉର୍ଦ୍ଧ୍ୱତର ଭାବର ପ୍ରତୀକତା କରେ । ଶେଷ ପ୍ରତୀକଦ୍ୱୟ 'ଫୁଲ' ସୃଷ୍ଟିର ସୌନ୍ଦର୍ଯ୍ୟ, କୋମଳତା ଓ ପବିତ୍ରତାକୁ ସୂଚାଇବାବେଳେ 'କୁଷ୍ଠରୋଗୀର ଘା' ରୋଗ, କୁତ୍ସିତତା, ବୀଭତ୍ସତା ଓ ଅଶୁଭବୋଧକୁ ସୂଚାଏ । ଅଥଚ ଏ

ସବୁ ଭିତରେ କବି ସୌନ୍ଦର୍ଯ୍ୟ, ଶୁଭବିଶ୍ୱାସ ଓ ଜୀବନାନୁରାଗର ସନ୍ଧାନ କରିଛନ୍ତି । ଏସବୁ ପ୍ରତୀକ ଗୁଣରେ ବେଶ୍ ବିଭାଷିତ । ପ୍ରତୀକର ଗଭୀରତର ଅର୍ଥ ଦ୍ୟୋତନା କବିର ଶକ୍ତିମତ୍ତା ତଥା ଜୀବନ ଦୃଷ୍ଟିକୁ ପ୍ରକାଶ କରେ । ଆଲୋଚ୍ୟ କାଳର ବିଭିନ୍ନ କବିତା ପୁସ୍ତକର ନାମ ପ୍ରତୀକାତ୍ମକ । ସମକାଳରେ ପ୍ରକାଶିତ ବିଦୀର୍ଣ୍ଣ ମରାଳ, କାଗଜ ଡ଼ଙ୍ଗାର ଶୋକ, ବିଭକ୍ତ ବଳୟ, ବିଲୁପ୍ତ ସାମ୍ରାଜ୍ୟ, ନିଦ୍ରିତ କଚ୍ଛପ, ପବନର ଘର, ଆକୁଳ ଅରଣ୍ୟ, ଅଦୃଶ୍ୟ ସଂଗମ ପ୍ରଭୃତି ବିଭିନ୍ନ ଗ୍ରନ୍ଥଗୁଡ଼ିକୁ ଏଠାରେ ସ୍ମରଣ କରାଯାଇପାରେ । ବିଭିନ୍ନ କବିଙ୍କର ପ୍ରତୀକର ପରିସର ଓ ପ୍ରୟୋଗ ଭିନ୍ନ ଭିନ୍ନ । ପ୍ରତୀକ ପ୍ରୟୋଗରେ କବି ପାରମ୍ପରିକତାକୁ ତ୍ୟାଗକରିଛି ; କିନ୍ତୁ ପରମ୍ପରାରୁ ପ୍ରତୀକ ସଂଗ୍ରହ କରିଛି, ତାକୁ ନୂତନ ପ୍ରୟୋଗ ଦେଇଛି ।

ମିଥ୍ ପ୍ରୟୋଗ :

ମିଥ୍ ମନସ୍କତା ବା ମିଥ୍ ପ୍ରୟୋଗ ରୀତିଟି ପାଶ୍ଚାତ୍ୟ କାବ୍ୟାଦର୍ଶ ପ୍ରଭାବିତ ହେଲେ ହେଁ, ତାହା କ୍ରମଶଃ ଭାରତୀୟ ପରମ୍ପରା ସମନ୍ୱିତ ହୋଇ ମୌଳିକ ସ୍ୱାଦର ଅଧିକାରୀ ହୋଇଛି । କେହି କେହି ମିଥ୍ ପ୍ରୟୋଗରୁ କବିତାକୁ ମୁକ୍ତ ରଖିବାକୁ ମଧ ଚାହିଁଛନ୍ତି । ଆମ ପୁରାଣ ଓ କାବ୍ୟ ପରମ୍ପରା ସହିତ ବିଶ୍ୱ ସାହିତ୍ୟର ବିଭିନ୍ନ ପ୍ରସଙ୍ଗ, ଚରିତ୍ର ଓ ବିଶେଷତ୍ୱ ମିଥ୍‌ର ପରିସରଭୁକ୍ତ । 'ମିଥ୍ ' ଜରିଆରେ କାବ୍ୟ ବକ୍ତବ୍ୟ ବାଢ଼ିବା ଆମ କାବ୍ୟ ପରମ୍ପରାର ନୂତନ ଉଦ୍‌ଭାସନ । ମିଥ୍ କେଉଁଠି ସହାୟକ ତ କେଉଁଠି ସୂଚନାଧର୍ମୀ, କେଉଁଠି ଆଙ୍ଗିକ ତ କେଉଁଠି କବିତାର ଆତ୍ମିକ । ଆମର ସଂସ୍କୃତିକ ଅବଚେତନରେ ପୌରାଣିକ ପ୍ରସଙ୍ଗ ଓ ଚରିତ୍ର ଲାଗି ବେଶ୍ ଶ୍ରଦ୍ଧାଶୀଳ ଓ ମର୍ଯ୍ୟାଦାବନ୍ତ ଜାଗାଟିଏ ରହିଛି । ମିଥ୍‌ର ପରିବେଶ, ଭାବନିର୍ଯାସ ଓ ଚରିତ୍ରମାନଙ୍କର ବିଶେଷତ୍ୱକୁ ଆଧୁନିକ ସମୟ, ଚେତନା ଓ ଦର୍ଶନ ପରିପ୍ରେକ୍ଷୀରେ ପ୍ରାୟତଃ ଉପଯୋଗ କରାଯାଇଛି । ନୈରାଶ୍ୟବୋଧରୁ ମୁକ୍ତି ପାଇବାପାଇଁ ଯେଉଁ ବ୍ୟାକୁଳତା ଓଡ଼ିଆ କବିତାରେ ପରିଲକ୍ଷିତ ହେଲା ଏବଂ ନିଜର ଅପାରଗ ଓ କ୍ଳେଦାକ୍ତ ସ୍ଥିତିରୁ ଉତ୍ତୀର୍ଣ୍ଣହୋଇ ମହିମ୍ନ ହେବାପାଇଁ ଯେଉଁ ଆତ୍ମୀୟ ମାଧ୍ୟମଟିଏ ଲୋଡ଼ା ପଡ଼ିଲା, ତା'ର ପରିପୂର୍ତ୍ତି ପାଇଁ ମିଥ୍ ଏକ ବଡ଼ ଭୂମିକା ନେଇଛି । କବିର ନଟସତ୍ତା, ବକ୍ତବ୍ୟ, ଅଭିବ୍ୟକ୍ତି, ମିଥ୍‌ର ପ୍ରସଙ୍ଗ, ଚରିତ୍ର ଓ ଅଭିବ୍ୟକ୍ତି ସହ ଏକାତ୍ମ ହୋଇଛି । ମିଥ୍‌ର ସଂଜ୍ଞା ନିରୂପଣ ସହଜ ନୁହେଁ । ଏହା ପରିସର ଏତେ ବ୍ୟାପକ ଯେ ଏଥିରେ ସମାଜ ବିଜ୍ଞାନ, ନୃତତ୍ତ୍ୱ ତଥା ମନୋବିଜ୍ଞାନର ଅନୁପ୍ରବେଶ ଘଟିଛି । ଲୋକ ଉପାଦାନ, ଇତିହାସ ଓ କିମ୍ବଦନ୍ତୀ ମଧ ମିଥ୍‌ର ପରିସରଭୁକ୍ତ । ଏ ପର୍ଯ୍ୟାୟରେ ସୀତାକାନ୍ତ, ରମାକାନ୍ତ, ଦୀପକ, ସୌରୀନ୍ଦ୍ର, ଶରତ, ପ୍ରତିଭା, ହରିହର, ରାଜେନ୍ଦ୍ର, ହରପ୍ରସାଦ , ସରୋଜରଞ୍ଜନ, ନିତ୍ୟାନନ୍ଦ ପ୍ରମୁଖ ବହୁ କବି ବହୁ ପ୍ରକାରେ ମିଥ୍‌ର ପ୍ରୟୋଗ କରିଛନ୍ତି । ଏହା ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ମିଥ୍‌ର ପ୍ରତୀକ ଓ ଚିତ୍ରଧର୍ମ ମଧ ଶକ୍ତିଶାଳୀ । ବିଶେଷତଃ ପରିଚିତ ବିଷୟ, ଚରିତ୍ର ଓ ପ୍ରସଙ୍ଗ ଏହି ପ୍ରୟୋଗ କ୍ଷେତ୍ରରେ ଅଧିକଭାବେ ବ୍ୟବହୃତ ହୋଇଛନ୍ତି

। ମିଥ୍ ପ୍ରୟୋଗର ବିଶେଷତ୍ୱକୁ ଦେଖାଇବାପାଇଁ ଏଠାରେ ବହୁ ଉଦାହରଣରୁ ଅଳ୍ପ କେତୋଟିର ଉଲ୍ଲେଖ କରାଯାଉଛି -

ଦୁଃଖ ଓ ଅନୁଶୋଚନା ଦୁଃଶାସନ
ମୋ ଭଙ୍ଗା ପିଂଢ଼ାର ସିଂହାସନ ଦାଢ଼େ
ସ୍ୱପ୍ନ ଦ୍ରୌପଦୀର ପର୍ବତ ପ୍ରମାଣେ ଶାଢ଼ୀ ଗଦା କରେ ।

( ବୋଇତ ବନ୍ଦାଣ - ସମୁଦ୍ର : ସୀତାକାନ୍ତ ମହାପାତ୍ର)

ହୋମ ଶିଖା ଏ ଦେହରେ ଉଠଇ ଯେ ଧୂଆଁର କୁଣ୍ଡଳୀ
ଆଖି, ଘାଟି, ଲୋମକୂପେ ଭରିଯାଏ ପାଉଁଶର ମୁଠା
ପାଉଁଶ, ପାଉଁଶ, ପାଉଁଶ ସେ ପ୍ରଥମ ସ୍ୱପ୍ନର, ପାଉଁଶ ସେ
ଟୀର କ୍ଷତ କୁମାରୀ ମନର, ପୁଣି ପାଉଁଶ ସେ ପ୍ରଥମ ଛବିର ।
ପାଉଁଶର ମାଳା ମୁହିଁ ଲମ୍ବିଯାଏ ପାଞ୍ଚଟି ବୁକୁରେ
ପାଉଁଶର ଇନ୍ଦ୍ରଧନୁ ହସିଉଠେ ପାଞ୍ଚ ଆକାଶରେ ।

(ସ୍ୱୟଂବରା- ଉପଭାରତ : ସୌରୀନ୍ଦ୍ର ବାରିକ୍ )

ସେଇ ଦିନୁ ପଂପା ତୀରେ / ଜରା ଭାରେ ଅବନତା ଶବରୀ ମୁଁ
ଆଖିର ସାରିକାଟିକୁ ଦୂରକୁ ଉଡ଼େଇଦିଏ
କେତେ ଝାଡ଼ ଜଙ୍ଗଲ ଓ ପାହାଡ଼ ପାଚେରୀ ଡ଼େଇଁ
କାଳେ ବା ଆସିବ ଉଇଁ କୋମଳ ନକ୍ଷତ୍ର ପରି
ଆସିବ ଏ କୁଡ଼ିଆରେ ମୋର/ ଯତନେ ସଂପାଦି ଥିବା
କୋଳି ପସରାକୁ/ ଛୁଇଁଦବ/ଛୁଇଁଲା ମାତ୍ରକେ
ଖଟା, ମିଠା, /ପିତା,କଷା/ ଅମୃତ ହିଁ ହବ ।

( ଶ୍ରମଣା -୨- ନିୟତ ବସୁଧା : ପ୍ରତିଭା ଶତପଥୀ)

ପ୍ରଥମ ପଂକ୍ତିଟିରେ ମିଥ୍‌ର ପ୍ରତୀକ ରୂପକୁ ବା ମୂଲ୍ୟକୁ ଦର୍ଶାଯାଇଛି । ଦ୍ୱିତୀୟ ପଂକ୍ତିଟି ଦ୍ରୌପଦୀଙ୍କ ସ୍ୱୟଂବରକାଳୀନ ମାନସିକତାର ଏକାନ୍ତ ସାଧାରଣୀକରଣ । ଏଠାରେ ନାରୀ ମନସ୍ତତ୍ତ୍ୱକୁ ସଂପ୍ରସାରିତ ଅଭିବ୍ୟକ୍ତି ଦିଆଯାଇଛି । ହୋମର ପାଉଁଶକୁ ରୂପକ ଓ ଚିତ୍ରମୟ କରାଯାଇଛି । ଏ ପର୍ଯ୍ୟାୟରେ ସୌରୀନ୍ଦ୍ର ବାରିକ ଅନ୍ୟମାନଙ୍କଠାରୁ ଭିନ୍ନ ମନେ ହୋଇଥାନ୍ତି । 'ଉପଭାରତ' (୧୯୮୨)ପରେ 'ଅନୁଭାରତ' (୧୯୯୦)ର ଭୂମିକା 'ପଦେ' ଶିରୋନାମାରେ ସେ କହନ୍ତି -''ସାଂପ୍ରତିକ କବିତାରେ ମିଥ୍‌ର ବ୍ୟବହାର ଏକ ମୁଖ୍ୟ ଆଲୋଚ୍ୟ ବିଷୟ । × × × କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ଅବା କୌଣସି ଏକ ଛାଂଚକୁ ଆରୋପକରି ଆବେଦନରେ ନୂତନତା ଆଣିବାପାଇଁ ମହାଭାରତକୁ ମୁଁ ମୋ କବିତାର ବିଷୟବସ୍ତୁ କରି ନାହିଁ । × × ମୋ

କବିତା ମହାଭାରତର ବିଭିନ୍ନ ଚରିତ୍ର ଏବଂ ବିଭିନ୍ନ ଘଟଣା ପ୍ରତି ମୋର ରସ ଘନ ପ୍ରତିକ୍ରିୟା । ଆଜିର ମନ ନେଇ ଅନୁଭୂତିର ମହାସାଗରକୁ ବୁଝାଇବାର ଚେଷ୍ଟା ।'' ତୃତୀୟ ପଂକ୍ତିରେ ରାମାୟଣର ଶ୍ରମଣା ବା ଶବରୀ ସହ କବିସତ୍ତା ଏକାତ୍ମ । ନିଜର ଅସାର୍ଥକ ସ୍ଥିତିରୁ ଉତ୍ତୀର୍ଣ୍ଣ ହେବା ପାଇଁ କାବ୍ୟ ପୁରୁଷର ବେଦନାବିଦ୍ଧ ପ୍ରାଣମୟ ପ୍ରତୀକ୍ଷା ଓ ପ୍ରତ୍ୟାଶା ଏଠାରେ ସୂଚିତ ହୋଇଛି । 'ନିୟତ ବସୁଧା' ରେ ସ୍ଥାନିତ 'ଶ୍ରମଣା (୧, ୨)' ପ୍ରାୟ ୧୪ ବର୍ଷ ପରେ ଏକ ବୃହତ୍ତର କାନ୍‌ଭାସ ଓ ଗଭୀର ଅର୍ଥପୂର୍ଣ୍ଣ ବକ୍ତବ୍ୟ ନେଇ ପ୍ରକାଶିତ ହୋଇଛି ବୋଲି କାବ୍ୟ ଗ୍ରନ୍ଥ 'ଶବରୀ' (୧୯୯୧)ରେ ଗ୍ରଥିତ ଗଦ୍ୟ କଥନ 'ଅମୋକ୍ଷ ତପ'ରେ କବି ପ୍ରତିଭା ଶତପଥୀ ପ୍ରକାଶ କରିଛନ୍ତି । ବିଭିନ୍ନ ଆବେଗର ପରିପ୍ରକାଶକୁ ତ୍ୱରାନ୍ୱିତ କରିବାପାଇଁ ମିଥ୍ ଏକ ପ୍ରଚୋଦକର ଭୂମିକା ନେଇଛି । କେହି କେହି ବ୍ୟଞ୍ଜନାହୀନ ଭାବେ ଅତ୍ୟନ୍ତ ସ୍ଥୂଳ ଦୃଷ୍ଟିରୁ ମିଥ୍‌ର ପ୍ରୟୋଗ କରିଥାନ୍ତି, ଯାହା ଫଳରେ ଏହି ପ୍ରୟୋଗ ଅସଫଳ ହୋଇଛି । ୧୯୬୮-୮୦ ପର୍ଯ୍ୟାୟର ମିଥ୍ ପ୍ରୟୋଗରେ ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ବ୍ୟାପକତା ଓ ବିବିଧତା ପରିଲକ୍ଷିତ । ମିଥ୍‌ର ବହୁଳ ପ୍ରୟୋଗ କରିଥିବା କବି ସୀତାକାନ୍ତ ମହାପାତ୍ର କହନ୍ତି -''ମୋର ଦୃଢ଼ ମତ, କବିତାରେ ମିଥ୍ ବ୍ୟବହାର, ପ୍ରତୀକ ବ୍ୟବହାର ବା ବିଭିନ୍ନ ଶୈଳୀ ବ୍ୟବହାର ଏ ସବୁ କବିର ଉପାୟ ମାତ୍ର । ଅସଲ କଥାଟି ହେଉଛି ତା'ର ବକ୍ତବ୍ୟ । କେହି କେବେ ମିଥ୍ ବା ପ୍ରତୀକ ବ୍ୟବହାର କରିବ ବୋଲି ଆଗତୁରା ସ୍ଥିରକରି ତା'ପରେ କବିତା ଲେଖେନି ।'' ( କବି ସୀତାକାନ୍ତ ମହାପାତ୍ରଙ୍କ ସହ ଏକ ସାକ୍ଷାତକାର-ହୃଷୀକେଶ ମଲ୍ଲିକ ଓ ଲକ୍ଷ୍ମୀପ୍ରିୟା ଜେନା-ଇସ୍ତାହାର : ୭, ଜୁଲାଇ - ସେପ୍‌ଟେମ୍ବର . ୧୯୭୯ )

ମିଥ୍‌ମନସ୍କତାର ଅନ୍ୟ ଦିଗ- କବିତାର ପରମ୍ପରା ମାନ୍ୟତା । ପୁରାଣ, କାବ୍ୟ, ସାହିତ୍ୟ, ଚର୍ଯ୍ୟାଗୀତିକା, ମାଦଳାପାଞ୍ଜି, ଲୋକକଥା, ବ୍ରତକଥା,କିମ୍ବଦନ୍ତୀର ଉଦ୍ଧୃତାଂଶ ବା ପ୍ରସଙ୍ଗର ନୂତନ ପ୍ରୟୋଗ ଓ ସଂଯୋଜନା ୧୯୬୮-୮୦ ପର୍ଯ୍ୟାୟର କବିତାକୁ ଅଧିକଭାବେ ସମୃଦ୍ଧ କରିଛି । କବିତାର ଭାଷାଶୈଳୀ ବା ଆଙ୍ଗିକରେ ଏହା ଏକ ବିଶେଷ ଧରଣର ପ୍ରୟୋଗ ବା ସଂଯୋଜନା । ଏହା କାବ୍ୟ ପରମ୍ପରାର ନୂତନ ଉଦ୍‌ଭାସନ । ଏହି ପ୍ରୟୋଗ କୃତ୍ରିମ ନହୋଇ ଏକାନ୍ତ ସ୍ୱାଭାବିକ ବା ସ୍ୱତସ୍ଫୂର୍ତ୍ତ ହୋଇଛି । ପରମ୍ପରା ସହିତ ଯୋଗସୂତ୍ର ପ୍ରତିଷ୍ଠା, କବିତାର ଅଭିବ୍ୟକ୍ତି ଓ ଭଙ୍ଗୀକୁ ଅର୍ଥବହ ଓ ଚାତୁର୍ଯ୍ୟପୂର୍ଣ୍ଣ କରିବାରେ ଏହା ଏକାନ୍ତ ସହାୟକ । ଉପେନ୍ଦ୍ର ଭଞ୍ଜଙ୍କ କବିତାଂଶ ସୀତାକାନ୍ତଙ୍କ 'ସମୁଦ୍ର' ରେ ଏକ ଆତ୍ମପରିଚୟ ଖୋଜିବା ବା ଅନ୍ୱେଷଣ ମନସ୍କତା ନେଇ ସଂଯୋଜିତ ।

ଅନ୍ଧାରରେ ଖୋଜେ ଆହା ପରିଚିତ ସେ ଦିବ୍ୟ ତରୁଣ
ଛିଣ୍ଡା ଶେଯ ଲେଉଟାଇ, କଳାମେଘ କବରୀ ଫିଟାଇ

ଓ ନିଭୃତେ ହାତ ଭରି ସମୁନ୍ନତ କୁଞ୍ଚକ ସନ୍ଧିରେ
ମନ କାନ୍ଦେ, ହୃଦ କାନ୍ଦେ × × × (ପ୍ରତିବେଶୀ-ସମୁଦ୍ର)

୧୯୬୮-୮୦ ପର୍ଯ୍ୟାୟର କବିତାରେ ଶବ୍ଦ ବସାଣ ଓ ଶବ୍ଦ ସଂଯୋଜନାର ପରିସର ପରିମାଣାତ୍ମକ ଓ ଚାତୁର୍ଯ୍ୟଗତ ଦୃଷ୍ଟିରୁ ବେଶ୍ ପ୍ରସାରିତ । ପୁରାଣର ପ୍ରାଚୀନ ସଂସ୍କୃତାନୁସାରୀ, ଗ୍ରାମ୍ୟ, କଥିତ, ଇଂରାଜୀ ଓ ଯାବନିକ ଶବ୍ଦ ପ୍ରଭୃତି ଭାବମାନଙ୍କର ସଚ୍ଚୋଟ ଓ ସାର୍ଥକ ଅଭିବ୍ୟକ୍ତିପାଇଁ ବ୍ୟବହୃତ ହୋଇଛନ୍ତି । ଅନେକ ଅପ୍ରଚଳିତ ଶବ୍ଦ ମଧ୍ୟ ପ୍ରାଧାନ୍ୟ ପାଇଛନ୍ତି । ପାରମ୍ପରିକ ଓ ଆଳଂକାରିକ ଶବ୍ଦ ଅପେକ୍ଷା ଲେଖକ ମୁଖର ଶବ୍ଦ, ସ୍ୱାଭାବିକ ଭାବନା କାବ୍ୟାତ୍ମକ ରୀତିରେ ସଂଯୋଜିତ ହୋଇଛି । ସଚ୍ଚିଦାନନ୍ଦ, ଗୁରୁପ୍ରସାଦ,ବିନୋଦ ନାୟକଙ୍କ ପରେ ଏହି ପର୍ଯ୍ୟାୟରେ ରମାକାନ୍ତ, କମଳାକାନ୍ତ, ଦୀପକ, ସୌଭାଗ୍ୟ, ରାଜେନ୍ଦ୍ର, ଦେବଦାସଙ୍କଠାରେ ଏହା ଅଧିକଭାବେ ପରିଦୃଷ୍ଟ । ମଖମଲି ଟାହି ଟାପରା,ରୋଗା ଦୋ ଦୋ ପାଞ୍ଚଶରା, ବିବସନ ଅନ୍ତଃକରଣ, ନିରୁଦ୍ଦିଷ୍ଟ ସୁବାସର ପଲଙ୍କ, ଚନ୍ଦ୍ରର ଜଙ୍ଗଲ, ଆହତ ଆଲୋକ, କିଲବିଲ ଉଚ୍ଛ୍ୱାସ, କ୍ଲୀବ ଆୟୁଷ, ସୁଗନ୍ଧ ସନ୍ନ୍ୟାସ, ଲୋମଶ କୁହୁଡ଼ି, ଛେଉଣ୍ଡ ନିର୍ବୋଧତା ଶବ୍ଦ ଏଠାରେ ଉଲ୍ଲେଖ କରାଯାଇପାରେ । କବିର ବ୍ୟକ୍ତିତ୍ୱ, ଅଭିବ୍ୟକ୍ତିର ଦାବୀ,ବର୍ଣ୍ଣନା ଚାତୁର୍ଯ୍ୟରେ କଳାତ୍ମକତା ନେଇ ଏ ଶବ୍ଦ ବସାଣ ଓ ଶବ୍ଦ ସଂଯୋଜନା ହିଁ ସଫଳାୟିତ ।

୧୯୬୮-୮୦ ପର୍ଯ୍ୟାୟରେ ଓଡ଼ିଆ କବିତାର ସନେଟ୍ ଧାରାଟି ବିଭୁଦତ୍ତ ମିଶ୍ର, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଗିରିଜା କୁମାର ବଳିଆର ସିଂ ପ୍ରମୁଖଙ୍କ ହାତରେ ରୂପାୟିତ, ମାତ୍ର ଉପର୍ଯ୍ୟୁକ୍ତ ଛନ୍ଦୋବଦ୍ଧ ଧାରାଟି ବିଶେଷଭାବେ ବିକଶିତ ହୋଇପାରିନାହିଁ । କବିତାର ପ୍ରକାଶଭଙ୍ଗୀରେ ବ୍ୟଙ୍ଗଧର୍ମିତା ପ୍ରକାଶ ପାଇଥିଲେ ମଧ୍ୟ କବିତାର ଉପର୍ଯ୍ୟୁକ୍ତ ଧାରା ଏ ପର୍ଯ୍ୟାୟରେ ସମୁନ୍ନତ ନୁହେଁ ।

ଏହି ନିବନ୍ଧରେ କବିତାର ଗଢ଼ଣଶିଳ୍ପ ବା କଳାପକ୍ଷର ବହୁ ବୈଶିଷ୍ଟ୍ୟ ଓ ଚମତ୍କାରିତାରୁ ଏ ଆଲୋଚକ କିଞ୍ଚିତ ଭାବରେ ଦର୍ଶାଇଛି । ଏହା ବ୍ୟାପକ ଅନୁଧାନ ଓ ଚର୍ଚ୍ଚାର ଅପେକ୍ଷା ରଖେ ।

□□□

# କବି, କବିତା ଓ ପାଠକ : ଏକ ଭେଟ ସମୀକ୍ଷଣ

●

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ



*ଅବସରପ୍ରାପ୍ତ ପ୍ରଫେସର ,*
*ଓଡ଼ିଆ ବିଭାଗ,*
*ସମ୍ବଲପୁର ବିଶ୍ୱବିଦ୍ୟାଳୟ*

ଧରାର କବିତା କେବେ ମରେନା । ସମୟ କେବେ ଫେରେନା । ବ୍ୟକ୍ତି-ମଣିଷଟି ଆକାଶକୁ ଦେଖେ । 'କାଳୋଽହଂ' କହି ଅର୍ଜ୍ଜୁନମାନଙ୍କୁ ଜୀବନକଥା କହେ । ସେ ଦ୍ୱିତୀୟ ଈଶ୍ୱରତ୍ୱ ଜାହିର କରେ । ଅଖଣ୍ଡ ସମୟ ଟୁକୁରା ଟୁକୁରା ହୋଇଯାଏ ଓ ମଣିଷ ଚାରିପାଖେ ନାଚେ । ମଣିଷର ମନ ମେଘ ପାଲଟେ । ସେଇ ମେଘ ଦେହରେ ଇନ୍ଦ୍ରଧନୁ ଉଠେ । କୋବିଦେ ତାକୁ ଚିହ୍ନଟ କରନ୍ତି । ସେମାନେ ବି କବି ପାଲଟି ଯାଆନ୍ତି । ''କୋବିଦ ମନ ଘନାଘନ ବିନୁ/ କେବେ ହେଁ ନ ଦିଶଇ ଇନ୍ଦ୍ରଧନୁ ।'' କୋବିଦ ନଥିଲେ କବିତାର ଆଦର କାହିଁ ? କବି ନଥିଲେ କବିତା ନାହିଁ । ନିରବଧି କାଳ ବିପୁଳାଚ ପୃଥ୍ୱୀରେ ସମଧର୍ମାଙ୍କୁ କବି ଲୋଡ଼େ । ସମୟ ଅଟକିଯାଏ । କବିକୁ ଲେଉଟି ଚାହେଁ । ଏଣୁ କବି, କବିତା ଓ ପାଠକ ସମସ୍ତେ ସୂତ୍ରାୟିତ । ସୃଜନ-ରଜ୍ଜୁରେ ସବୁ ବନ୍ଧା । '' ଏ ରଜ୍ଜୁ ଛିଣ୍ଡିଲେ ସର୍ବେ ହେବେ ନିଧନ '' । ସୃଜନଧର୍ମିତା । ଏକ ଅନ୍ତରୀଣ ସୂତ୍ର । କାବ୍ୟଶାସ୍ତ୍ର ବର୍ଣ୍ଣିତ ପ୍ରତିଭା ହୁଏତ ତା'ର ନାମାନ୍ତର । ସୃଜନ ଧର୍ମିତା ନଥିଲେ କବି ଇତର ଜୀବଟିଏ । କବିତା ତ ସୃଜନ ଧର୍ମିତାର ଫଳଶ୍ରୁତି । ପାଠକର ଅନ୍ୟ ନାମ ସୁହୃଦ । ଧ୍ୱନ୍ୟାଲୋକରେ ସେ ସହୃଦୟ କାବ୍ୟ ମୀମାଂସାରେ ହୃଦୟର କବି । ବସ୍ତୁତଃ କବି, କବିତା ଓ ପାଠକ ଗୋଟିଏ ଶୃଙ୍ଖଳରେ ବନ୍ଧା । କବିତା, କବି ଓ ପାଠକକୁ ମିଳାଇ ଦିଏ । ପରସ୍ପରକୁ ମାନସିକ ସ୍ତରରେ ଭେଟ କରାଇବାରେ ତା' ଭୂମିକା ସ୍ୱୀକାର୍ଯ୍ୟ ।

'କବିତା ବନିତା, କବି ତା ପିତା' ରସକଲ୍ଲୋଳକାରଙ୍କ ପରି ଅଡ଼େନ ( W.H. Auden ) ବି କହନ୍ତ, The poet is the father who begets the poem which

language bears. କବିଙ୍କର ପତ୍ନୀ ଭାଷା; ଓ କବିତା ତା'ର ସନ୍ତାନ ; କିନ୍ତୁ ଏବେ କବିର ପିତୃତ୍ୱ ବିଡ଼ମ୍ବିତ । କବିତା ଆଜି କୁଟୁମ୍ବିନୀ ନୁହେଁ । ସେ ଉର୍ବଶୀ ପରି ନିତ୍ୟ ନୂତନା ଓ ସ୍ୱୈରିଣୀ । ସେ ନାନା ରୂପ ଧରି ପାଠକୀୟ ଚେତନାକୁ ଛୁଇଁଯାଏ । ପଲ ଭାଲେରୀଙ୍କ ଉକ୍ତିକୁ ଏ ସଂପର୍କରେ ସ୍ମରଣ କରାଯାଇପାରେ - '' କବିତା ମରେନା, ବଞ୍ଚି ରହିବା ତା'ର ଧର୍ମ । ଏହା ବାରମ୍ବାର ନୂଆ ରୂପ ଧରି ପାଉଁଶରୁ ଜନ୍ମ ଲଭେ । ଏହା ଅଶେଷ ରୂପ ପରିଗ୍ରହ କରେ ।''

ଏହା ଭାରତୀୟ ଚେତନାର ଅତନୁର ନିତ୍ୟନବରୂପ ବିଧାନ ପରି । କୀଟ୍‌ସଙ୍କର The poetry of the earth is never dead ଉକ୍ତିର ସମର୍ଥନ ବି ଏଠି ମିଳିଯାଏ । କବିର ସ୍ୱକୀୟ ସତ୍ତା ନାହିଁ । ତା'ର କୌଣସି ଚରିତ୍ର ନଥାଏ । ଅ-କବିତ୍ୱମୟ ସ୍ଥିତି ସହ ତା'ର କାରବାର । ପଙ୍କରୁ ପଦ୍ମ ଫୁଟିଲା ପରି ଅଣକବୀୟ ପରିସ୍ଥିତିରୁ କବିତା ବି ଜନ୍ମେ । କବିତାର ତ୍ରିକୋଣୀୟ ସ୍ଥିତି । ଗୋଟିଏ ବିନ୍ଦୁରେ କବି, ଅନ୍ୟ ବିନ୍ଦୁରେ ପାଠକ ଓ ତୃତୀୟ ବିନ୍ଦୁରେ ଅଭିଜ୍ଞତାର ଜଗତ । ସ୍ଥାନ, କାଳ ପାତ୍ର ଓ କବି ଭେଦରେ ତ୍ରିକୋଣୀୟ କ୍ଷେତ୍ର ବିସ୍ତୃତ ବା ସଙ୍କୁଚିତ ହୋଇଯାଏ । ବେଳେବେଳେ କବି ସମକାଳୀନତାର ଅନେକ ଆଗର କଥାକହେ । ତାହା କାଳାନ୍ତର ବାଣୀ ହୁଏ । ସେତେବେଳେ କବିଙ୍କୁ ସାଧାରଣ ପାଠକ ବୁଝିପାରନ୍ତି ନାହିଁ ।

କବି-ମଣିଷଟି ଅମିତ ଶକ୍ତିର ଭଣ୍ଡାରଟିଏ । ସେ ଯାହା କହନ୍ତି, ସେଥିରେ ସାମାଜିକ ବିମ୍ବର ପ୍ରତିଫଳନ ଘଟେ । ତା'ର ଚେତନା ଭିତରେ ସ୍ଥାନୀୟ ରୂପରଙ୍ଗ, ଜଳବାୟୁ, ବିଭିନ୍ନ ଦୃଶ୍ୟାବଳୀ ଝଲମଲ ହୁଏ । କବିତା ହୋଇଯାଏ ଚେତନାର ଦର୍ପଣ । ୟେଟସ (W.B. Yeats) କହୁଥିଲେ, କବିତା ବି ଧର୍ମପରି ଏକ ପରମ୍ପରା ଏବଂ ଏହା ମଧ ଆବିଳ ହେବାର ଯଥେଷ୍ଟ ସମ୍ଭାବନା ରହିଛି । କବିଟିଏ ଯେତେବେଳେ ଉଦ୍ଦେଶ୍ୟମୂଳକ ଭାବେ କିଛି କଥା କହିବସେ, ତା'ର କବିତା ହୋଇଯାଏ ଇସ୍ତାହାର ବା ସ୍ଲୋଗାନ । ମତଲବୀ କବିତା ତାତ୍କାଳିକ ଉଦ୍ଦେଶ୍ୟ ପୂରଣ କରିପାରେ; କିନ୍ତୁ କାଳଜୟୀ ହୋଇପାରେନା । ଏଣୁ କବିତା ତାତ୍କାଳିକ 'ବାହାବା'ର ଉର୍ଦ୍ଧ୍ୱରେ ରହିବା ବିଧେୟ । କବିଟିଏ କହିଚାଲେ -

I have no child, I have nothing but a book
Nothing but this to prove your blood and mine.

( W.B. Yeats )

ମୋର କୌଣସି ସନ୍ତାନ ନାହିଁ
ମୋର କିଛି ନାହିଁ
ଅଛି କେବଳ ବହିଟିଏ
କିଛି ନାହିଁ, କିନ୍ତୁ

ଏହା ପ୍ରମାଣ କରିବାକୁ
ତୁମର ରକ୍ତ ଯେ
ମୋର ରକ୍ତ ।

ବସ୍ତୁତଃ କବି ତାତ୍କାଳିକତାର ଊର୍ଦ୍ଧ୍ୱରେ ରହି ନିତ୍ୟକାଳର କଥା କହିବସେ । ସେ ପ୍ଲାଟୋଙ୍କର Ion ଗ୍ରନ୍ଥର Sterile Nurse ବନ୍ଧ୍ୟା ଧାତ୍ରୀର 'କା' ନେଇ କବିତା ଲେଖିଚାଲେ । ସେ ମଣିଷ ଜାତିର ଆଦର୍ଶାୟିତ ରୂପ ବିଗ୍ରହର କଳ୍ପନା କରିବସେ । ଋକବେଦର ପୁରୁଷସୂକ୍ତରେ ଯେପରି ଏକ ପୁରୁଷର ପରିକଳ୍ପନା କରାଯାଇଛି, ପ୍ରତିଯୁଗର ସତ୍‌କବି ହୁଏତ ସେପରି ମଣିଷଟିଏ ସତତ କାମନା କରି ଚାଲିଛି ।

' A man who does not exist
A man who is but a dream '
' ଅସ୍ତିତ୍ୱ ନାହିଁ ଯେଉଁ ମଣିଷର
ଯେଉଁ ମଣିଷ ତଥାପି ଏକ ସ୍ୱପ୍ନ' ।

ସେପରି ମଣିଷକୁ କବି ଅପେକ୍ଷା କରି ବସେ । ଏଣୁ କବିତା ଲେଖା ସରେନା । ସକାଳ ପରି ନୂଆନୂଆ ରୂପ ଧରି ତାହା ଆସେ । ପାଠକକୁ ହଳଦୀ ରଙ୍ଗରେ ଗାଧୋଇ ଦିଏ । କବିତାକୁ ଆମେ 'ଆଗୋ କୌତୁକମୟୀ' କହି ସମ୍ଭାଷଣ କରୁ । କବିତାର କୁହୁକ ଲାଗି ରହେ ।

ଭାନୁମତୀ ପରି ନିତ୍ୟ ସ୍ୱୟମ୍ବରା ହେଉଥାଏ ସେ । ତେବେ ଅଭିମାନୀ ଦୁର୍ଯ୍ୟୋଧନ ତୁଲ୍ୟ ପାଠକକୁ କବିତା-ଭାନୁମତୀଏ ବଶୀଭୂତ କରିବା ସହଜ ହୁଏନା । ପାଠକ ବହୁ ସମୟରେ ସମାଜବଦ୍ଧତାକୁ ଖୋଜେ । କବି କେବଳ ସୌନ୍ଦର୍ଯ୍ୟର ଶିକ୍ଷକ ହେଲେ ଚଳେନା । ବୋଦଲାୟାରଙ୍କ ଭାଷାରେ ପିଲାଳିଆ ସ୍ୱର୍ଗ ବିଳାସ (Puerile Utopias) କବିର କାମ୍ୟ ହେବା ଉଚିତ ନୁହେଁ । ତେବେ କବିତା କିପରି ହେବା ଦରକାର, ତା'ର ଉତ୍ତର ଏଜରା ପାଉଣ୍ଡ ଦେବାକୁ ଚେଷ୍ଟାକରନ୍ତି । ସେ କହନ୍ତି - '' କବିର ପ୍ରଥମ କାମ ହେଲା, ସେ ଭଲ କବିତା ଲେଖିବ, ଦ୍ୱିତୀୟ କାମ ହେଲା, ପାଠକକୁ ସନ୍ତୁଷ୍ଟ କରିବ । ଭଲ କବିତା ସମକାଳରେ ଆଦର ନା ପାଇଲେ ମଧ୍ୟ ମହାକାଳ ତାକୁ ଆପଣେଇ ନିଏ । ମନ୍ଦ ଯଶପ୍ରାର୍ଥୀ କବିମାନେ ଦିନେ ନା ଦିନେ ଧରାପଡ଼ନ୍ତି । ନୂତନ କବିଟିଏ ବୃହତ୍ ପାଠକ ଗୋଷ୍ଠୀଟିଏ ନ ପାଇଲା ବୋଲି ବିଡ଼ମ୍ବିତ ହେବା ଉଚିତ ନୁହେଁ । କଳା କାହାରିକୁ କିଛି କହିବାକୁ, କିଛି ଭାବିବାକୁ କିମ୍ବା କିଛି ହେବାକୁ କହେନା । ଗଛମାନଙ୍କ ପରି ଏହା ତିଷ୍ଠି ରହେ । ତୁମେ ଏହାକୁ ଆଦର କରିପାର, ତୁମେ ଏଠୁ କଦଳୀ ତୋଳିପାର, ଏଠୁ ଜାଳେଣି ବି ସଂଗ୍ରହ କରିପାର । ତୁମେ ଇଚ୍ଛା ଅନୁସାରେ ଯାହା କିଛି କରିପାର ।''

ଏଣୁ କବିର କାର୍ଯ୍ୟ ହେଲା ଭଲ ଚାରା ରୋପିବା ଓ ତା'ର ପରିଚର୍ଯ୍ୟା କରିବା । କବିତାର ବ୍ୟାଖ୍ୟା ପ୍ରତି ଦୃଷ୍ଟି ଦେବାର ତା'ର କୌଣସି ହେତୁ ନାହିଁ । ୟେଟସ୍‌ଙ୍କ ପରି ଏଲିୟଟ (T.S. Eliot) କହୁଥିଲେ, "କବିତାର ବକ୍ତବ୍ୟକୁ ଗୁରୁତ୍ୱ ନ ଦେଇ ତାହା କ'ଣ ଓ କିପରି ହୋଇଛି, ତା'ର ବିଚାର କର" । (' A Poem is to be tested not by what it says but by what it is.') ଏହାଦ୍ୱାରା କବିତାର ଭାବପକ୍ଷ ଅପେକ୍ଷା କଳାପକ୍ଷ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଏ । ବୁଣାଟ ଓ ସଂରଚନା କବିତାକୁ ରୁଚିକର କରେ । କବିତାରେ କବିତା ଫୁଟାଇବା କବିର ଲକ୍ଷ୍ୟ ।

'ପ୍ରତି କବି ନିଜେ ନିଜର ଆରିଷ୍ଟଟଲ' । ବାଇରନ୍‌ଙ୍କ ଏ ଉକ୍ତି ଅହେତୁକ ନୁହେଁ । ଆରିଷ୍ଟଟଲ ଥିଲେ କାବ୍ୟତତ୍ତ୍ୱ ବିଶାରଦ । ସାହିତ୍ୟ, ସଂଗୀତ, କଳା, ସ୍ଥାପତ୍ୟାଦି ସକଳ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଅନତିକ୍ରମ୍ୟ ଥିଲା । ପ୍ରତ୍ୟେକ କବିଙ୍କୁ ଆରିଷ୍ଟଟଲ କହିବା ମୂଳରେ କବି ନିଜ କବିତାରେ କିପରି ବ୍ୟାଖ୍ୟାନ ସୂତ୍ର ରଖିଯାଇଥାଏ, ତା'ର ସୂଚନା ମିଳେ । କବି ୟେଟସ୍ ଲେଖିଲାବେଳେ ବହିପାଖରେ ଦୀପଟିଏ ଜାଳି ରଖୁଥିଲେ । ଏ ସଂପର୍କରେ ହିକ୍ (Hic) ନାମକ ଚରିତ୍ରଟି ଇଲେ (Ille) କୁ ପଚାରେ - " ତୁମେ କାହିଁକି ଖୋଲା ବହି ପାଖରେ ଲ୍ୟାମ୍ପଟିଏ ଜଳାଇ ରଖ ? ତୁମେ କ'ଣ ଏହାଦ୍ୱାରା ସମୟବାଲିରେ ଚରିତ୍ରମାନଙ୍କ ପଦାଙ୍କ ଆଙ୍କ ? ଲିଖନ ଶୈଳୀ ତ ସାଧ ସାଧନାରୁ ଜନ୍ମେ । ଅନୁକରଣପୂର୍ବକ ମହାନ ପୂର୍ବାଚାର୍ଯ୍ୟଙ୍କଠାରୁ ତ ଏହା ହାସଲ କରାଯାଇପାରେ । "

ତା'ର ଉତ୍ତରରେ ଇଲେ କହେ, "ତା'ର କାରଣ ମୁଁ ଚିତ୍ରକଳ୍ପଟିଏ କିମ୍ବା ରୂପ ପ୍ରତିମାଟିଏ ଖୋଜେ । ବହିରୁ ଚରିତ୍ର ଖୋଜିବା ମୋର କାମ ନୁହେଁ ।" ଏପରି ପରିସ୍ଥିତିରେ ମୁକାବିଲା କଲାବେଳେ କାଫ୍‌କା ଝରକା ବାହାରକୁ ଚାହୁଁଥିଲେ । ସେତେବେଳେ ଚିତ୍ରକଳ୍ପମାନ ତାଙ୍କ ମନରେ ଉଦ୍‌ଭାସିତ ହେଉଥିଲା । ମାନସିକ ଉଦ୍‌ଭାସନ ସହିତ କବି-କଳ୍ପନାରେ ବାସ୍ତବତା ମଧ୍ୟ ଫେଣେଇ ଉଠୁଥିଲା । କଲରିଜ୍ ବାସ୍ତବତାକୁ ଘନକୃଷ୍ଣ ସ୍ୱପ୍ନ ( Reality is Dark Dream ) ବୋଲି ବର୍ଣ୍ଣନା କରିଛନ୍ତି । ବସ୍ତୁତଃ କବିତାଲକ୍ଷ୍ମୀ ଅମୃତ ପାତ୍ରଧାରିଣୀ ହୋଇ କେତେବେଳେ ନିଃସରିତ ହୁଅନ୍ତି , ତାହା କଳନା କରିବା ସହଜ ନୁହେଁ ।

ସବୁ ଅବେଳ ହିଁ କବିତାର ବେଳ । ସୃଜନ ମୂହୂର୍ତ୍ତଟି କେତେବେଳେ କଳାଘୁମର ନିସ୍ତବ୍ଧତାର ମୁହୂର୍ତ୍ତ ହୁଏ ଓ କାବ୍ୟଲକ୍ଷ୍ମୀଙ୍କ ଆବିର୍ଭାବ ଲଗ୍ନ ଠିକ କେତେବେଳେ, ତାହା ନିରୂପଣ କରାଯାଇ ପାରେନା । ପ୍ରତ୍ୟେକ କବି କବିତା ଲେଖିଲାବେଳେ ଆବିଷ୍ଟ ହୋଇ ପଡ଼ନ୍ତି । "ସେ ମହାମାୟା ରାତିରେ ମୋତେ କହି / ମୁହିଁ ସେ କଥା ଗୋଟିକୁ ଅଭ୍ୟାସ କରଇ " ବୋଲି କବି ବୟାନ କରିଚାଲେ କିମ୍ବା ' ରାମ ତାରକ ମନ୍ତ୍ର ପରସାଦେ / ମୋହର କବିପଣ ଉଦେ ' ବୋଲି କହିବସେ ଅଥବା ଶ୍ରୀରାଧା ଲେଖିଲାବେଳେ ମୋ ହାତ ଦୁଇଟି ଭଡ଼ା ଦେଇଥିଲି

ବୋଲ କଥା ବାଢ଼ି ବସେ କିମ୍ବା ହାର୍ଡର (J.G. Herder ) ଙ୍କ ପରି କହେ - '' ମୁଁ ଗଛଟିଏ ପରି ବଢ଼ିଛି, ବୀଜ ହୁଏତ ଥିଲା ; ବାୟୁ, ମାଟି ଓ ଅନ୍ୟାନ୍ୟ ଉପାଦାନ ଯେମିତି ଅଙ୍କୁରଣରେ ସହାୟତା କରନ୍ତି, କବିସତ୍ତା ବି ପରିବେଶ ପାଇଲେ ସେମିତି ଗଜେଇ ଉଠେ, ଗଛ ହୁଏ ଓ ଫଳଧରେ । କବି କିନ୍ତୁ ଏସବୁ ନିଜେ ନିଜକୁ ଦେଇ ପାରି ନଥାଏ । '' କାରର୍ଲାଇଲ କବିର ବିକାଶକୁ ବୃକ୍ଷର ଅଭିବୃଦ୍ଧି ସହିତ୍ ସମୀଭୂତ କରି ଯାଇଛନ୍ତି । ଏ ସମସ୍ତ ବିଚାରରୁ ସୂଚିତ ହୁଏ ଯେ କବିତା ସ୍ୱୟଂପ୍ରଭ ।

ଆରିଷ୍ଟଟଲଙ୍କ ନୀତିଶାସ୍ତ୍ର ସଂପର୍କରେ ବ୍ୟାଖ୍ୟାନ କଲାବେଳେ ବୋସୱେଲଙ୍କ ପ୍ରଶ୍ନ ଥିଲା- '' କବିତା କ'ଣ ?'' ତା'ର ଉତ୍ତର ଦେବାକୁ ଯାଇ ଜନ୍‌ସନ୍ କହନ୍ତି, ''କବିତା କ'ଣ ନୁହେଁ, ତାହା କହିବା ସହଜ । ଆମେ ଜାଣୁ ଆଲୋକ କ'ଣ; କିନ୍ତୁ ତାର ସ୍ୱରୂପ ବର୍ଣ୍ଣନା ସହଜ ନୁହେଁ '' । ଏହି ପ୍ରତୀକାଶ୍ରୟୀ ବର୍ଣ୍ଣନା ଭିତରେ କବିତା ଯେ କେବଳ ଅନୁଭବ୍ୟ ବା ବେଦ୍ୟ, ଏ କଥାଟି ସୂଚିତ ହୋଇଥାଏ । କବିତା ସତତ ପାଠକର ଚେତନା ଭିତରେ ଢ଼େଉ ଭାଙ୍ଗିପାରେ । କବିର ଅନ୍ତର୍ମାନସରେ ଯେଉଁ ଅନୁଭୂତିମାନ ପ୍ରତୀକରୂପେ ଘୂରି ବୁଲୁଥାନ୍ତି, ସେ ସବୁ ଭାବନାବେଗରେ ବସ୍ତୁଗତ ପାରସ୍ପର୍ଯ୍ୟର ଭୂମିକା ନେଇ କବିତାରେ ଫୁଟିଉଠେ । ଫୁଲ ଫୁଟିଲା ପରି ତା'ର ପରିପ୍ରକାଶ । ଫୁଲଫୁଟାବେଳ ତୁଲ୍ୟ ହିଁ କବିତାର ଜନ୍ମବେଳ । କବିତା ଜନ୍ମିଲା ମାତ୍ରେ କବିଠାରୁ ତା'ର ନାଡ଼ି ବନ୍ଧନ ଛିନ୍ନ ହୋଇଯାଏ। ମହାଭାରତ ବର୍ଣ୍ଣିତ ଦ୍ରୌପଦୀ ସଦୃଶ। ପୂର୍ଣ୍ଣଯୌବନା ହୋଇ କବିତା ଜାତ ହୋଇଥାଏ । କବି କେବଳ ଯଜ୍ଞାନୁଷ୍ଠାନ କରିଥାଏ । କବି ନିଜେ କାବ୍ୟ-ଦ୍ରୌପଦୀକୁ ଦେଖି ତଟସ୍ଥ ଯେ ନ ହୁଏ, ତାହା ନୁହେଁ, କିମ୍ବା ପୁରାଣରେ ବର୍ଣ୍ଣିତ ବ୍ରହ୍ମା ନିଜ ତନୟା ସରସ୍ୱତୀଙ୍କ ଅନୁଗାମୀ ହେଲା ପରି ବି ଯେ ନ ହୁଏ, ତାହା ହେବନାହିଁ । ତେବେ କିଛି ଦିନ ପରେ କବିର ସେଇ କବିପଣ ରହେନା । ସେ ନିଜ କବିତାର ପାଠକଟିଏ ହୋଇ କେବଳ ବଞ୍ଚିରହେ । ପାଠକେ କବିତାକୁ ଆପଣେଇ ନେବାକୁ ଆରମ୍ଭ ବି କରିଦିଅନ୍ତି ।

କବିତା ରଚିତ ହେଲାମାତ୍ରେ ସ୍ୱୟମ୍ବରା ହେବାକୁ ଚାହେଁ । କବି ପୁଣି ଯୁଗେ ଯୁଗେ ଗ୍ରାହକତା ପାଇଁ କମ ତପସ୍ୟା କରି ନ ଥାଏ । 'ରସିକ ଗ୍ରାହକ କବି କୋଟି ଆୟୁ ଘେନି ବର୍ତ୍ତିଥିଲେ' କବିର କବିତ୍ୱ ମ୍ଳାନ ହୁଏନା । ଏହା ଥିଲା ମଧ୍ୟକାଳୀନ ଓଡ଼ିଆ କବିର ଉଚ୍ଚାରଣ । ବିଂଶ ଶତକର କବିଟିଏ ମଧ୍ୟ କହିବସେ, '' ଗ୍ରାହକତା ସିନା କବି ସ୍ୱର୍ଗସୁଖ / ଆନ ମୂଲେ କବି ତୋଷଇ କେହି '' ( କୋଣାର୍କ) ।

କବିତାରେ ପାଠକୀୟ ଆବେଦନ (Readers Response) ପ୍ରତି କବିର ପ୍ରଯତ୍ନ ଯେ ନାହିଁ , ତାହା ନୁହେଁ । ଆଜି ମଣିଷର ବୈଜ୍ଞାନିକ ମନ ଓ ମନର ପ୍ରତିଫଳନ ଘଟୁଛି । ଫଳରେ ବ୍ୟକ୍ତିର ଲଳିତ କଳ୍ପନା ବା ଫାନ୍‌ସିର କ୍ରମବିଲୋପ ବି ସାଧିତ ହେଉଛି । ସେଦିନ ରୋମାଣ୍ଟିକ କବି ସେହି ବିଜ୍ଞାନର ଅନୁପ୍ରବେଶ ଲକ୍ଷ୍ୟକରି କବିତାକୁ ବିଜ୍ଞାନର ଭଗିନୀ

(Science and her sister powy) ବୋଲି ଆଖ୍ୟାଦେବାକୁ ଆରମ୍ଭ କରିଥିଲେ ; କିନ୍ତୁ ୱାର୍ଡସୱାର୍ଥଙ୍କ ପାଇଁ ବିଜ୍ଞାନ ଓ କବିତା ଥିଲା ଯଥାକ୍ରମେ ଆଦି ଓ ଅନ୍ତିମ ଜ୍ଞାନ ; ଜ୍ଞାନ ବଳୟର ଆଲ୍‌ଫା ଏବଂ ଓମେଗାକୁ ଏ ସବୁ ଦ୍ୟୋତିତ କରିଥାଏ । ତେବେ, କବିତା ମଣିଷର ହୃଦୟବୃତ୍ତି ପରି ଚିରନ୍ତନ । ଏବେ ହୃଦୟବୃତ୍ତିର ଅବକ୍ଷୟ ଦେଖି ଡି.ଏଚ.ଲରେନ୍‌ସ କହୁଥିଲେ -" ଜ୍ଞାନ ଆଜି ମଣିଷକୁ ହତ୍ୟା କରି ସାରିଛି । ସୂର୍ଯ୍ୟ ଏବେ କେବଳ ଦାଗବିଶିଷ୍ଟ ଏକ ଗ୍ୟାସ ଗୋଲକ ମାତ୍ର । ଜ୍ଞାନ ଆଜ ଚନ୍ଦ୍ରକୁ ହତ୍ୟା କରିଛି । ପରମ୍ପରାର ଆପୋଲୋ, ଆଟିସ ଡିମେଟର, ପରସେଫୋନ ସମସ୍ତେ ଆଜି ବିଦାୟ ନେଇଛନ୍ତି । "

ଏଥିରୁ ଗୋଟିଏ କଥା ସୂଚିତ ହୁଏ ଯେ ଆମ ଚେତନାରୁ ଲଳିତ କଳ୍ପନା ବେଳୁବେଳ ଲୋପ ପାଉଛି । ଆମେ ବିଜ୍ଞାନର ଘେର ଭିତରେ ଜୀବନ କୁ ଦେଖୁଛୁ । ତେବେ, ମନେ ରଖିବାକୁ ହେବ ଯେ ବିଜ୍ଞାନ କବିତାର ବାଧକ ନୁହେଁ । ବିଜ୍ଞାନଆଧାରିତ ବିଭିନ୍ନ ଚିତ୍ରକଳ୍ପ ଓ ଧାରଣା ମଧ ସାଂପ୍ରତିକ କବିର ଅଭିଜ୍ଞତାକୁ ପ୍ରସାରିତ କରିଚାଲିଛି । ଘନୀଭୂତ ଜଳୀୟ ବାଷ୍ପପୁଞ୍ଜରେ ସୂର୍ଯ୍ୟ କିରଣର ପ୍ରତିଫଳନ ସାତରଙ୍ଗ ସୃଷ୍ଟିକରେ । ତାହା କବି ପାଇଁ ମନଲୋଭା ଇନ୍ଦ୍ରଧନୁ ପାଲଟେ । ବିଜ୍ଞାନ ଚର୍ଚ୍ଚିତ ଇନ୍ଦ୍ରଧନୁର ହୁଏତ ବିଲୁପ୍ତି ଘଟେ, କିନ୍ତୁ କବି-ବର୍ଣ୍ଣିତ ଇନ୍ଦ୍ରଧନୁର ମୃତ୍ୟୁ ହୁଏନା । ତାହା କାଳକାଳ ଧରି ପାଠକର ସ୍ମୃତିରେ ସଞ୍ଚିତ ରହି ଆର୍କିଟାଇପ୍ ବନିଯାଏ । କବିତା ସବିଶେଷ ଚେତନାକୁ ବ୍ୟକ୍ତ ନ କରି ନିର୍ବିଶେଷ ମାନସିକତାକୁ ସୂଚେଇ ଦେଇଥାଏ । ଉଦାହରଣ ସ୍ୱରୂପ ନିଉଟନଙ୍କ ତ୍ରିକୋଣୀ କାଚରେ ପ୍ରତିଫଳିତ ଇନ୍ଦ୍ରଧନୁ ଓ ୱାଡ୍‌ର୍ସ ୱାର୍ଥଙ୍କ କବିତାବର୍ଣ୍ଣିତ ଇନ୍ଦ୍ରଧନୁ ଭିତରେ ଏହି ତାରତମ୍ୟକୁ ହେଜା ଯାଇପାରେ । ତ୍ରିକୋଣୀକାଚ ବା ପ୍ରିଜିମରେ ପ୍ରତିଫଳିତ ଇନ୍ଦ୍ରଧନୁ କିମ୍ବା ବର୍ଷା ଆକାଶର ପରିଦୃଶ୍ୟମାନ ଇନ୍ଦ୍ରଧନୁ ଦ୍ରଷ୍ଟାକୁ ତାତ୍କାଳିକ ଆନନ୍ଦ ଦେଲାବେଳେ କାବ୍ୟବର୍ଣ୍ଣିତ ଇନ୍ଦ୍ରଧନୁ କାଳକାଳ ଧରି ମଣିଷର ସ୍ମୃତିର ଧନ ହୋଇ ରହିଯାଏ । ଏଣୁ ଦାର୍ଶନିକ ଜନ ଷ୍ଟୁଆର୍ଟ ମିଲ କହୁଥିଲେ, "ବିଜ୍ଞାନ ବିଶ୍ୱାସର କଥା କହିଲାବେଳେ କବିତା ଅନୁଭୂତିର କଥା କହେ । କବିତା ଯେତେବେଳେ ବିଶ୍ୱାସଭିତ୍ତିକ ହୁଏ, ସେତେବେଳେ ତାହା କବିତା ପଦବାଚ୍ୟ ହୋଇପାରେନା, କେବଳ ଏକ ଶାବ୍ଦିକ ଉଚ୍ଚାରଣ ହୋଇ ରହିଯାଏ । "

କବିତା ବସ୍ତୁବିଶେଷ ନୁହେଁ କିମ୍ବା ବୈଜ୍ଞାନିକ ସତ୍ୟ ବି ନୁହେଁ । ଏହା ମାନସିକ ଭାବାବେଗର ସୁନିବନ୍ଧ ବାଙ୍ମୟ ପରିପ୍ରକାଶ । କବିଟିଏ ତା'ର ଅନୁଭବକୁ ପାଠକ ଆଗରେ ପରିବେଷଣ କରେ ସତ, କିନ୍ତୁ ଏ ଅନୁଭୂତି କବିଚେତନାର ବ୍ୟକ୍ତିକ ସ୍ତର ଡେ଼ଇଁ ସାର୍ବଜନିକତାକୁ କୋଳାଗ୍ରତ କର ନେଇଥାଏ । ଆରିଷ୍ଟଟଲ କବିର ବକ୍ତବ୍ୟ ଭିତରେ ସାର୍ବଜନିକତାକୁ ଲକ୍ଷ୍ୟ କରିଥିଲେ । ସବିଶେଷତା ଥିଲା ଇତିହାସ ବା ବିଜ୍ଞାନର ବକ୍ତବ୍ୟ ।

କବିତା କାଳେ କାଳେ ସୌନ୍ଦର୍ଯ୍ୟାତ୍ମକ ଅନୁଚିନ୍ତନର ଆଧାର । ଏହା ବୈଜ୍ଞାନିକ

ସତ୍ୟ ନୁହେଁ କିମ୍ବା ବସ୍ତୁବିଶେଷ ବି ନୁହେଁ । ଏଥିରେ ମାନସିକ ଭାବାବେଗ-ଅଧ୍ୟୁଷିତ ଅନୁଭୂତି-ଜଗତ ଦିଶେ । ଏହା ବୃହତ୍ତର ଜୀବନବୋଧକୁ ପ୍ରତୀକିତ କରେ । ଏଣୁ କବି ସତତ ଘୋଷଣା କରି ବସନ୍ତି -

'ଜଗତ କାନରେ
ଯେଉଁ ସବୁ ସଙ୍ଗୀତ ଧ୍ୱନିତ ହୁଏ
ସେ ସବୁ ଅଦରକାରୀ ନୁହେଁ ।
ସୁନିଶ୍ଚିତ ଭାବରେ
କବିଟିଏ ଋଷିଟିଏ
ମାନବବାଦୀଟିଏ
ସବୁ ମଣିଷର
ଚିକିତ୍ସକଟିଏ ।

'Sure not all
Those melody sung into the world ear
Are useless : Sure a poet is a sage
A humanist, physician to all men'

('The Fall of Hyperion'

ବୈଦିକ ସୂକ୍ତରେ କବି ଶବ୍ଦ ଋଷି ଅର୍ଥରେ ପ୍ରଯୁକ୍ତ । ନିରୁକ୍ତକାର 'କବି' ଶବ୍ଦର ବ୍ୟାଖ୍ୟା କରି 'କବିଃ କ୍ରାନ୍[illegible] କା ଭବତି କବତେ ବା' ଉକ୍ତିରେ କବିଙ୍କୁ ଋଷିର ଆସନରେ ଆସୀନ କରାଇଛନ୍ତି । ପୁଣି [illegible]ଙ୍କୁ ଶିକ୍ଷକ ବୋଲି ଘୋଷଣା କରବାରେ ୱାର୍ଡସୱାର୍ଥ ଶତଜିହ୍ୱ ହୋଇ ଉଠୁଥିଲେ । ''ପ୍ରତି ମହାନ୍ କବି ଶିକ୍ଷକଟିଏ । ମୁଁ ପ୍ରତି କବିଙ୍କୁ ଶିକ୍ଷକ ଭିନ୍ନ ଅନ୍ୟ କୌଣସି ଅଭିଧାରେ ସଂଜ୍ଞାପନ କରିବାକୁ ଚାହେଁନା ।''

ସଂପ୍ରତି କବିର ଆଉ ଶିକ୍ଷକ ଅଭିଧା ନାହିଁ । ସେ ଅନ୍ତର୍ଦ୍ରଷ୍ଟା ହୋଇ ବି ସ୍ରଷ୍ଟାର କା'ନ ନେ[illegible] କବିତ୍ୱର ହର୍ମ୍ୟ ତାସଘର ପରି ଭୁଶୁଡ଼ି ପଡେ । ତାଙ୍କୁ ଦ୍ୱିତୀୟ ଈଶ୍ୱରତ୍ୱ ବରଣ କରିବାକୁ ପଡେ । ଭର୍ଜିନିଆ ଉଲଫ୍‌ଙ୍କୁ ଉପନ୍ୟାସରେ ଜୀବନାନୁଭବର ଝଲକ କିପରି ରହିବ ବୋଲି ପଚରାଗଲା । ତା'ର ଉତ୍ତରରେ ସେ କହିଥିଲେ- '' ଅନ୍ତର୍ଲୋକକୁ ଦେଖ । ଜୀବନ ଯେମିତି ଦିଶେ, ପ୍ରକୃତରେ ତାହା ସେମିତି ନୁହେଁ । ଜୀବନ ଆଲୋକମାଳାର ସୁବିନ୍ୟସ୍ତ ପରିପ୍ରକାଶ ନୁହେଁ, ଏହା ହେଉଛି ଏକ ଆଲୋକିତ ପ୍ରଭାମଣ୍ଡଳ ; ଅର୍ଦ୍ଧ ସ୍ୱଚ୍ଛ ପରିମଣ୍ଡଳ, ଯାହାକି ଆମକୁ ସଚେତନତାର ଆରମ୍ଭରୁ ଶେଷ ଯାଏ ଘେରି ରହିଛି ।''

ଉପନ୍ୟାସର ପରିସର ସ୍ୱଭାବେ ବିସ୍ତୃତ, କିନ୍ତୁ କବିତାରେ ସବୁ ସୂଚନାତ୍ମକ । ଇଙ୍ଗିତ ମାଧ୍ୟମରେ, ଚିତ୍ର ଚେତନା ଜରିଆରେ ସେଠି ପୋଥିଏ କଥା କୁହାଯାଇପାରେ । ଏଣୁ କବିଟିଏ କବିତା ଲେଖିଲାବେଳେ କାବ୍ୟର ଅବବୋଧ ପାଇଁ ସୁନ୍ଦର ସୁନ୍ଦର ରୂପକ ବା ମେଟାଫର ବ୍ୟବହାର କରିଥାଏ । ଏହି ମେଟାଫର ସବୁକୁ, ଦାର୍ଶନିକ ହବ୍‌ସ କହୁଥିଲେ 'ଆଲୋକିତ ଟର୍ଚ୍ଚ' । ଏସବୁ ପାଠକକୁ ମାର୍ଗ ଦେଖାଇଥାଏ । ଫଳରେ କବି ମେଟାଫର ପ୍ରୟୋଗରେ ନିପୁଣତା ଲାଭ କରିବା ଆବଶ୍ୟକ ।

କବିର ଶବ୍ଦ ଚୟନରେ ସଜୀବତା ପରିଦୃଷ୍ଟ ହେଲେ କବିତା ଅଧିକ ଆକର୍ଷଣୀୟ ହୋଇଥାଏ । ଭାଷାକୁ ଏକ ଅରଣ୍ୟାନି ସହ ତୁଳନା କରାଯାଇପାରେ । ଅରଣ୍ୟରେ ଯେପରି ପୁରୁଣା ପତ୍ର ପାଚି ଝଡ଼ିପଡ଼େ, ସେଠି ପୁଣି ନୂଆପତ୍ର କଅଁଳେ, ସେମିତି ସମୟକ୍ରମେ କାବ୍ୟ ଭାଷା ବି ବଦଳିଯାଏ । କବିଟି ଭାଷାର ଯାଦୁକର ନ ହେଲେ ଭଲ କବିତା ଉତ୍ତୁରେ ନାହିଁ । ତେବେ ଭାଷାର ଚୟନ କାଳରେ କବିକୁ ପାଠକ ସମାଜ ପ୍ରତି ଦୃଷ୍ଟି ଦେବାକୁ ହେବ । ସେ କେବଳ  ସମକାଳର କଥା ନ କହି କାଳାନ୍ତରର କଥା ମଧ୍ୟ କହେ । ସେ ସମ୍ଭାବ୍ୟ ଜଗତ ଓ ଜୀବନର ସୂତ୍ର ଉଦ୍‌ଘାଟନ କରିବା ଦରକାର । ଏହି ପରିପ୍ରେକ୍ଷୀରେ ହବ୍‌ସ କବିକୁ ଜଣେ ଭୂଗୋଳବିତ୍‌ଙ୍କ ସହ ତୁଳନା କରୁଥିଲେ । ଭୂଗୋଳବିତ୍ ଯେତେବେଳେ ମାନଚିତ୍ରରେ ସମୁଦ୍ରର ଚିତ୍ର ଆଙ୍କନ୍ତି, ତହିଁରେ ମାଛ ଓ ଜାହାଜ ବି ଆଙ୍କି ପାରନ୍ତି । ତାକୁ ଆମେ ସମ୍ଭବ ବୋଲି ଗ୍ରହଣ କରିନେଉ ;କିନ୍ତୁ ଯେତେବେଳେ ସେ ସେ ସ୍ଥାନରେ ହାତୀର ଛବି ଆଙ୍କି ବସନ୍ତି, ତାହା ଅସମ୍ଭବ ମନେହୁଏ । ତାକୁ ତାଙ୍କର ଅଜ୍ଞତା ବୋଲି କୁହାଯାଏ । କବି ପାଇଁ ବି ଏହା ସତ୍ୟ । ଏଣୁ କବିଟିଏ ନିତ୍ୟକାଳର ନେତ୍ରଟିଏ । ତା'ଠି ମିଥ୍ୟାଚାର ଶୋଭା ପାଏନା । କବିତା ସେହି ନେତ୍ରର ନୀଳାଭ ଆଲୋକ । ପାଠକଟିଏ ସେ ଆଲୋକରେ ନିଜର ଅନ୍ତର୍ଲୋକକୁ ଦେଖେ । ସେତେବେଳେ ମାନବୀୟ ଚେତନା ସ୍ତରରେ କବି, କବିତା ଓ ପାଠକ ପୁରାଣବର୍ଣ୍ଣିତ ବାମନଙ୍କର ତିନୋଟି ପାଦ ବୋଲି ମନେହୁଏ । ଭୂମି, ଭୂମା ଓ ଜୀବନସୀମା ଏକାଠି ମିଶିଯାଏ । ଜୀବନର ବୃହତ୍ତର ସତ୍ୟକୁ କବି କହେ । କବିତାରେ ତାହା ଚେନାଏ ଆଲୋକପରି ସ୍ଫୁରିତ ହୁଏ । ସଶ୍ରଦ୍ଧ ପାଠକ ସେହି ଆଲୋକକୁ ଗୁଣିହୁଏ ।

ଆଜିର ଜୀବନ ଏକାନ୍ତ ବିଭଙ୍ଗ । କବିତା ବହୁ ସମୟରେ ସେ ବିଭଙ୍ଗତା ଓ ଅନିକେତ ଭାବର କଥା କୁହେ । 'ଡକ୍ଟର ଜିଭାଗୋ'ର ନାୟିକା ଲାରା ଉଦ୍‌ଘୋଷଣା କରେ - ''ଜୀବନର ସମଗ୍ର ମାନବୀୟ ମାର୍ଗ ନଷ୍ଟଭ୍ରଷ୍ଟ ଓ ବିଧ୍ୱସ୍ତ ।'' ଏଣିକି ମଣିଷ କେବଳ ବ୍ୟକ୍ତିଗତ ଜୀବନ ପରିଧିକୁ ସର୍ବସ୍ୱ ବୋଲି ଗ୍ରହଣ କରିନେଇଛି । ସବୁଠି ସେ ଦେଖୁଛି ବ୍ୟକ୍ତିଗତ ଜୀବନର ମାଧୁର୍ଯ୍ୟ । ସମାଜ ଜୀବନ ଧୂଳିସାତ ହୋଇଯାଇଛି । ଆଧୁନିକ କବି ଅନୁଭବ କରୁଛନ୍ତି - That at every meeting we are meeting a stranger. ଆମେ ପ୍ରତ ସାକ୍ଷାତରେ

ଅଜଣାକୁ ହିଁ ଭେଟୁ । ପରିଚିତ ଜଗତ ସତେକି ଆମ ପାଖରୁ ଉଭେଇ ଯାଇଛି । ଆଜି ଯୋଗାଯୋଗର ପରିଧି ବାହ୍ୟତଃ ପ୍ରସାରିତ ହୋଇଛି ; କିନ୍ତୁ ଅନ୍ତର୍ଭାଗରେ ଆମେ ଅଣ-ଆତ୍ମୀୟତାକୁ ହିଁ ବଢ଼ାଇ ଚାଲିଛୁଁ । ଏଣୁ କବି ଏହି ଅଣ-ଆତ୍ମୀୟତାକୁ ଲକ୍ଷ୍ୟ କରି କହନ୍ତି -

ଦେଖ,
ଅନ୍ଧ ମଣିଷଟିଏ
ମଣିଷଟାକୁ ଅଣ୍ଡାଳୁଛି
କ'ଣ ବୋଲି ଚିହ୍ନିବା ପାଇଁ ।
× × × × ×
ଆଶ୍ଚର୍ଯ୍ୟ
ମଣିଷଟିଏ ମଣିଷଟିକୁ ଚିହ୍ନିପାରୁନି
ଅଥଚ ଠିକ ଚିହ୍ନୁଛି ।( ମଣିଷ ଦେଖା- ଶୈଳକଳ୍ପ )

ଫକନର ବି ନୋବେଲ ପୁରସ୍କାର ପ୍ରାପ୍ତ ଅବସରରେ କହିଥିଲେ- 'ଆଧୁନିକମାନେ ପୁନଶ୍ଚ ଶିଖନ୍ତୁ, ଅଧିକ ଗଭୀରରୁ ଗଭୀରକୁ ଖୋଳି ଚାଲନ୍ତୁ ।' ଏହା କଲେ ଅଣସତ୍ତା ଭିତରେ ସତ୍ତାର ସନ୍ଧାନ ମିଳିଯିବ । ଏହାଦ୍ୱାରା କବି ଓ ପାଠକ ଅଧିକ ନିକଟବର୍ତ୍ତୀ ହୋଇପାରିବେ ।

ପିକାସୋ ଏକଦା ଲେଖିଥିଲେ, ''କଳା ଯେ ସତ୍ୟ କହେ, ଏହାଠାରୁ ମିଥ୍ୟାଚାର କିଛି ନାହିଁ ''। ଏହା କହିବା ମୂଳରେ କଳାଜଗତର ସତ୍ୟ ସହ କଳ୍ପନାର ସମନ୍ୱୟକୁ ହୁଏତ ଲକ୍ଷ୍ୟ କରାଯାଇଛି । ସତ୍ୟକୁ କଳାତ୍ମକ ଭାବେ ପ୍ରକାଶ କରିବାକୁ ହେଲେ କଳ୍ପନାର ଆଶ୍ରୟ ନେବାକୁ ପଡ଼ିପାରେ । ଏହାକୁ ପିକାସୋଙ୍କ ପରି ଚିତ୍ରଶିଳ୍ପୀ ବିଶ୍ୱାସ କରୁଥିଲେ । କବିତାରେ ମଧ୍ୟ ସତ୍ୟକୁ କଳାତ୍ମକ ବ୍ୟଞ୍ଜନାରେ ପ୍ରକାଶ କରାଯାଇଥାଏ । ପାଠକ ସ୍ୱକୀୟ ଅବବୋଧ ମାଧ୍ୟମର ସେହି ସୂତ୍ରଟିକୁ ଧରିନେଲେ କବିତା ସୁବୋଧ୍ୟ ହୋଇଥାଏ ।

କବିଟିଏ କବିତା ଲେଖିଲାବେଳେ ସ୍ମରଣ ରଖିବାକୁ ହେବ ଯେ କବିତାଟି ସେହି କାଳର ପାଣିପାଗ ଓ ଦୃଶ୍ୟପଟକୁ ପ୍ରତିଫଳିତ କରୁଥିବ । କାରଣ, କବି ଓ ଜନସାଧାରଣ ସାମନା ସାମ୍ନି । କବି ଜାଣେ ଯେ ପାଠକେ ତା'ର କବିତାକୁ ପଢୁନାହାନ୍ତି । କବିତା ଆଉ କର୍ଣ୍ଣ ବା ହୃଦୟର ଆସ୍ୱାଦନ ନୁହେଁ । ତାହା କ୍ଷୁର ଧାର ବୁଦ୍ଧି ଓ ତୀକ୍ଷ୍ଣ ବିଶ୍ଳେଷଣ ଶକ୍ତିର ଅପେକ୍ଷା ରଖେ । ପୁଣି କବିତାରେ ଜାତୀୟତା ନାହିଁ , ପ୍ରାଦେଶିକତା ନାହିଁ, ଅଛି ଏକ ବାୟବୀୟ ଆନ୍ତର୍ଜାତୀୟତା । ଏଣେ ପାଠକଗୋଷ୍ଠୀ ବୈଜ୍ଞାନିକ ଦୃଷ୍ଟିସଂପନ୍ନ ସଂସ୍କାରଯୁକ୍ତ ମନ ଓ ମନନକୁ ଧ୍ୟେୟ ମଣୁଛନ୍ତି । ତେଣୁ କବିତାରେ କାଳାନ୍ତରର ବାଣୀ ଧ୍ୱନିତ ନ ହେଲେ ଚଳେନା । ତେବେ କବିତା ପରିଦୃଶ୍ୟମାନ ଜଗତର ପ୍ରତିନିଧିତ୍ୱ ନ କରି ବହୁ ସମୟରେ କବିର ମାନସିକତାକୁ

ପ୍ରତୀକିତ କରିଥାଏ । ପ୍ରତି ସୃଷ୍ଟି ମୂଳରେ ସଂଘାତର ଘନକୃଷ୍ଣ ଇଲାକା । ସବୁ ସୃଜନ ସଂଘର୍ଷ ସଂଜାତ । କବିକୁ କବିତା ଲେଖିଲାବେଳେ ସଂଘର୍ଷର ମୁକାବିଲା କରିବାକୁ ପଡ଼େ । ଶବ୍ଦମାନେ କବିର ଚିରଦୋସର । ଏମାନଙ୍କ ସହ ସେ କଳହ କରେ । ଏମାନଙ୍କୁ ସେ ପ୍ରେମ କରେ । ଏମାନଙ୍କୁ ପାଇଲେ କବି-ମଣିଷଟି ବୃଦ୍ଧ ହୁଏନା । ଏହି ଶବ୍ଦମାନେ କବିକୁ ଚିରତରୁଣ କରି ରଖନ୍ତି । ତା'ର ଭାବାବେଗ ଓ ପ୍ରଜ୍ଞା ଅତୁଟ ରହେ । ସେଠି ବୟସର ଛାପ ପଡ଼େନା । କବିର ନାଟସତ୍ତା ବଦଳି ଯାଇପାରେ । ସେ ଅନୁଭବ କରେ ତା'ର କବିସତ୍ତାର ଗଛରେ କାଳ ଭେଦରେ ନାନା ପତ୍ର, ଫୁଲର ସମାବେଶ; କିନ୍ତୁ ତାର ମୂଳ ଏକ । କବିଟିଏ ଜୀବନ କାଳରେ ନାନା ମୁଖା ପିନ୍ଧିଲେ ବି ପାଠକ ତାକୁ ଚିହ୍ନଟ କରିପାରେ । କବିର ପ୍ରଜ୍ଞାର ନିର୍ଭୟସତାକୁ ସେ ଖୋଜିନିଏ । ଈଷୋପନିଷଦରେ ଋଷିକବିଙ୍କ ପ୍ରାର୍ଥନା ଥିଲା-

''ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟା ପିହିତଂ ମୁଖମ୍
ତତ୍ତ୍ୱଂ ପୂଷର୍ଣ୍ଣ ପାବୃଣୁ ସତ୍ୟ ଧର୍ମାୟ ଦୃଷ୍ଟୟେ ''

ଅର୍ଥାତ୍ ଜ୍ୟୋତିର୍ମୟ ସୁବର୍ଣ୍ଣ ପାତ୍ର ଦ୍ୱାରା ସତ୍ୟର ମୁଖ ଆବୃତ । ଜଗତ ପରିପୋଷକ ସୂର୍ଯ୍ୟ ମୋର ଉପଲବ୍ଧି ପାଇଁ ଏହା ଅପସାରଣ କରନ୍ତୁ । ସତ୍ୟଧର୍ମା ମଣିଷଟିର ପ୍ରାର୍ଥନା ଭିତରେ ବାହ୍ୟାବରଣ ଭେଦ କରି ଅନ୍ତର୍ଲୋକକୁ ଦେଖିବାର ପ୍ରୟାସ ନିହିତ । ପାଠକ କବିତାର ବାହ୍ୟ ଦେହଳି ଅତିକ୍ରମ କରି ତା'ର ଅନ୍ତର୍ନିହିତ ଚେତନାକୁ ଅନୁଭବ କରିବାର ପ୍ରଚେଷ୍ଟା ସତତ କରିଥାଏ । ବସ୍ତୁତଃ କବିଟିଏ କାବ୍ୟ ଲେଖିଲାବେଳେ ଯେଉଁ ପ୍ରଚ୍ଛାୟା ମଣ୍ଡଳ ସୃଷ୍ଟି କରିଥାଏ, ସୁଯୋଗ୍ୟ ପାଠକ ନିଜର ଧୀଶକ୍ତି, ହୃଦୟବତ୍ତା ଓ ଅଭିଜ୍ଞତାଜନିତ ତଦାତ୍ମିକତା ଫଳରେ ତାହା ଭେଦ କରିପାରେ । ସମୀକ୍ଷକ ବେଳେବେବେଳ ପାଠକ ଓ କବିତା ମଧ୍ୟରେ ମଧ୍ୟସ୍ଥତା କରିଥାଏ । ରାଧାକୃଷ୍ଣଙ୍କ ମିଳନରେ ଲଳିତା ଯେଉଁ ଭୂମିକା ନେଇଥିଲେ, କବିତା ଓ ପାଠକକୁ ମିଳାଇବାରେ ସମୀକ୍ଷକଙ୍କୁ ଅନୁରୂପ ଭୂମିକା ନେବାକୁ ପଡ଼ିଥାଏ ।

କବିତା ମଣିଷର ହଜି ଯାଇଥିବା ବାସ୍ତବତାର ଏକ ଅନୁସନ୍ଧାନ । କବି କବିତା ମାଧ୍ୟମରେ ହଜିଲା ବାସ୍ତବତାର ମାନଚିତ୍ର ଆଙ୍କେ । ସେଠି ସେ ବେଳେବେଳେ ଆତ୍ମାକୁ ଭେଟେ । ସେ ଅନୁଭବ କରେ ଯେ ଅଧିକାଂଶ ମଣିଷ ଆଂଶିକ ମଣିଷ ହୋଇ ରହିଛନ୍ତି । ଅଧିକାଂଶ କବି ମଧ୍ୟ ଆଂଶିକ କବି ହୋଇ ରହିଥାନ୍ତି । ଯେତେବେଳେ ଖଣ୍ଡିତାଂଶ ସମଗ୍ରତାକୁ ଦ୍ୟୋତିତ କରେ, ସେତେବେଳେ ଏ ପ୍ରକ୍ରିୟାଟି ଏକାନ୍ତ କବିତ୍ୱପୂର୍ଣ୍ଣ ହୋଇଉଠେ । ସମଗ୍ର ଜୀବନକୁ କବିତାରେ ରୂପାନ୍ତରିତ କରାଯାଇପାରେନା । ସମାଜ ତାହା କରାଇ ଦିଏନା । ଏଣୁ କବିଟିଏ ସଚେତନ ଭାବେ ସୃଜନଶୀଳତା ସହିତ କଳାକାର ହୋଇଥାଏ । କବିତା ହେଉଛି ଅମୃତର ସୋପାନ ଜନ୍ମମୃତ୍ୟୁର ସେତୁ । ଭାରତୀୟ ଚେତନରେ ସ୍ରଷ୍ଟାଙ୍କୁ ଆଦିକବି ଓ ବିଶ୍ୱକୁ 'ପଶ୍ୟ କାବ୍ୟ ଦେବସ୍ୟ' ବୋଲି କୁହାଯାଇଛି । ଈଶ୍ୱର ସର୍ବଶ୍ରେଷ୍ଠ କବି ଏବଂ ଜଗତ ହେଉଛି

ତାଙ୍କର ସଙ୍ଗୀତ । ରିଲ୍‌କେ କହୁଥିଲେ '' ସଙ୍ଗୀତ ରହିଛି କିନ୍ତୁ ଗାଇବାକୁ ହେଲେ ଅନ୍ୟ ଏକ ନିଃଶ୍ୱାସର ଅପେକ୍ଷା କରିବାକୁ ହେବ । ଏହାକୁ ଜୀବନ ସହିତ ଏକ ସଂଳାପ ଏବଂ ମାନବୀୟ ଅବସ୍ଥାର ଏକ ଆଲୋକିତ ପ୍ରୟାସ ବୋଲି କୁହାଯାଇପାରେ ।

କବି ମଣିଷକୁ ଦ୍ୱିଜତ୍ୱ ପ୍ରଦାନ କରେ । ଦ୍ୱିତୀୟ ଜନ୍ମର ହେତୁ ହୁଏ କବିତା । ଏହା ଦ୍ୱାରା ଅଣସତ୍ତା ସତ୍ତାରେ ରୂପାନ୍ତରିତ ହୋଇଯାଏ, ପରିଦୃଶ୍ୟମାନ ଅନ୍ଧକାର ଦୂର ହୁଏ, ଆଲୋକ ପ୍ରସରିଯାଏ ଓ ଇହକାଳରେ ଅମୃତତ୍ୱର ସ୍ପର୍ଶ ମିଳେ । ଏଣୁ କବି ଅଡ଼େନ କହନ୍ତି ,

କବିଙ୍କୁ ଅନୁସରଣ କର
ସତକୁ ଅନୁସରଣ କର
ରାତ୍ରିକୁ ଶେଷ ପ୍ରହର ଯାଏ ।
× × × × ×
ତୁମର ହୃଦୟ-ମରୁରେ
ଉପଶମର ଝରଣା ବହିଯାଉ ।

ଫଳତଃ ଆଜିର ଅଣ-ଆତ୍ମୀୟ ସମାଜ ଓ ପରିବେଶରେ କବିତା ଆତ୍ମୀୟତାର ସ୍ପର୍ଶ ପ୍ରଦାନ କରେ । ପାଠକ ଓ କବିକୁ ଏହା ମିଳେଇ ଦିଏ । ସୁଫୀ ଚେତନାରେ ଜୀବ ପରମକୁ ଭେଟିଲା ପରି ପାଠକ ବି କବିତାକୁ ଅନୁସରଣ କରେ । ପଥରେ କ୍ଳାନ୍ତଶ୍ରାନ୍ତ ପଥିକଟିଏ ରୌଦ୍ରଦୀପ୍ତ ମଧ୍ୟାହ୍ନରେ ସ୍ନିଗ୍ଧ ଶୀତଳ ଛାଇଟିଏ ପାଇଲା ପରି, କଳା କିଟିମିଟି ରାତିରେ ଚେନାଏ ଜହ୍ନ ଆଲୁଅ ଦେଖିଲା ପରି ଅଥବା ଗୁଳୁଗୁଳି ଭିତରେ ଦଲକାଏ ହେମାଳ ପବନ ଲାଗିଲା ପରି ପାଠକ କବିତାକୁ ଭେଟେ । ସେତେବେଳେ କବିର ସୃଜନକର୍ମ ସିଦ୍ଧି ଲଭେ । ତା'ର ଦ୍ୱିତୀୟ ଈଶ୍ୱରତ୍ୱର 'କା' ସାର୍ଥକ ହୁଏ । ପାଠକ, କେବଳ ଚିହ୍ନରା ଗ୍ରାହକ ନ ହୋଇ, ହୋଇଯାଏ ହୃଦୟର କବି । ସେ ମର୍ମେ ମର୍ମେ ଅନୁଭବ କରେ ,'ମୋହରି, ତୁହି ମୋହରି' । ଏପରି ପରିସ୍ଥିତି ହେଉଛି କବି, କବିତା ଓ ପାଠକର ଭେଟ ସମ୍ଭାଷଣ ପର୍ଯ୍ୟାୟ, ଏହା ହିଁ କବିର ଈପ୍‌ସିତ ଲୋକ ; ପାଠକର କାମନା-ଭୂମି ଓ କବିତାର ନୈମିଷାତୀର୍ଥ ।

□□□

# ଆଧୁନିକ ଓଡ଼ିଆ କବିତାର ଅର୍ଥ ସନ୍ଧାର

●

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି



*ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର ଓ ଅଧକ୍ଷ*

*ରେଭେନ୍‌ସା କଲେଜ, କଟକ*

କୌଣସି ମହାବିଦ୍ୟାଳୟର ପାଠାଗାରରେ ଜଣେ ସଚେତନ ପାଠକଙ୍କୁ ମାସିକ ପତ୍ରିକା ଅତି ବିରକ୍ତିରେ ଫିଙ୍ଗିଦେବାର ଦେଖି ଥରେ ପଚାରିଥିଲି, ''କିଓ ! ଫିଙ୍ଗିଦେଲ କାହିଁକି ?''

ସାମାନ୍ୟ ଲଜ୍ଜା ଓ ଟିକିଏ ସଂକୋଚରେ ସେ ଉତ୍ତର ଦେଇଥିଲେ - ''ସାର୍, କ'ଣ ସବୁ ଏମାନେ ଲେଖୁଛନ୍ତି, ମୁଁ ମୋଟେ ବୁଝିପାରୁନି।''

'' କ'ଣ କବିତା ?''

'' ହଁ ସାର୍ । ଯାହା ମନକୁ ଆସୁଚି ସବୁ ଲେଖି ଦେଉଛନ୍ତି, କାହାର କିଛି 'ଅର୍ଥ' କରି ହେଉନି । ନା ଅଛି ଭାବ, ନା ଭାଷା ।''

ମନୋଭାବକୁ ଚାପିରଖି ପୁଣି ପଚାରିଲି - '' ଆଚ୍ଛା, ଉପେନ୍ଦ୍ର ଭଞ୍ଜଙ୍କୁ ବୁଝୁଚ?''

'' ଆଜ୍ଞା ?''

'' ଭଞ୍ଜ ତୁମ କବି ସମ୍ରାଟ । ବୁଝି ପାରୁଚ?''

'' କିଛି କିଛି ନିଶ୍ଚୟ ବୁଝୁଚି । ଶବ୍ଦ ସବୁ ନ ବୁଝିଲେ ମଧ୍ୟ ଗୋଟେ କିଛି ଆନନ୍ଦ ମିଳୁଚି ।''

'' ଆଉ ଦୀନକୃଷ୍ଣ, ଗଙ୍ଗାଧର, ରାଧାନାଥ ବା ସଚି ରାଉତରା ?''

ଯୁବକଟିର ଲାଜୁରା ହସ ଦେଖି ଆଉ କିଛି ନ ପଚାରି ମୁଁ ଚାଲି ଯାଇଥିଲି ।

ଆଜିର ପାଠକ-ଗୋଷ୍ଠୀ ସାଧାରଣତଃ ଆଧୁନିକ ଓଡ଼ିଆ କବିତା ପ୍ରତି ଉଦାସୀନ ଏବଂ ତା'ର ପ୍ରଥମ ଅଭିଯୋଗ ହେଲା ଯେ କବିତା ଦୁର୍ବୋଧ । ଏ କବିତାର କୌଣସି 'ଅର୍ଥ' କରି ହୁଏନା । ଏ କବିତା ପ୍ରାଣକୁ ଛୁଏଁନା । କଥାଟି ଯଦି ସତ ହୁଏ, ତେବେ ୧୯୪୭ ପରଠାରୁ

ଆଜି ଭିତରେ ପତ୍ର ପତ୍ରିକାର ସଂଖ୍ୟା ପ୍ରାୟ କୋଡ଼ିଏ ଗୁଣ ବଢ଼ିବା ସଙ୍ଗେ ସଙ୍ଗେ ମିନି, କୁନି ଓ ସାମୟକୀ ଶହଶହ ସଂଖ୍ୟାରେ କ'ଣ ସେଇ ଦୁର୍ବୋଧତାକୁ ବିଜ୍ଞାପିତ କରାଉଛି ନା ଅର୍ଥାନ୍ୱେଷଣର ଗୋଟିଏ ଅଭିନବ ପ୍ରସାରଣରେ ଅନୁସନ୍ଧିତ୍ସାକୁ ଜାଗ୍ରତ କରୁଛି ? ପ୍ରଶ୍ନଟି ବୋଧହୁଏ ସାମାଜିକ ମନୋବିଜ୍ଞାନ ଉପରେ ଆଧାରିତ । ତେବେ ଏକଥା ସ୍ୱୀକାର୍ଯ୍ୟ ଯେ ଆଜିର ପାଠକ ଆଧୁନିକ ଓଡ଼ିଆ କବିତାର ଅର୍ଥ ବୁଝିବାରେ ଅସମର୍ଥ । ଏ 'ଅର୍ଥ'ର ଅର୍ଥ କ'ଣ- ବାଚ୍ୟାର୍ଥ ? ଭାବାର୍ଥ ? ରୂପ ସଜ୍ଜା ? ରୂପକଳ୍ପ-ଉପମା-ଉପମେୟ-ଅଳଙ୍କାର ? ଆଙ୍ଗିକ ? ନା ଛନ୍ଦ ? ସାଧାରଣ ପାଠକ କିନ୍ତୁ ଏ ଧରଣର ଶ୍ରେଣୀବିଭାଗ କରି କବିତା ପଢ଼େନାହିଁ । ପଢ଼ିବାର ଆବଶ୍ୟକତା ବି ନାହିଁ । ସେ ଖୋଜେ ଟିକିଏ ଆନନ୍ଦ, ସାଧାରଣ ବା ମୋଟାମୋଟି ଅର୍ଥ ଏବଂ କେତେ ବିନ୍ଦୁ ରସ ।

ପୂର୍ବକାଳରେ ପାଲା, ଦାସକାଠିଆର ଗାୟକ ( ଲେଖକ ମଧ ) କେତୋଟି ଯୁକ୍ତାକ୍ଷର, ବ୍ୟଞ୍ଜନବର୍ଣ୍ଣବହୁଳ ପଂକ୍ତି କିମ୍ବା ସାମାନ୍ୟ ତ୍ୱରାନ୍ୱିତ ଛନ୍ଦରେ ଶ୍ରୋତାକୁ ମୁଗ୍ଧ କରୁଥିଲା । ମୁଦ୍ରଣ ଯନ୍ତ୍ରର ପ୍ରସାର ପୂର୍ବରୁ ଉପେନ୍ଦ୍ର ଭଞ୍ଜ ବା ଦୀନକୃଷ୍ଣଙ୍କ ଶ୍ରୋତା ( ପାଠକ ଖୁବ୍ କମ୍) ଶବ୍ଦ ଯୋଜନାର ଚାତୁରୀରେ ବିହ୍ୱଳ ହେଉଥିଲା । ଅଙ୍ଗ-ସୌଷ୍ଠବ ବର୍ଣ୍ଣନା ଓ ପ୍ରେମର ରୋମାଞ୍ଚକାରୀ ଆଦିରସକୁ ଉତ୍‌ଫୁଲ୍ଲ ହୋଇ ଗ୍ରହଣ କରୁଥିଲା । ଶବ୍ଦ-ବିନ୍ୟାସ ଓ ବାଚ୍ୟାର୍ଥ ହିଁ ଥିଲା ତା'ଲାଗି କବିତାର ମୂଳମନ୍ତ୍ର । ସଙ୍ଗୀତ ବିଭିନ୍ନ ଧ୍ୱନିରେ ସେ କବିର ସାର୍ଥକତା ଲକ୍ଷ୍ୟ କରିଥିଲା । ସେ କେବେ ପ୍ରଶ୍ନ କରିନି - ଲାବଣ୍ୟବତୀ ବା ଚନ୍ଦ୍ରଭାନୁର ପ୍ରେମ ଛଡ଼ା କ'ଣ ଅନ୍ୟ କିଛି ଚିନ୍ତା ନଥିଲା ? ରାଜନୀତି ବା ଭୋକ ?

ଗୁରୁକୁଳ ଆଶ୍ରମରୁ ମୁକ୍ତି ପାଇ ସେ ଯେତେବେଳେ ଗାଁ ଚାହାଳୀ ବା କାଁ ଭାଁ ବିଦ୍ୟାଳୟରେ ପଢ଼ି କୃଷି ଛଡ଼ା ଅନ୍ୟ ଉପାର୍ଜନ ପନ୍ଥା ଖୋଜିବାରେ ଲାଗିଲା, ସେତେବେଳେ ଗଙ୍ଗାଧର ମେହେରଙ୍କର ରାଜା ରାଣୀ କିମ୍ବା ଓଡ଼ିଆଣୀ ସୀତା ବା ପୌରାଣିକ ଉପାଖ୍ୟାନ ସବୁ ତାକୁ ଖୁସି ଦେଇଥିଲେ । ତା' ପରେ ପରେ ବିଭିନ୍ନ ପୁସ୍ତକ, ଗ୍ରନ୍ଥ ଓ ପତ୍ରିକା ଭିତରେ ସେ ନିଜ ଜୀବନର କେତୋଟି ରସମୟ ଘଟଣା ଦେଖି ଜୀବନକୁ ପୂରା ବୁଝିଛି ବୋଲି ଭାବି ନେଲା । ଜ୍ଞାନର ପ୍ରସାରଣ ଓ ବିଜ୍ଞାନର ଅନୁପ୍ରବେଶ ତାର ଛନ୍ଦବୋଧକୁ କ୍ଷୁଣ୍ଣ କରି ନ ଥିଲା । ସ୍ୱାଧୀନତୋତ୍ତର ଓଡ଼ିଶାର ଦ୍ରୁତ ଜାଗରଣ ଭିତରେ କିନ୍ତୁ ସେ ସାମାନ୍ୟ ତାଳଦୋଷ ଉପଲବ୍ଧି କଲା । ଏତେ କଲେଜ, ସ୍କୁଲ, ରାସ୍ତା ଘାଟ ଆଉ ଏତେ ଭାଷା, ଏତେ ଶବ୍ଦ, ଜଞ୍ଜାଳ ଓ ବଞ୍ଚିବା ଲାଗି ମୁଠାଏ ଦାନା ପାଇଁ ଏତେ ସଂଘର୍ଷ - ଏ ଥିଲା କଳ୍ପନାତୀତ । ପୁନଶ୍ଚ ଏ ପ୍ରତିଯୋଗିତା ଭିତରେ ଏତେ ଶବ୍ଦ ଏବଂ ଏତେ ଲୋକଙ୍କ ସଂସ୍ପର୍ଶରେ ଆସି ମଧ କେଜାଣି କାହିଁକି ସେ ସବୁଠାରୁ ଦୂରେଇଗଲା । ତା' ଆଗରେ ରହିଲା କେବଳ ଗୋଟିଏ ସତ୍ୟ- ବହୁତ ଭାଷା, ବହୁତ ଶବ୍ଦ, କିନ୍ତୁ ସବୁ ଅର୍ଥହୀନ ।

ଆଜିର ପାଠକର ସ୍ଥିତି ଯଦି ଅର୍ଥହୀନ, ସେଇ ପରିସ୍ଥିତିରୁ ଉଦ୍‌ଭବ ଲେଖକର କୃତି କ'ଣ ଅର୍ଥହୀନ ? ବୋଧହୁଏ ନୁହେଁ । ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ପ୍ରତ୍ୟେକ ନବ ଉନ୍ମେଷ ସମୟରେ ପାଠକ ଏହି ଅର୍ଥହୀନତାର ଅଭିଯୋଗ କରିଆସିଛି । ଏହାର କାରଣ ପ୍ରକୃତରେ 'ଅର୍ଥବହୁଳତା' । ସାଧାରଣ ବ୍ୟକ୍ତି ସଂଗ୍ରାମଶୀଳ ବାସ୍ତବତା ମଧ୍ୟରେ ନିଜର ସ୍ଥିତି ହରାଇ ଅର୍ଥହୀନତାକୁ ଚେତନସ୍ତରରେ ସ୍ୱୀକାର କରେ, କିନ୍ତୁ ସୃଜନଶୀଳ ବ୍ୟକ୍ତିତ୍ୱ ନିଜର ବଳିଷ୍ଠ ଚିନ୍ତାଦ୍ୱାରା ଅନାଗତ ବାସ୍ତବର ବିଶାଳତାକୁ ପ୍ରତିଷ୍ଠା କରିବାକୁ ଚେଷ୍ଟାକରେ । ଫଳରେ ସେ ହୁଏ ଦୁର୍ବୋଧ । ପାଠକର ଶୂନ୍ୟବୋଧତା ରୁଗ୍‌ଣ ଜୀବନର ପରିଚାୟକ, ଅର୍ଥହୀନତା ତା'ର ସ୍ଥିତିର ପ୍ରତିଫଳନ । ଲେଖକର ବାସ୍ତବ ଏକ ମହାଶୂନ୍ୟତା, ସାଧାରଣ ଶୂନ୍ୟବୋଧର ଏକ ବିସ୍ଫୋରଣ; କିନ୍ତୁ ଏହାର ଅର୍ଥ ନୁହେଁ ଯେ ଦୁର୍ବୋଧତା ଗୋଟିଏ ଭଲଗୁଣ । ଲେଖକର ବ୍ୟକ୍ତିତ୍ୱ ଯଦି ସୀମିତ ଓ ସେ ଯଦି ଆଗାମୀ ସଂହତିକୁ ରୂପ ଦେବାରେ ଅକ୍ଷମ, ତାର କୃତି ଅସ୍ପଷ୍ଟ ହେବ । ତାର ଭାଷା ଯଦି ସ୍ୱଗତଃ ହୁଏ କିମ୍ବା ତା'ର ସମ୍ମୁଖରେ ଯଦି ତାର ପରିସ୍ଥିତିର କୌଣସି ଚିତ୍ର ନଥାଏ, ତେବେ ସେ ନିଜ ସ୍ୱର ବ୍ୟତୀତ ଅନ୍ୟ କିଛି ଦେଇପାରିବ ନାହିଁ ।

ଆଉ ଗୋଟିଏ କଥା ମନେରଖିବା ଉଚିତ । ଭଲ-ମନ୍ଦ, ପ୍ରେମ-ବିରହ, ବଞ୍ଚିବା-ମରିବା କହିଲେ ଆମେ ପଚିଶ ବର୍ଷ ତଳେ ଯାହା ବୁଝୁଥିଲୁ, ଆଜି ସେ ଅବସ୍ଥା ନାହିଁ । ପ୍ରେମ ଆଜି ଭାବରାଜ୍ୟର ଉଦ୍‌ବେଳନ କିମ୍ବା ଜୀବନର ପାଥେୟ ନୁହେଁ । ବିରହେ ଗ୍ରୀଷ୍ମଋତୁ ବା ଶୀତଋତୁ ଆଜି ଲେଖିବା ସମ୍ଭବ ନୁହେଁ । କାରଣ ପ୍ରେମ ବିଛଣାଚାଦର ସ୍ତରରେ ପହଞ୍ଚିଲାଣି, ସେ କେତେବେଳେ ବଦଳେ ତାର ହିସାବ କେହି ରଖେନାହିଁ । ସେହିପରି ଜଣେ କିଏ ମରିଗଲା, ଆମ ଭିତରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରେନି । ରେଳ ଦୁର୍ଘଟଣା କିମ୍ବା ଅନ୍ୟ କୌଣସି ଦୁର୍ଘଟଣାରେ ଲୋକ ମରିଗଲେ ଆମେ ପଇସା ଏବଂ ସମୟ ନଷ୍ଟ କରି ଦଉଡ଼ିଯାଉ କିଛିଟା ଶିହରଣ ପାଇବା ଲାଗି । ଏ ପରିବର୍ତ୍ତିତ ମନସ୍ଥିତିରେ ଆଜିର ଲେଖକ ନିଶ୍ଚୟ କିଛି ଅଲଗା ଲେଖିବ ଏଥିରେ ସନ୍ଦେହ ନାହିଁ । ପୁଣି ସ୍ୱାଧୀନତା ପୂର୍ବର କାବ୍ୟ କବିତାରେ ( ଗଳ୍ପ ଉପନ୍ୟାସ କଥା କହୁ ନାହିଁ ) ସାମାଜିକ ସଙ୍ଗତି ପ୍ରାୟ ନାହିଁ । ପୁରାଣ, ରାଜବଂଶ ଓ ପ୍ରକୃତି ଆମ କାବ୍ୟଧାରାର ଆଧାର ଥିଲା । ଆଜିର କବି ଯେତେ ଏକାକୀ ବୋଧକଲେ ମଧ୍ୟ ସମାଜକୁ ପୂରାପୂରି ଭୁଲେ ନାହିଁ । ସମାଜର ମୂଳଦୁଆ ଭୁଶୁଡ଼ି ଯାଇଥିଲେ ମଧ୍ୟ ତାର ରକ୍ଷା ଲାଗି ସେ ଚେଷ୍ଟା କରେ । ତାର ଭାଷା ଧର୍ଷିତ ଅବଚେତନର ଭାଷା- ପାପବୋଧ, ହତାଶଭାବ, ଆତ୍ମଗ୍ଲାନି ବିଫଳ ସଂସ୍କାରକର ଭାଷା । ତାର ଦୃଷ୍ଟି ଦିଗ୍‌ବଳୟରେ ଆବଦ୍ଧ । ତେଣୁ ତା'ର ଦର୍ଶନ ମାଟି ଓ ଆକାଶ ଉଭୟକୁ ଧରିବାର ଚେଷ୍ଟାକରେ । ତା'ର ଆଙ୍ଗିକ ବିଭାଜିତ ମନତରଙ୍ଗର ସ୍ରୋତ । ପୂର୍ବ ନିର୍ଦ୍ଧାରିତ ଚଉପଦୀ, ମଙ୍ଗଳାଶ୍ରୀ, ଚୋଖୀ ବା ଅମିତ୍ରାକ୍ଷର ଛନ୍ଦରେ ସେ ସ୍ରୋତକୁ ବାନ୍ଧି ରଖିହେବ ନାହିଁ । ସେ ନିଜେହିଁ ନିଜର ଛନ୍ଦ ଓ ତାଳ ସୃଷ୍ଟି କରେ । ପାଠକ ତେଣୁ ବିମର୍ଷ ହେବା ସ୍ୱାଭାବିକ ।

ଆଧୁନିକ କବିତାର ସଂଜ୍ଞାବହୁଳତା ଭିତରୁ ସାଧାରଣତଃ ଚାରି ପ୍ରକାରର ଅର୍ଥସମ୍ଭାର ଲକ୍ଷ୍ୟ କରାଯାଇଥାଏ । ସେଗୁଡ଼ିକ ଯଥାକ୍ରମେ ଆମର ହୃଦୟ, ମନ, ବୁଦ୍ଧି ଏବଂ ବିବେକକୁ ସ୍ପର୍ଶ କରିଥାନ୍ତି । କୌଣସି ପାଠକ ଏକାଦିକ୍ରମେ ସବୁ ପ୍ରକାରର ଅର୍ଥ କୌଣସି କବିତାରୁ ପାଇ ନଥାଏ; କିନ୍ତୁ ବିଭିନ୍ନ ମାନସିକ ଏବଂ ପାରିପାର୍ଶ୍ୱିକ ଅବସ୍ଥା ନେଇ ସେ ଉପରୋକ୍ତ ମାଧ୍ୟମ ଦ୍ୱାରା ରସାସ୍ୱାଦନ କରେ । ତେଣୁ କବିତାର ଅର୍ଥସମ୍ଭାରକୁ ଚାରୋଟି ମୌଳିକ ଆବେଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲା :

(୧) ଛନ୍ଦ କିମ୍ବା ପଂକ୍ତିର ଆବେଗମୟତା

(୨) ମୁଡ୍ ବା ମନସ୍ଥିତିର ସୃଷ୍ଟି

(୩) ବୌଦ୍ଧିକ ଉତ୍ତେଜନା ବା ଆଲୋଡ଼ନ

(୪) ଜୀବନ ଦର୍ଶନ

କେତେଗୁଡ଼ିଏ କବିତା ଅଛି, ଯାହାକୁ ପାଠକ ବୁଝି ନ ପାରିଲେ ମଧ୍ୟ କେତେକ ରୂପକଥା କିମ୍ବା ପଂକ୍ତି ଦ୍ୱାରା ଆକୃଷ୍ଟ ହୁଏ । ତା'ଲାଗି କବିତାର ସାର୍ଥକତା କେବଳ ସେହି ପଂକ୍ତିର ବ୍ୟବହାର ଏବଂ ଅନ୍ୟାନ୍ୟ ବିଷୟରେ ଭାବିବାକୁ ତା'ର ଚିନ୍ତା ହୁଏତ ସୀମିତ ବା ତା'ର ଚେତନ ଅବରୁଦ୍ଧ । ଗୁରୁପ୍ରସାଦ ମହାନ୍ତିଙ୍କର -

"ଚମ୍ପାଫୁଲ ମହକରେ ବାଟ ଭୁଲି ସମୁଦ୍ରର ଢ଼େଉ "

(ସମୁଦ୍ର ସ୍ନାନ)

ବା

" ଖଡ଼ିରତ୍ନ କହିଥିଲେ ଜ୍ୟୋତିଷ ସେ ସପ୍ତ ପୁରୁଷର"

(କାଳପୁରୁଷ)

ବା

" ସେଦିନ ଆସିଲା ବର୍ଷା ଅସଂଯତ ବିଶୃଙ୍ଖଳ ଘନ
ଘୋର ବଉଦର ସ୍ତୁଅ " (କାଳପୁରୁଷ)

କିମ୍ବା ସଚ୍ଚି ରାଉତରାଙ୍କର-

" ଅବନା କବିତା ପରି ଧାନର କିଆରୀ
ହିଡ଼ର ମାତ୍ରା ବା ସବୁ ଯାଇଅଛି ଭାଙ୍ଗି
ତଥାପି ତ ବେଶ୍ ଲାଗେ ଆଜି ଏହି ମୁଦ୍ରାଦୋଷ

ସମତଳ ଶୁଆପର ଭୂମଣ୍ଡଳ ଆଦି ''

(କବିତା ୧୯୬୨)

ବା

'' ଅବିଧବା ରାତି ଭାଲେ ଚନ୍ଦ୍ରବିନ୍ଦୁ ଯେବେ ଝଳି ଉଠେ -''

(କବିତା ୧୯୬୨)

ବା

'' ଖୁରା ଯାର ତାମ୍ରତର କରଦ ରାଜ୍ୟର ଧୂଳି ଲାଗି,

କପାଳେ ଯା ସ୍ୱାଗତ ତିଳକ

ମିତ୍ରରାଜ୍ୟଙ୍କର ; ( ବାଂଧବୀର ଗଭା ପରି ଜଣାଯାଏ

କିଛିଟା ଯା ହାତ ପାଖ ପାଖ ''

( ସମ୍ରାଟ, କବିତା ୧୯୬୯)

କିମ୍ବା ରମାକାନ୍ତ ରଥଙ୍କର -

'' ହେ ମୋର ଲୋତକାପ୍ଳୁତ ସୂର୍ଯ୍ୟୋଦୟ......''

( କେତେ ଦିନର )

ବା

'' ଖାଲି ପିଞ୍ଜରାରେ ଘରେ ପଙ୍ଖା ପରି ପବନର ମୁହଁ

ଛୁଆ ପ୍ରଜାପତିମାନେ ମାଗୁଛନ୍ତି ଦିଅ ବାବା ଫୁଲ

କିଣି ଦିଅ''

(ବାଘଶିକାର, ଅନେକ କୋଠରୀ)

ବା

ଆଖିରେ ପ୍ରଚକ୍ଷୁ ଆଉ ହାତରେ ମୁରଲୀ

ଧରି ଡ଼ାକୁଚନ୍ତି ରାଧା ଆସ ଆସ ବୋଲି ।

( ସନ୍ଦିଗ୍ଧ ମୃଗୟା)

କିମ୍ବା ସୀତାକାନ୍ତ ମହାପାତ୍ରଙ୍କର :

" ତା ମୁହଁ ବିଡ଼ିର ପରି ସେ ଗୋଟାଏ ଧୂସର ଭୂମିକା "

( ରିଫ୍ୟୁଜି- ଦୀପ୍ତି ଓ ଦ୍ୟୁତି )

ବା

" ହେ ମୋର ହସନ୍ତ କାକଳୀର ଭୂଚିତ୍ର "

( ମହାନଗରୀର ସନ୍ଧ୍ୟା- ପୂଜାସଂଖ୍ୟା ଆସନ୍ତାକାଲି )

କିମ୍ବା ସୌଭାଗ୍ୟ କୁମାର ମିଶ୍ରଙ୍କର :

" କୃଷ୍ଣଚୂଡ଼ା ସତେ କେଡ଼େ ଫୁଲେଇଚାଏ ମ"

( କୃଷ୍ଣଚୂଡ଼ା- ଆମ୍ଭନେପଦୀ)

" ଶବରୀ ତୋର ତୀକ୍ଷ୍ଣ ସ୍ତନରେ କେଉଁ ମୃତ୍ୟୁକୁ
ଲୁଚାଇ ରଖିଚୁ ?"

( ଶବରୀ, ମଧ୍ୟପଦଲୋପୀ)

ଉଦ୍ଧୃତ ପଂକ୍ତିଗୁଡ଼ିକ ଛନ୍ଦ, ରୂପକଳ୍ପ ବା ଶବ୍ଦ ଯୋଜନାର ଚାତୁରୀ ଦ୍ୱାରା ପାଠକକୁ ଆକୃଷ୍ଟ କରନ୍ତି । ଏପରି ଧାଡ଼ିକୁ ବୁଝିବାର ଦରକାର ହୁଏ ନାହିଁ । ପାଠକର କାବ୍ୟିକ ଆନନ୍ଦ ଲାଗି ଏଗୁଡ଼ିକରେ ଯଥେଷ୍ଟ ଉପାଦାନ ଅଛି । ଅବଶ୍ୟ ପାଠକର ଭାବଗ୍ରହଣର ସ୍ତର ଉପରେ ପଂକ୍ତିର ଆବେଗ ନିର୍ଭରକରେ । କବିତାର ଅର୍ଥ ସମ୍ଭାର ଭିତରେ ଏହି ଆବେଗର ଯଥେଷ୍ଟ ଆବଶ୍ୟକତା ଅଛି । କାରଣ ପାଠକ ସମୁଦାୟ କବିତାର କୌଣସି 'ଅର୍ଥ' ନ ବୁଝିପାରିଲେ ବି ଯଦି କେତୋଟି ସୁନ୍ଦର ପଂକ୍ତିଦ୍ୱାରା ମୋହିତ ହେଲା, କବିତା କେତେକାଂଶରେ ସଫଳ ବୋଲି ଧରିନେବାକୁ ହେବ । ଆଜିର ଉଦାସୀନ ବା ବିରୁଦ୍ଧଧର୍ମୀ ପାଠକଠାରୁ ବେଶି ଆଶା କରିବା ଉଚିତ୍ ହେବନାହିଁ ।

ଦ୍ୱିତୀୟ ପ୍ରକାରର ଅର୍ଥ ଆଜିର କବିତାରେ ସର୍ବଦା ଗ୍ରହଣୀୟ ହେଲେ ମଧ, ଖୁବ୍ କ୍ୱଚିତ୍ ଦେଖାଯାଇଥାଏ । ଗୋଟିଏ ମୁଡ୍ ସୃଷ୍ଟି କରିବାକୁ ହେଲେ କବିତାର ଭାଷା, ଆଙ୍ଗିକ ଏବଂ ଭାବସତ୍ତାର ମଧୁର ସମନ୍ୱୟ ଦରକାର । ଚିତ୍ରକଳ୍ପ ଓ ଛନ୍ଦ, ଭାବର କେନ୍ଦ୍ରମୁଖୀ ନ ହେଲେ ଗୋଟିଏ ମନସ୍ଥିତି ଉପସ୍ଥାପିତ କରିବା ସମ୍ଭବ ନୁହେଁ । ଏ ପ୍ରକାର କବିତା ଖୁବ୍ କମ୍ ଅଛି ବୋଲି ମୋର ମନେହୁଏ । ଗୁରୁପ୍ରସାଦଙ୍କ " କପୋତ କପୋତୀ', "ସିତୁଆ" ଓ " ଶରତ ଋତୁରେ ଜହ୍ନ"; ସଚ୍ଚି ରାଉତରାଙ୍କ " ମତ୍ସ୍ୟଗନ୍ଧା", " ପ୍ରତିମା ନାୟକ" ଓ " ସମ୍ରାଟ"; ରମାକାନ୍ତ ରଥଙ୍କର "ଚନ୍ଦ୍ରମାର ଚୂଡ଼ି", " ମାଷ୍ଟ୍ରାଣୀ"," ବୁଢ଼ାଲୋକ" ଓ 'ଜହ୍ନରାତି'; ସୀତାକାନ୍ତ ମହାପାତ୍ରଙ୍କ " ଜରା ଶବର ସଂଗୀତ "ଓ " ମାଟି ମଣିଷ" ;

ସୌଭାଗ୍ୟ କୁମାର ମିଶ୍ରଙ୍କର '' ସମୁଦ୍ର ଓ ମୁଁ '' ଓ '' ଶବରୀ'' ପ୍ରଭୃତି ନିଶ୍ଚିତ ମନସ୍ଥିତି ଗଢ଼ି ତୋଳନ୍ତି । ଏ ମନସ୍ଥିତି ଖୁସି ବା ଦୁଃଖ, ବିରହ ବା ପ୍ରେମ, ନିର୍ବାକ୍ ଦାର୍ଶନିକତା ବା ଚକିତବୋଧର । ଏପରି କବିତାର ରୂପକଳ୍ପର ସଂହତି, ଛନ୍ଦୋବଦ୍ଧ ଆଙ୍ଗିକ ଏବଂ ଭାଷା ଓ ଚେତନାର ସଂଗଠିତ ଚିତ୍ର ଦେଖିବାକୁ ମିଳେ । ଏସବୁ କବିତା ପାଠକର ଦୁର୍ବୋଧ ନୁହେଁ, କାରଣ କବିତାର ସୃଜନଶୀଳ ପ୍ରାଣ ନିରୁକ୍ତ କାବ୍ୟାନୁଭୂତିର ପ୍ରେମମୟ ପ୍ରକାଶ କରିଛି ।

ତୃତୀୟ ପ୍ରକାରର ଅର୍ଥସମ୍ଭାର ଯେ କୌଣସି ପତ୍ରିକା ବା ସଂକଳନର କବିତା ଗୁଡ଼ିକରେ ମିଳେ । ଜୀବନଧର୍ମୀ କାବ୍ୟାନୁଭୂତିର ଯଦି ନାଟକୀୟ ପରିବେଷଣ ନହୋଇ ପାରେ, କବିତା ନିଶ୍ଚିତ ରୂପେ ବୌଦ୍ଧିକ ହେବ । ଏହି ଦୁର୍ବଳତାକୁ ଏଡ଼ାଇବା ଲାଗି ବହୁ ସମୟରେ ଉପକଥା ବା Myth ଆଶ୍ରୟ ନେଇଥାଏ, କିନ୍ତୁ ଉପକଥାର ପ୍ରୟୋଗ ପ୍ରତିସ୍ୱର ଓ ଅନ୍ୟସ୍ୱର ଦ୍ୱାରା ଲକ୍ଷ୍ୟଚ୍ୟୁତ ହୋଇ କେନ୍ଦ୍ରୀୟ ସଂହତିକୁ ନଷ୍ଟକରନ୍ତି । ସବୁ ସମୟକୁ ଏକ ସମୟ ଓ ଇତିହାସକୁ ବର୍ତ୍ତମାନ କରି, ପାପ, ଦୁଃଖ ଓ ଲଜ୍ଜାକୁ ( ପ୍ରେମ, ଦୟା ଓ ସହାନୁଭୂତିକୁ ବି ) ନୂତନ ଚେତନାଦ୍ୱାରା ପୁଷ୍ଟ କରି ଜୀବନର ନବ ମୂଲ୍ୟାୟନ କରିବା ନିଶ୍ଚୟ କଷ୍ଟ ଏବଂ ଏହା ଯୁଗାନ୍ତକାରୀ ପ୍ରତିଭାର ଅପେକ୍ଷା କରେ । ତେବେ ଏ ପ୍ରକାର ପ୍ରଚେଷ୍ଟା ଆମର କବିତାରେ ବିରଳ ନୁହେଁ । ଗୁରୁ ପ୍ରସାଦଙ୍କ ''କାଳପୁରୁଷ '' ଯଦି Eliot ଙ୍କର The Waste land କୁ ନ ପଢ଼ି ବା ଭୁଲିଯାଇ ପାଠ କରାଯାଏ, ସଫଳ କାବ୍ୟକୃତୀର ଉଦାହରଣ ଆମେ ପାଇବା ; କିନ୍ତୁ ରମାକାନ୍ତ ରଥଙ୍କର '' ବାଘଶିକାର'' ସୀତାକାନ୍ତ ମହାପାତ୍ରଙ୍କର ଅଷ୍ଟପଦୀର ଅଧିକାଂଶ କବିତା ବଳିଷ୍ଠ ପ୍ରଚେଷ୍ଟାର ବୌଦ୍ଧିକ ଆଲୋଡ଼ନ ବ୍ୟତୀତ ଅନ୍ୟ କିଛି ବୋଲି ମନେହୁଏ ନାହିଁ । ଅନ୍ୟ ଅନେକ ଛୋଟ କବିତାରେ ମଧ୍ୟ ଏ ପ୍ରକାର ଉତ୍ତେଜନା ଆମେ ଲକ୍ଷ୍ୟ କରୁ :

'' ଏବଂ କି ଆଶ୍ଚର୍ଯ୍ୟ ଦୃଶ୍ୟ ! ଦେଉଳର ଚୌଡ଼ା ଚଟାଣରେ
ଚାରିଆଡ଼େ ପଡ଼ିଅଛି ଖଣ୍ଡଖଣ୍ଡ ଭଙ୍ଗା କାଚ
ସତେ କି ଚନ୍ଦ୍ରରୁ
ଲକ୍ଷ ଲକ୍ଷ ନାଲି ନେଳୀ ଶିଶି କ'ଣ ସେଠାରେ
ପଡ଼ିଲେ !
ଦିଅଁ ନିଜେ ସିଂହାସନୁ ଓହ୍ଲାଇଲେ, ସାବଧାନ
ହୋଇ
ମୋ ପାଖକୁ ଆସି ମତେ ମାଗିଲେ ମୋ ଜୋତା
କାଳେ କାଚ ସେ ମାଡ଼ିବେ
ଏବଂ ଗଲେ ବାଥ୍‌ରୁମ୍ ଆଡ଼େ, ଯାଉଁ ଯାଉଁ
ହଠାତ୍ ଭେଟିଲେ

ଅସଂଖ୍ୟ ଚିଙ୍ଗୁଡ଼ିଙ୍କର ଶୋଭାଯାତ୍ରା ( ସେମାନେ ବି
ଜୋତା ପିନ୍ଧିଥିଲେ )
(ଅପରାହ୍ଣ - ରମାକାନ୍ତ ରଥ)
ବା

" ସବୁଦିନେ ତ ଏଇଆ :
ଗ୍ରୀଷ୍ମର ଶେଷ ସାବ୍‌ଜା ସ୍ୱପ୍ନ
ମୃତ୍ୟୁ ପାଇଁ ହୁଏ ଡ଼ହଳ ବିକଳ
ମୋ ଭିତରେ ପାଉଁଶ ହୋଇ ଯାଉଥିବା
ଜଳନ୍ତା ନିଆଁ ଖଣ୍ଡକୁ ଥଣ୍ଡା କରେ
ରଙ୍ଗମାନଙ୍କର ମିଥ୍ୟାବାଦିତା
ମତେ ବିଚଳିତ କରେନି
ମୁଁ ତାକୁ ଟାପରାରେ ଉଡ଼ାଏ ।"
(ଛାଇଙ୍କ କବର - ସୀତାକାନ୍ତ ମହାପାତ୍ର )

ଏ ପ୍ରକାର ଉଦାହରଣ ବାଛିବାର ବିଶେଷ ପ୍ରୟୋଜନ ନାହିଁ । ପ୍ରତ୍ୟେକ ପାଠକ ଏପରି କବିତାର ବୌଦ୍ଧିକତା ଦ୍ୱାରା 'ଆକ୍ରାନ୍ତ'; ତଥାପି ନିଛକ୍ ବୁଦ୍ଧିଦୀପ୍ତତା ମଧ ବେଳେ ବେଳେ ଉତ୍ତେଜନା ସୃଷ୍ଟିକରି ଅସ୍ୱଷ୍ଟ ଆଲୋଡ଼ନ ଆଣିଛି ।

"ଜୀବନ ଦର୍ଶନ" ଖୁବ୍ କମ ପାଠକଙ୍କ ପାଖରେ ପହଞ୍ଚି ପାରିଥାଏ । ଏହି 'ଅର୍ଥ'ର ଉପଭୋଗ ଲାଗି ପାଠକକୁ ପରିଶ୍ରମ କରିବାକୁ ପଡ଼େ ଏବଂ କବିର ବିଭିନ୍ନ କୃତୀର ଆଲୋଚନା କରିବାକୁ ହୁଏ । 'ଦର୍ଶନ' ଯେ ପ୍ରତ୍ୟେକ କବିତାରେ ରହିବ, ଏପରି କୌଣସି ନିୟମ ନାହିଁ କିମ୍ବା ଦର୍ଶନ ଯେ କବିତା ଲାଗି ନିହାତି ଜରୁରୀ, ଏ କଥା ମଧ କେହି କହିବେ ନାହିଁ ; କିନ୍ତୁ ପ୍ରତ୍ୟେକ ବିଶ୍ୱପ୍ରତିଭା କବିତା ମାଧମରେ ଏବଂ କାବ୍ୟିକ ସ୍ତରରେ କିଛି ନା କିଛି ସତ୍ୟ ମଣିଷ ସମାଜ ଆଗରେ ବାଢ଼ନ୍ତି । ପାଶ୍ଚାତ୍ୟ ସାହିତ୍ୟରେ ଦାନ୍ତେ, ସେକ୍‌ସପିଅର ଏବଂ ଗେଟେ ଓ ଆଧୁନିକ ସାହିତ୍ୟରେ ଏଲିଅଟଙ୍କ ବ୍ୟତୀତ ଅନ୍ୟାନ୍ୟ କବିମାନେ ସତ୍ୟର କେତୋଟି ଆଭାସ ଦେବାଛଡ଼ା କୌଣସି ବଳିଷ୍ଠ କାବ୍ୟିକ ସତ୍ୟର ପରିବେଷଣ କରି ନାହାନ୍ତି । କାବ୍ୟକଳା ସତ୍ୟାନୁଗାମୀ " କଳା ପାଇଁ କଳା" ଯୁକ୍ତି ଖୁବ୍ ଆମୋଦଦାୟକ ହେଲେ ମଧ୍ୟ ଦର୍ଶନ ( ଯାହା ଇଚ୍ଛାକୃତ ବକ୍ତୃତା କିମ୍ବା ଘୋଷଣା ନୁହେଁ ) ପ୍ରତିଭାର ଗୋଟିଏ ଦିଗନ୍ତ । ପ୍ରକୃତିର ରହସ୍ୟ ଓ ଜୀବନର ବିବିଧାନୁଭୂତିର ଲୀଳାମନ୍ଥନ ବା ଚିତ୍ରଣ ହିଁ କାବ୍ୟକଳା ଏବଂ ଏଥିରେ ଚିରନ୍ତନ ମୂଲ୍ୟବୋଧର ସତ୍ତା ରହିବା ଉଚିତ୍ । ଓଡ଼ିଆ କବିତାରେ ଆଧୁନିକ କବି ବାସ୍ତବକୁ ପ୍ରାଣହୀନ ଚିତ୍ର ଦେବା ପଛରେ ମୂଲ୍ୟବୋଧକୁ ପ୍ରତିଷ୍ଠା କରିବାର ଚେଷ୍ଟାରୁ ବିରତ

ନୁହେଁ । ଗୁରୁ ମହାନ୍ତିଙ୍କ ଠାରୁ ଆରମ୍ଭ କରି ସମସ୍ତ ଆଧୁନିକ କବି ଏ ଚେଷ୍ଟା ଚଳାଇଛନ୍ତି । ଦେହାତୀତ ଚିନ୍ତା ଏବଂ ମନୋତ୍ତର ପ୍ରଜ୍ଞା ସେମାନଙ୍କର ଲକ୍ଷ୍ୟ ହୋଇ ରହିଛି ।

ଉପରୋକ୍ତ ଚାରୋଟି ପର୍ଯ୍ୟାୟରେ ଅର୍ଥ ସମ୍ଭାରର ଆଲୋଚନାପରେ ପ୍ରଶ୍ନ ଉଠିପାରେ ଯେ କବିତାର କ'ଣ ଏପରି ଚାରି ପ୍ରକାର ଅର୍ଥ ଅଛି ? ନା । ଏ ଚାରି ପ୍ରକାର ଅର୍ଥର ଏକାନ୍ତ ମିଶ୍ରଣ ହିଁ କବିତାର ଅର୍ଥ । ପାଠକର *Hevels of perception* ଉପରେ କବିତାର ଆବେଗ ନିର୍ଭର କରେ । ଆଜି ଯଦି ପାଠକ କହେ ବା କହୁଛି ଯେ କବିତା ଦୁର୍ବୋଧ - ତା'ର କେବଳ ଦୁଇଟି *Interpetation* ହୋଇପାରେ ।

ପ୍ରଥମତଃ ପାଠକ ନିଜ ଜୀବନର ଅର୍ଥହୀନତାକୁ ବୁଝିବାରେ ଅକ୍ଷମ ଏବଂ ବାସ୍ତବବୋଧର କାବ୍ୟାନୁଭୂତି ତା'ର ଅଜ୍ଞାତ ।

ଦ୍ୱିତୀୟରେ କବି ତାର ବିସ୍ଫୋରିତ ଅର୍ଥବହୁଳତାକୁ ପାଠକ ନିକଟରେ ପହଞ୍ଚାଇବାରେ ବିଫଳ ପକ୍ଷ ସମର୍ଥନ କରି, ଉଭୟ ପକ୍ଷରୁ ବହୁତ ଯୁକ୍ତି କରାଯାଉଛି, ତେଣୁ ତାର ପୁନରୁଦ୍ଧାର ଅନାବଶ୍ୟକ । ଏ ପ୍ରସଙ୍ଗରେ କେବଳ ମନେ ପଡ଼େ ଏଲିଅଟ୍‌ଙ୍କର ଗୋଟିଏ ବାକ୍ୟ - *" Poetry communicates, and.great Poetry communicates much before it is understood "*

ଶ୍ରେଷ୍ଠ କବିତା ବୁଝିବା ପୂର୍ବରୁ ତାହା ସହାନୁଭୂତିଶୀଳ କମ୍ପନ ସୃଷ୍ଟି କରିଥାଏ ।

ପାଠାଗାରର ପତ୍ରିକା ଫିଙ୍ଗା ନିହାତି ଅସଙ୍ଗତ ବୋଲି ମନେହେଲା ନାହିଁ ।

ଅନ୍ତତଃ ଟିକିଏ ଆନନ୍ଦ କ'ଣ ପାଠକର ପ୍ରାପ୍ୟ ନୁହେଁ ?

□□□

# ଆଧୁନିକ ଓଡ଼ିଆ କବିତାରେ ଅସ୍ତିତ୍ୱବାଦର ଝଲକ



ଡକ୍ଟର ଇନ୍ଦୁ ମିଶ୍ର



*ଅଧ୍ୟାପିକା, ଓଡ଼ିଆ ବିଭାଗ,*

*ରେଭେନ୍ସା ( ଜୁନିଅର )କଲେଜ, କଟକ*

ଅସ୍ତିତ୍ୱବାଦ ଓଡ଼ିଆ କାବ୍ୟ-ଚେତନାର ପ୍ରାଥମିକ ଅନୁଭୂତି ନୁହେଁ, ବରଂ ଏକ ସୁବିସ୍ତୃତ କାବ୍ୟାନୁଭୂତିର ଅନ୍ୟତମ ପାର୍ଶ୍ୱ । ମୃତ୍ୟୁ, ଶୂନ୍ୟତା, ଉଦ୍‌ବେଗ, କାଳର ତ୍ରାସ ଇତ୍ୟାଦି ମଧ୍ୟରେ ପାଶ୍ଚାତ୍ୟ ଅସ୍ତିତ୍ୱବାଦର ଝଲକ ଉଙ୍କି ମାରିଛି ଆମ କବିତାରେ ବିଭିନ୍ନ ସମୟରେ । ବିଶେଷତଃ ପ୍ରୟୋଗବାଦ ପରିପ୍ରେକ୍ଷୀରେ ଯେଉଁ ପରୀକ୍ଷାପ୍ରବଣତା ଓଡ଼ିଆ କବିତାରେ ପରିଦୃଷ୍ଟ ହୋଇଥିଲା, ସେଥିରେ ଜୀବନର ନିରର୍ଥକତା ସହ ପ୍ରଦର୍ଶିତ ହୋଇଥିଲା, ମୂଲ୍ୟବୋଧର ବ୍ୟାପକ ଅବକ୍ଷୟ ଏବଂ ଆତ୍ମବିଶ୍ଳେଷଣ କ୍ରମଶଃ ଆତ୍ମଶ୍ଳେଷଣର ଭୂମିକା ଗ୍ରହଣ କରିଥିଲା । ଅସ୍ତିତ୍ୱକୁ ଉଖାରି ନିଖାରି ଦେଖିବାର ପ୍ରବଣତା ସୃଷ୍ଟିହେବା ସହ ଅସ୍ତିତ୍ୱବାଦୀ କବି, ଲେଖକ ଓ ଦାର୍ଶନିକମାନଙ୍କ ରଚନା ପ୍ରତି ସ୍ୱାଭାବିକ ଭାବେ ଆକୃଷ୍ଟ ହୋଇ ପଡ଼ିଥିଲେ ଆମର ସ୍ରଷ୍ଟାକୁଳ ଓ କବିତାରେ ବୌଦ୍ଧିକତା ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଥିଲା ।

ଦୁବୋଧତାର ଅଭିଯୋଗ ସତ୍ତ୍ୱେ ଏହି ପର୍ଯ୍ୟାୟରେ ବହୁ ଚମତ୍କାର କବିତା ସୃଷ୍ଟି ହୋଇଥିଲା । ଶବ୍ଦ ଓ ଛନ୍ଦରେ ଫୁଟି ଉଠିଥିଲା ନିପୁଣ ଲେଖନୀର ପରିପକ୍ୱ ନାନ୍ଦନିକତା । କବିତାର ବହୁବିଧ ଭାବବୃତ୍ତ ମଧ୍ୟରେ ମୃତ୍ୟୁବୋଧ, ଉଦ୍‌ବିଗ୍ନତା, ସ୍ଥିତିର ନିରର୍ଥକତା ପ୍ରକଟିତ ହୋଇଥିଲା । ସର୍ବତ୍ର ଶେଷହୀନ ସବିରୋଧର ଜ୍ୱାଳା ଓ ଯନ୍ତ୍ରଣା ମର୍ମଦାହୀ ନ ହେଲେ ମଧ୍ୟ

ନାନ୍ଦନିକତା ଦୃଷ୍ଟିରୁ ବିଦଗ୍ଧ ପାଠକ ମହଲରେ ଏହା ଚାଞ୍ଚଲ୍ୟ ଓ ଆଲୋଡ଼ନ ସୃଷ୍ଟି କରି ପାରିଥିଲା । ଏଭଳି ସ୍ୱବିରୋଧର ଏକ ଅଂଶରେ ଥିଲା ପ୍ରଭାବ ଓ ଅନ୍ୟ ଅଂଶରେ ଥିଲା ଅନୁଭୂତି । ଏକ ପକ୍ଷରେ ଥିଲା ପାଶ୍ଚାତ୍ୟ, ଅନ୍ୟ ପକ୍ଷରେ ଥିଲା ପ୍ରାଚ୍ୟ । ବହୁ ଅପାରମ୍ପରିକ ଚରିତ୍ର ଆବିର୍ଭୂତ ହୋଇଥିଲେ ଓଡ଼ିଆ କାବ୍ୟ ଜଗତରେ । ପାରଂପରିକ ମୂଲ୍ୟବୋଧ ଓ ନୈତିକତାର ବ୍ୟାପକ ବିପର୍ଯ୍ୟୟ ଘଟିବାକୁ ଆରମ୍ଭ କରିଥିଲା । ଛୋଟ କବିତାର ପରିସ୍ୱରରେ ସୂଚନାତ୍ମକ ରୀତିରେ ବ୍ୟଞ୍ଜିତ ହୋଇଥିବା ମୃତ୍ୟୁବୋଧ, ଉଦ୍‌ବିଗ୍ନତା ତଥା ଜୀବନର ନିରର୍ଥକତା ପରିବ୍ୟାପ୍ତ ଜନସଂପର୍କ ଅବଶ୍ୟ ରକ୍ଷାକରି ପାରିନଥିଲା । ଅସ୍ତିତ୍ୱବାଦୀ ଚରିତ୍ରରେ ଘାଣ୍ଟିଚକଟି ହେବା ପ୍ରବୃତ୍ତି ମଧ୍ୟ କବିତାର ରୀତିବଦ୍ଧ ପରିସରରେ ସଠିକ ଭାବେ ଅଭିବ୍ୟକ୍ତ ହେବା ସମ୍ଭବ ନ ଥିଲା । ଚରିତ୍ରଗୁଡିକ କବିତାରେ କେବେ ପୌରୁଷବିହୀନ ବିଦୂଷକ ଅଥବା ନୈତିକତା ବିବର୍ଜିତ ଲମ୍ପଟ ରୂପେ ଆତ୍ମପ୍ରକାଶ କରିଥିଲେ ।

ଆଧୁନିକ ଓଡ଼ିଆ କବିତାରେ ଏକ ପକ୍ଷରେ ପ୍ରକଟିତ ହୋଇଥିଲା ଅବକ୍ଷୟ ଓ ଅନ୍ୟ ପକ୍ଷରେ ଉତ୍ତରଣ ପ୍ରୟାସ ତଥା ଆଧ୍ୟାତ୍ମିକତା । ଉଦ୍‌ଭଟତା, କ୍ଲାନ୍ତି ଓ ନୈରାଶ୍ୟ କେତେକ କ୍ଷେତ୍ରରେ ତଦାତ୍ମ୍ୟ ରକ୍ଷା କରିଥିଲା ମେଟାଫିଜିକ୍‌ସ ସହ । ପରିବର୍ତ୍ତନର ସ୍ରୋତରେ ପ୍ରବାହିତ ହେଉଥିବା ଜୀବନଧାରାକୁ ବିଦ୍ରୂପ କରିବା ସହ ମଣିଷର ଅସହାୟତାରେ ବ୍ୟଥିତ ହୋଇଥିଲା କବିସତ୍ତା । (୧) ସ୍ଥିତିର ସନ୍ଧାନରେ ସେ ଭେଟିଥିଲା ଏକ ଅଜବ ଜଗତକୁ । ଅନ୍ତଃମନର ଅସ୍ଥିରତାକୁ ସ୍ୱୀକାର କରିଥିଲା । ଜୀବନର ପ୍ରତ୍ୟେକ କର୍ମାକର୍ମର ମୂଳ ହେତୁ ଲକ୍ଷ୍ୟହୀନତା ଓ ଏହି ଲକ୍ଷ୍ୟହୀନତା ଅଲଂଘ୍ୟ ବୋଲି ଅନୁଭବ (୨) କରିବା ପରେ ସମୟ, ମୃତ୍ୟୁ ଓ ଦେହାନ୍ତର ଚେତନା ମଧ୍ୟରେ ଏକ ଦେହାତୀତ ସତ୍ତାର ଅସ୍ତିତ୍ୱ ଅନୁଭବ କରିଥିଲା କବିସତ୍ତା । ଅବଶ୍ୟ ଏହି ଚେତନା ପ୍ରୟୋଗବାଦୀ ସାମଗ୍ରିକ ସ୍ୱର ନୁହେଁ । ଭିନ୍ନ ଭିନ୍ନ ପର୍ଯ୍ୟାୟରେ କବି-ମାନସରେ ପ୍ରତିକ୍ରିୟା ସୃଷ୍ଟି କରୁଥିବା ଭାବକଳ୍ପ ଓଡ଼ିଆ କାବ୍ୟ-ଜଗତକୁ ଅଭିଷିକ୍ତ କରିଥିଲା ବିଭିନ୍ନ ଭାବ-

---

(୧) 'ତେଣୁ ସେ ବ୍ୟଥିତ ଯାତ୍ରା । ମଣିଷର ଅସହାୟ ଶୋଭାଯାତ୍ରା ଦେଶେ ଦେଶେ ଯାଯାବର, ଆଶ୍ରୟ ବିହୀନ କେତେ ସୀମାରେଖା ଡେଇଁ, ଡେଇଁ କେତେ ଅକ୍ଷାଂଶଦ୍ରାଘିମା ତେଣୁ ସେ ଲୋତକାପ୍ଲୁତ ଆଶ୍ରାହୀନ ପିପୀଲିକା ସ୍ରୋତ .......... ।

(ସ୍ତନନ୍ଧୟର ଉପକଥା- ଅଷ୍ଟପଦୀ, ସୀତାକାନ୍ତ ମହାପାତ୍ର)

(୨) ''ଯେହେତୁ ପ୍ରତ୍ୟେକ ରାସ୍ତା/ଶେଷେ ସରେ ଲକ୍ଷ୍ୟହୀନତାରେ
ଯେହେତୁ ଆକାଶ ଶେଷ/ଯେଉଁଠାରେ ମୃତ୍ୟୁ ହାଇ ମାରେ
କାହିଁକି ବା ଏତେ ଚିନ୍ତା/କେଉଁ ରାସ୍ତା ତୁମେ ନେବ ବାଛି
ଅସଲ କଥା ହେଉଛି/ଭିତରର ଅଥୟତା ଲକ୍ଷ୍ୟହୀନ ଗତି ''।

(ତ୍ରିଶଙ୍କୁର ମଧ୍ୟସ୍ୱର୍ଗ, ତତ୍ରୈବ)

ଉତ୍ସରେ । 'ପାଣ୍ଡୁଲିପି' ରେ କବି ରାଉତରାୟ ଯେଉଁ ପରୀକ୍ଷା-ନିରୀକ୍ଷାର ଅୟମାରମ୍ଭ କରିଥିଲେ, ତାହା କ୍ରମଶଃ ଘନୀଭୂତ ହୋଇଥିଲା 'କବିତା ୧୯୭୨' ରେ । ଅସ୍ତିତ୍ୱବାଦୀ ଦର୍ଶନର ଗୁରୁତ୍ୱ ଆରୋପ କରାଯାଉଥିବା କେତେକ ତାତ୍ତ୍ୱିକ ବିଭାଗ ଏହି ସମୟରୁ ଓଡ଼ିଆ କବିତାରେ ଅନୁପ୍ରବେଶ କରିଥିଲା । ଯେଭଳି ରାଉତରାୟଙ୍କର ''ମୋ ଭିତରେ ମୁଇଁ ଖୋଜେଁ ମୁଇଁ ହଜେ ମୋର ଅନ୍ତରାଳେ'' ( ଅନ୍ତରାଳ-କବିତା ୧୯୭୨ ) ଅଥବା '' ମୁଁ ତାର ମୂର୍ଚ୍ଛନା ପାଏ ଉତ୍ସବର ପରେ । ସମସ୍ତ ଅସ୍ତିତ୍ୱଭେଦୀ 'ହଁ'ରେ 'ନାଁ'ରେ '' ( ନୃତ୍ୟ ଅନ୍ତେ) ଭଳି ପଙ୍‌କ୍ତିଗୁଡ଼ିକ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣ କରାଯାଇପାରେ । 'କବିତା ୧୯୭୨'ର 'ଅନ୍ତରାଳ' କବିତାରୁ ଉଦ୍ଧୃତ ହୋଇଥିବା ପ୍ରଥମ ପଙ୍‌କ୍ତିଟିରେ ଜାଁ ପଲ ସାର୍ତ୍ରେଙ୍କ 'Man can count no one but himself, he is a lone and abandoned in the earth in the midst of his own posibilities' ର ପ୍ରଭାବ ଅନୁଭୂତ ହୁଏ । ମାତ୍ର 'ଅନ୍ତରାଳ' କବିତାର ପୂର୍ଣ୍ଣାଙ୍ଗ ଅନୁଶୀଳନ କାଳରେ ଏହାକୁ ଅସ୍ତିତ୍ୱବାଦୀ କବିତା ରୂପେ ଗ୍ରହଣ କରିହୁଏ ନାହିଁ । ଭାରତୀୟ ମିଥ୍ ଓ ପାଶ୍ଚାତ୍ୟ ମନସ୍ତତ୍ତ୍ୱର ସମନ୍ୱୟରେ ଆଲୋଚ୍ୟ କବିତାର ଗଢ଼ଣ ବେଶ୍ ଜଟିଳ ଓ ରହସ୍ୟମୟ । ଏ କବିତାର ନାୟକ ଅନ୍ତଃସତ୍ତାରେ ଅର୍ଦ୍ଧେକ ନାରୀ ଓ ଅର୍ଦ୍ଧେକ ପୁରୁଷ । 'ଶ୍ରୀମଦ୍ ଭାଗବତ'ର ମନୁପୁତ୍ରୀ ଇଳା ମିଥର ପ୍ରଭାବ (୩) ରାଉତରାୟଙ୍କ 'ଅନ୍ତରାଳ' କବିତାର ପୂର୍ଣ୍ଣାଙ୍ଗ ଅନୁଶୀଳନରୁ ସ୍ପଷ୍ଟ ହୁଏ । ଅନ୍ତଃସତ୍ତାରେ ନିମଜ୍ଜମାନ ବହିଃସତ୍ତାର ଅନ୍ୱେଷା ମଧ୍ୟରେ ପରିସ୍ଫୁଟ ହୁଏ ନାୟକର ଦ୍ୱୈତସତ୍ତାର ସ୍ୱରୂପ । ଅସ୍ତିତ୍ୱବାଦର ବିରୋଧ ଭିତରେ ଗୋଟିଏ ଦିଗରେ ଥାଏ ବ୍ୟକ୍ତି, ଅନ୍ୟ ଦିଗରେ ଥାଏ ସମାଜ । ସାମାଜିକ ଜୀବନର ନଷ୍ଟ ମୂଲ୍ୟବୋଧ ସକଳ ବ୍ୟକ୍ତିକୁ ସମାଜ ପ୍ରତି ବିମୁଖ କରିବା ସଙ୍ଗେ ସଙ୍ଗେ କ୍ରମଶଃ ସ୍ୱବିରୋଧର ଯନ୍ତ୍ରଣାନିପୀଡ଼ିତ ପରିବେଶଟିଏ ସୃଷ୍ଟିକରି ସାରିଥାଏ । ଅସ୍ତିତ୍ୱ (Existence) ଓ ନିର୍ଯାସ (Essence)ର ଏଭଳି ସଂଘର୍ଷ ' ଅନ୍ତରାଳ' କବିତାରେ ପ୍ରାୟ ପରିଦୃଷ୍ଟ ହୁଏନାହିଁ । ଏଠାରେ ଅନ୍ତଃସତ୍ତା ଓ ବହିଃସତ୍ତାର ଦ୍ୱୈତଲୀଳା । ବିଶେଷତଃ ଛୋଟ କବିତାର ସଂକ୍ଷିପ୍ତ ପରସରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଭାବନାର ଗୁମ୍ଫନ ଏକ ଜଟିଳ ଭାବଗତ ପରିବେଶ ସୃଷ୍ଟିକରିଛି । ଅସ୍ତିତ୍ୱବାଦର ନିଃସଙ୍ଗ ଆତ୍ମିକସତ୍ତା, ସ୍ୱବିରୋଧ ଓ ବିକଳ୍ପବିହୀନ ରିକ୍ତତାର ସ୍ୱର ଏ କବିତାର ମୁଖ୍ୟସ୍ୱର ନୁହେଁ । କେତୋଟି ଶବ୍ଦ ବା କିଛି ଅଂଶକୁ ନେଇ ଯେଉଁ ଚେତନା ଆମ କବିତାରେ ପ୍ରକଟିତ ହୋଇଛି, ତାହାକୁ ନେଇ କୌଣସି ଓଡ଼ିଆ

---

(୩) ଶ୍ରାଦ୍ଧ ଦେବ ମନୁ ଚାହିଁଥିଲେ ପୁତ୍ର, ମାତ୍ର ପତ୍ନୀ ଶ୍ରଦ୍ଧା ଚାହିଁଥିଲେ କନ୍ୟା । କନ୍ୟା ଇଳା ଜନ୍ମ ନେବା ମାତ୍ରେ ପୁତ୍ରରେ ପରିଣତ ହେଲେ । ପରବର୍ତ୍ତୀ କାଳରେ ସୁକୁମାର ବନରେ ପ୍ରବେଶ କରିବା ଅପରାଧରେ ଏକମାସ ପୁରୁଷ ଓ ଏକ ମାସ ନାରୀରେ ପରିଣତ ହୋଇଥିଲେ ସେ ।
( ଓଡ଼ିଆ ଭାଗବତ, ନବମ ସ୍କନ୍ଧ, ପ୍ରଥମ ଅଧ୍ୟାୟ )

କବିତାକୁ ପୂର୍ଣ୍ଣାଙ୍ଗ ଅସ୍ତିତ୍ୱବାଦୀ ସୃଷ୍ଟି ରୂପେ ଅଭିହିତ କରିବା ନିରାପଦ ନୁହେଁ । ଅନୁରୂପ ଭାବେ '' ନୃତ୍ୟ ଅନ୍ତେ'' ( କବିତା ୧୯୬୨ ) କବିତାଟିକୁ ଗ୍ରହଣ କରାଯାଇପାରେ। 'ଅସ୍ତିତ୍ୱ' ଓ 'ନେତିତ୍ୱ' ଭଳି ଦୁଇଟି ଶବ୍ଦ ଭିତ୍ତିରେ କବିତାଟିକୁ ଅସ୍ତିତ୍ୱବାଦୀ ରଚନା ରୂପେ ଗ୍ରହଣ କରିବାର ଭ୍ରମ ଉପୁଜିପାରେ। 'ଅନ୍ତରାଳ' ଅପେକ୍ଷା ' ନୃତ୍ୟ ଅନ୍ତେ' କବିତାର ଭାବବୃତ୍ତି ଅଧିକ ଜଟିଳ । ' ନୃତ୍ୟ ଅନ୍ତେ' ର ନୃତ୍ୟ ମାନବକୃତ ନୁହେଁ, ତାହା ପ୍ରକୃତିର ବିଚିତ୍ର ବର୍ଣ୍ଣବିଭାର ଏକ ଭଙ୍ଗିମା ମାତ୍ର । ସୂର୍ଯ୍ୟକିରଣର ଆକାର ପବନର ତାଳେ ତାଳେ ଏକ ଅପୂର୍ବ ଭଙ୍ଗିମାରେ ନୃତ୍ୟରତ ହେବାବେଳେ ତା'ର କିରଣ କ୍ରମଶଃ ଅସ୍ତସୂର୍ଯ୍ୟର ଗତି ସହ ବିଲୟ ଭଜିଛି ।

କିନ୍ତୁ ସେ ଦୃଶ୍ୟ ଏକ ଅବ୍ୟକ୍ତ ସଂଗୀତର ମୂର୍ଚ୍ଛନା ପରି ଲୀଳାୟିତ ରହିଛି କବି-ଚେତନାରେ । ଅସ୍ତିତ୍ୱ ଓ ନେତିତ୍ୱ ନିର୍ବିଶେଷରେ ବଡ଼ ତୀକ୍ଷ୍ଣ ଓ ଶାଣିତ ସେହି ଲୀଳାୟିତ ମୂର୍ଚ୍ଛନାର ପ୍ରଭାବ, ଯେଉଁ ପ୍ରଭାବର ପରିଣତି ହେଉଛି କବିସତ୍ତାର ଆତ୍ମାବିଷ୍କାର '' ମୁଁ ତା'ର ମୂର୍ଚ୍ଛନା ପାଏ ଉତ୍ସବର ପରେ। ସମସ୍ତ ଅସ୍ତିତ୍ୱ ଭେଦି 'ହଁ' ରେ 'ନାଁ' ରେ। ମୁଁ ତା'ର ନେତିତ୍ୱ ଲଭେ ସବୁ ଚାହିଁବାରେ । ମୁଁ ତା'ର ନାଚର ସ୍ୱରେ ମିଳାଇ ଯିବାରେ ନିଜକୁ ପାଏ ।'' ( ନୃତ୍ୟଅନ୍ତେ-କବିତା ୧୯୬୨,ସଚ୍ଚି ରାଉତରାୟ ) ଅସ୍ତିତ୍ୱ ଓ ନେତିତ୍ୱ ଶବ୍ଦ ଦୁଇଟି ଏଠାରେ ଆପାତତଃ ଅସ୍ତିତ୍ୱବାଦର ଭ୍ରମ ସୃଷ୍ଟି କରନ୍ତି । ଓଡ଼ିଆ କବିତାରେ ଅସ୍ତିତ୍ୱବାଦର ପ୍ରଭାବ ଅନେକତ୍ର ଏହିଭଳି ଭ୍ରମଭିତ୍ତିକ ସଂସ୍କୃତ ଅଳଙ୍କାର ଶାସ୍ତ୍ରର ପରିଭାଷାରେ ଏକ ଏକ ବିରୋଧାଭାସ । ଅବଶ୍ୟ ଏ କଥା ସତ୍ୟ ଯେ ପାଶ୍ଚାତ୍ୟ ସାହିତ୍ୟିକ ଆନ୍ଦୋଳନ ସହ ଆମର କବିସତ୍ତା ପ୍ରାୟ ରାଧାନାଥ ଯୁଗରୁ ହିଁ ସଂଶ୍ଳିଷ୍ଟ । ଏଇ ସୂତ୍ରରେ ରାଧାନାଥଙ୍କ 'ପାର୍ବତୀ' କାବ୍ୟରେ ମଧ୍ୟ କେତେକ ଆଲୋଚକ ଅସ୍ତିତ୍ୱାବାଦର ପ୍ରଭାବ ଲକ୍ଷ୍ୟ କରିଥା'ନ୍ତି ଏବଂ ବାର୍ମି ଭିତରେ ଗଙ୍ଗେଶ୍ୱର ଦେବଙ୍କ କନ୍ୟା କୌଶଲ୍ୟା ଆପଣା ସନ୍ତାନର ମାଂସ ଭକ୍ଷଣ କରିବାର ବର୍ଣ୍ଣନା ଭିତରେ existence preceeds essence''ମନ୍ତବ୍ୟର ପ୍ରତିଫଳନକୁ ଉଦ୍ଧାର ମଧ୍ୟ କରିଥାନ୍ତି । ମାନବ ଜୀବନର ଘଟଣା-ଦୁର୍ଘଟଣାକୁ ସାଥିରେ ଧରି ଭିନ୍ନ ଭିନ୍ନ ଭାବଚେତନା କଳାକୃତିରେ ପ୍ରତିଫଳିତ ହୋଇଥାଏ ବିଭିନ୍ନ ସମୟରେ । ଜୀବନ ସହ ତତ୍ତ୍ୱ ମିଳିଯାଏ କେବେକେବେ ଆକସ୍ମିକ ଘଟଣାକ୍ରମରେ । ଦାର୍ଶନିକମାନଙ୍କର ତତ୍ତ୍ୱ ଅଥବା ଆଲୋଚକମାନଙ୍କର ବାଦବିସମ୍ବାଦର ଶିବିରରୁ ନିରାପଦ ଦୂରତ୍ୱରେ ଶିଳ୍ପୀ ସର୍ଜନା କରେ କଳାର ଅମର ଭାବରୂପ। ଲକ୍ଷ୍ୟ କରାଯାଏ ଯେ ପାଶ୍ଚାତ୍ୟ ପରମ୍ପରାରେ ଆନ୍ଦୋଳନ କ୍ରମରେ ବ୍ୟାପକ ସଚେତନତା ସୃଷ୍ଟି କରିଥିବା ବହୁ ଚେତନାର ଝଲକ ଉଙ୍କି ମାରିଥାଏ ଆମ ସାହିତ୍ୟରେ ସ୍ୱତଃସ୍ଫୂର୍ତ୍ତ ଭାବରେ । 'ସାରଳା ମହାଭାରତ'ରେ ବାସ୍ତବତାର ପ୍ରତିଫଳନ ଭଳି ରାଧାନାଥୀ ସାହିତ୍ୟରେ ଅସ୍ତିତ୍ୱବାଦର ପ୍ରତିଫଳନର ମୂଳ ସୂତ୍ର ଏହି କ୍ରମରେ । ମାନବ ଜୀବନ ପ୍ରତି ଶିଳ୍ପୀର ତଦାତ୍ମ୍ୟ ହ'ଏହାର ମର୍ମବାଣୀ ।

ତେବେ, ପ୍ରୟୋଗବାଦୀ ପରମ୍ପରା ବେଳକୁ ପାଶ୍ଚାତ୍ୟ ଧାରାରେ ଅସ୍ତିତ୍ୱବାଦ ଏକ ସଚେତନ ସାହିତ୍ୟିକ ଆନ୍ଦୋଳନ (movement)ତଥା ଶିଳ୍ପକର୍ମରେ ପରିଣତ ହୋଇ ସାରିଲାଣି । ଆମର କବିମାନେ ଏହି ଚେତନା ସହ ତାତ୍ତ୍ୱିକତା ଦୃଷ୍ଟିରୁ ପରିଚିତ ହୋଇଛନ୍ତି । ବାସ୍ତବବାଦ, ସ୍ୱଭାବବାଦ, ଅସ୍ତିତ୍ୱବାଦ ଆଦି ଚେତନା ଆମ କବିତାରେ ଏଭଳି ପ୍ରତିମ୍ବିବିତ ହୋଇଛି ଯେ ଗୋଟିକରୁ ଅନ୍ୟଟିକୁ ବିଚ୍ଛିନ୍ନ କରିବା ସମ୍ଭବ ନୁହେଁ । ତଥାପି କବିତା, କାବ୍ୟିକ ମୁଖବନ୍ଧ ତଥା ବିବିଧ ସାହିତ୍ୟିକ ପ୍ରବନ୍ଧ ଜରିଆରେ ଏ ସଂପର୍କରେ ନିଜସ୍ୱ ଚିନ୍ତାଧାରାକୁ କେତେକାଂଶରେ ବ୍ୟକ୍ତ କରିଛନ୍ତି କବିଗଣ । ‘ ହିଟଲାରର ଦୁଃସ୍ୱପ୍ନ’ କବିତାରେ ରାଉତରାୟଙ୍କ ମନ୍ତବ୍ୟକୁ ଏଠାରେ ପ୍ରସଙ୍ଗକ୍ରମେ ସ୍ମରଣ କରାଯାଉଛି - ‘‘ଅତି ମାନବର ଜୟ/ ଦାର୍ଶନିକ ନୀ’ଶେ’ର ଅମର ଶେଷ ମହାବାଣୀ/ ତା ମର୍ଯ୍ୟାଦା ରଖ ରଖ / ଭୁଲନାହିଁ ଜାରଜ ଜର୍ମାନୀ/ ଆପଣାର ଅଭିଜାତେ ଆଜି /ରାଇଖର ଦ୍ୱାରରକ୍ଷୀ/ ସଂଘବଦ୍ଧ କୋଟି କୋଟି ନାଜି ।

ଜର୍ମାନୀର ଅସ୍ତିତ୍ୱବାଦୀ ଦାର୍ଶନିକ ନିତ୍‌ଶେ ( Nietzsche)ଯେଉଁ ଅତି-ମାନବ (Super Man)ତତ୍ତ୍ୱ ଉପସ୍ଥାପନ କରିଥିଲେ, ତାହା ଫ୍ୟାସିଜିମ୍‌କୁ ସୁହାଉଥିଲା ବୋଲି କବି ରାଉତରାୟ ତାଙ୍କ ‘ ହିଟଲାରର ଦୁଃସ୍ୱପ୍ନ’ କବିତାର ପାଦଟୀକାରେ ସୂଚାଇଛନ୍ତି । ନିତ୍‌ଶେଙ୍କ ଅତିମାନବର ପରିକଳ୍ପନା କିନ୍ତୁ ଦେଖିବାକୁ ମିଳେ, ନା ନାଜିବାଦରେ ନା ଫ୍ୟାସିବାଦରେ । ନିତ୍‌ସେଙ୍କ ଅତି-ମାନବ ପରିକଳ୍ପନାର ମୂଳତତ୍ତ୍ୱ ଥିଲା, ମାନବ ଶାରୀରିକ ଦୃଷ୍ଟିରୁ ପଶୁ ଭଳି ବଳୀୟାନ ହେବ, କିନ୍ତୁ ସେ ହେବ ପ୍ରଖର ବୁଦ୍ଧିମାନ, ଆହାର, ନିଦ୍ରା ଓ ମୈଥୁନରେ ସୀମାବଦ୍ଧ ରହିବ ନାହିଁ ତା’ର ଜୀବନ । ଏଇ ଅତି-ମାନବ ତତ୍ତ୍ୱ ଭିତ୍ତିରେ ରାଉତରାୟଙ୍କ ‘ ପଶୁ’ ଓ ‘ରାକ୍ଷସ’ କବିତା ଦୁଇଟି ରଚିତ ବୋଲି କେତେକ ସମାଲୋଚକ ମନ୍ତବ୍ୟ ଦିଅନ୍ତି । ଆଉ କେହି କେହି ମନ୍ତବ୍ୟ ମଧ୍ୟ ଦେଇଛନ୍ତି ଯେ ଉପର ଲିଖିତ କବିତା ଦୁଇଟି ଅତି-ବାସ୍ତବବାଦୀ (Super Realistic) ପର୍ଯ୍ୟାୟଭୁକ୍ତ । ମାନବିକ ମୂଲ୍ୟବୋଧର ଅବକ୍ଷୟ ପରିପ୍ରେକ୍ଷୀରେ ‘ପଶୁ’ ଓ ‘ରାକ୍ଷସ’ କିଭଳି ତଥାକଥିତ ମାନବିକ ମୂଲ୍ୟବୋଧଠାରୁ ମହତ୍ତର, ତାହା ହିଁ କବିତା ଦୁଇଟିରେ ପ୍ରତିପାଦିତ । ପାରମ୍ପରିକ ସୁକୁମାର ଭାବ-ଚେତନାର ଅନ୍ତରାଳରେ ଛପି ରହିଥିବା ଛଳନା, ପ୍ରତାରଣା ଓ ପ୍ରବଞ୍ଚନା ବିରୋଧରେ ମଧ୍ୟ କବିଲେଖନୀ ଏଠାରେ ଉଗ୍ର ଓ ଉଦାତ୍ତ । ବଶେଷତଃ ତତ୍ତ୍ୱକୁ ଆଖି ଆଗରେ ରଖି କବିତା ଲେଖା ଯାଉ ନଥିବାରୁ, ସୃଜନଶୀଳ ରଚନାରେ ବହୁବିଧ ଭାବ ଓ ତାତ୍ତ୍ୱିକତାର ମିଶ୍ରିତ ପ୍ରଭାବ ପରିଲକ୍ଷିତ ହୁଏ । ରାଉତରାୟ ନିତ୍‌ସେଙ୍କ ଅତିମାନବ ତତ୍ତ୍ୱ ପ୍ରତି ସଚେତନ ଥିବାରୁ ‘ ପଶୁ’ ଓ ‘ ରାକ୍ଷସ’ର ମୂଳ ସୂତ୍ର ରୂପେ ତାହାକୁ ଅବଶ୍ୟ ସ୍ମରଣ କରାଯାଇପାରେ । ମାତ୍ର ଏଭଳି କ୍ଷେତ୍ରରେ ଅସ୍ତିତ୍ୱବାଦୀ କବିତା ରୂପେ ‘ପଶୁ’ ଓ ‘ ରାକ୍ଷସ’ କବିତା ଦୁଇଟିକୁ ପୂର୍ଣ୍ଣତଃ ଗ୍ରହଣ କରିହେବ ନାହିଁ , ବରଂ ମାନବିକତାର

ଅବମୂଲ୍ୟାୟନ ପରିପ୍ରେକ୍ଷୀରେ ପଶୁ ଓ ରାକ୍ଷସ କିଭଳି ମାନବଠାରୁ ମହତ୍ତର ସେ ସଂପର୍କରେ ଉଲ୍ଲିଖିତ କବିତା ଦୁଇଟି ଏକ ଏକ ବ୍ୟଙ୍ଗ-ଭାଷ୍ୟ ।

ଏଠାରେ ଚିନ୍ତାମଣି ବେହେରାଙ୍କ ' ଶୟତାନ ପାଇଁ ଗୋଟିଏ ସ୍ତୁତି' କବିତାଟିକୁ ପ୍ରସଙ୍ଗ କ୍ରମେ ଆଲୋଚନାର ପରିସରଭୁକ୍ତ କରାଯାଉଛି । ଓଡ଼ିଆ ସାହିତ୍ୟରେ ଏହି ପର୍ଯ୍ୟାୟର କବିତା ଆଲେଚନା କାଳରେ ଆଲୋଚକମାନେ ସାଧାରଣତଃ ନିତ୍‌ଶେଙ୍କୁ ସ୍ମରଣ କରିଥାନ୍ତି । ନିତ୍‌ଶେ ତାଙ୍କର 'ଜାରାଥୁଷ୍ଟ୍ରା' ରେ କହିଥିଲେ, ''ପ୍ରାଚୀନ ଈଶ୍ୱର ମୃତ୍ୟୁବରଣ କରିଛନ୍ତି । ଈଶ୍ୱର ମୃତ୍ୟୁବରଣ କରିଛନ୍ତି ମଣିଷ ପ୍ରତି ତାଙ୍କର କରୁଣା ହେତୁ । କିନ୍ତୁ ଏହି ପ୍ରାଚୀନ ଈଶ୍ୱରଙ୍କ ସ୍ଥାନରେ ନୂତନ ଈଶ୍ୱର ଜନ୍ମ ନେଇ ନାହାନ୍ତି ''। ନିତ୍‌ଶେ ଅନୁଭବ କରିଛନ୍ତି ଯେ ସମାଜକୁ ଓ ତା'ର ସୀମାତୀତ ଅବକ୍ଷୟକୁ ପ୍ରାଚୀନ ଈଶ୍ୱର ନିଜର ଅପାର କରୁଣାତ୍ମକ ଗୁଣରୁ ରକ୍ଷାକରିବା ଅସମ୍ଭବ ହୋଇପଡ଼ିବ । ଈଶ୍ୱର-ଅନ୍ୱେଷାରେ ସେ ଯେଭଳି ଯନ୍ତ୍ରଣାଦଗ୍ଧ ହୋଇଛନ୍ତି, ଈଶ୍ୱରହୀନତାରେ ସେହିଭଳି ହୋଇଛନ୍ତି ବେଦନାବିଦଗ୍ଧ । ଗୋଟିଏ ମୁହୂର୍ତ୍ତରେ ସେ ହୁଏତ ଅନୁଭବ କରିଛନ୍ତି ଯେ ଈଶ୍ୱର-ସନ୍ଧାନରେ ବିବ୍ରତ ନ ହୋଇ ମଣିଷ ଏକ ଉଦ୍ଦାମ ଶକ୍ତିରେ ଶକ୍ତିମାନ ହେଉ । ଜଣେ ସାଧାରଣ ଓ ସ୍ୱାଭାବିକ ମଣିଷ ପକ୍ଷରେ ସେଭଳି ଶକ୍ତିମାନ୍ ହେବା ସମ୍ଭବ ନୁହେଁ । ତେଣୁ ପାରଂପରିକ ଦୃଷ୍ଟିରେ ସେ ଅପଶକ୍ତି (*evil*) କୁ ଅତିମାନବତ୍ୱର ପ୍ରଥମ ସୋପାନ ରୂପେ ଗ୍ରହଣ କରିଥିଲେ । (୪) କଣ୍ଟାକୁ କଣ୍ଟାରେ କାଢ଼ିବା ଭଳି ସମ୍ଭବତଃ ଏହି ଅପଶକ୍ତି ଜରିଆରେ ହିଁ ସାମାଜିକ ଜୀବନର ସକଳ ବିବର୍ଣ୍ଣ ଅସ୍ତିତ୍ୱକୁ ସେ ଅପସାରିତ କରିବା ପାଇଁ କାମନା କରିଥିଲେ । ଅସ୍ତିତ୍ୱବାଦ ଏହି ଦୃଷ୍ଟିରୁ ଦାର୍ଶନିକତା ପରିପ୍ରେକ୍ଷୀରେ ମଧ୍ୟ ସର୍ବଦା ଓ ସର୍ବଥା ସମାଜବିରୋଧୀ ନୁହେଁ, ବରଂ ସମାଜ-ଜୀବନର ସ୍ୱାଚ୍ଛନ୍ଦ୍ୟ ଲିପ୍‌ସା ତଥା ପାରମ୍ପରିକତାର ଗଡ୍‌ଡ଼ାଳିକା ପ୍ରବାହ ବିରୋଧରେ ଏହା ଏକ ପ୍ରତିକ୍ରିୟା । ମାର୍କସବାଦ ଭଳି ଏ ପ୍ରତିକ୍ରିୟା ଉଗ୍ର ନ ହୋଇ ଅନେକତ୍ର ଅନ୍ତର୍ମୁଖୀ ଓ ପରିଦୃଶ୍ୟମାନ ବାସ୍ତବତାଠାରୁ ଭିନ୍ନ ନବ୍ୟ-ବାସ୍ତବବାଦର ଅନୁବର୍ତ୍ତୀ । ଶୟତାନ ସେଥିପାଇଁ ନୂତନ ପୃଥିବୀର ଜନ୍ମଦାତା, ନବୀନ ସୂର୍ଯ୍ୟର ଉଦ୍‌ଗାତା । ଅନ୍ତତଃ ଚିନ୍ତାମଣି ବେହେରାଙ୍କ 'ଶୟତାନ ପାଇଁ ଗୋଟିଏ ସ୍ତୁତି' କବିତାର ମର୍ମବାଣୀ ଏହିଭଳି ଏକ ଭାବନା ଉପରେ ଆଧାରିତ- ''ଯେଉଁ ଶୟତାନ/ ମୋର ସକଳ ସ୍ନାୟୁକୁ ଏକତ୍ରିତ କରି / ପ୍ରସ୍ତୁତ କରେ ତା'ର ବୀଣାର ତନ୍ତ୍ରୀ/ 'ମୋତେ' ନୀରବ, କରୁଣ ନିର୍ଜୀବ କରି । ଖିଆଲି ଭାବରେ ତୋଳେ ତା'ର ବୀଣାର ଝଙ୍କାର/ ଯେଉଁ ଝଙ୍କାରରୁ ମୁଁ ଜନ୍ମ

---

(୪) "Man must grow better and more evil, thus do I teach. The most evil is necessary for the superman's best."
(Beyond Good and Evil- Friedrich Nietzsche)

ନିଏ/ ହିରଣ୍ମୟ ସୂର୍ଯ୍ୟ ଭଳି/ ଗଭୀର ତାମସୀ ରାତ୍ରିର ଗର୍ଭରୁ ।''

'ଶୟତାନ' ସ୍ୱୟଂ ଏଠାରେ ଅତିମାନବ ନହୋଇପାରେ , ମାତ୍ର ଏକ ଅତିମାନବ ବା 'ସୁପର ମ୍ୟାନ'ର ଜନ୍ମ ପାଇଁ ସେ ପ୍ରକାରାନ୍ତରେ ଈଶ୍ୱରଙ୍କ ଭୂମିକାରେ ହିଁ ଅବତୀର୍ଣ୍ଣ । ଆଧୁନିକ ଓଡ଼ିଆ କବିତାରେ ଈଶ୍ୱର ବିଶ୍ୱାସ କ୍ରମେ ପ୍ରୟୋଗବାଦୀ କବିତାରେ କ୍ଷୁଣ୍ଣ ହୋଇଛି । ବହୁ କବିତାରେ ପରିଦୃଷ୍ଟ ହୋଇଛି ଈଶ୍ୱରଙ୍କ ପ୍ରତି ଅବିଶ୍ୱାସବୋଧ, ପୁଣି ପ୍ରାଚୀନ ମୂଲ୍ୟବୋଧ ପ୍ରତି ଏକ ଶ୍ଳେଷ-ଶାଣିତ ଚାହାଣୀ । ଏହି ଅବିଶ୍ୱାସବୋଧ ତଥା ଶ୍ଳେଷ-ଶାଣିତ ଚାହାଣୀ ବିଦେଶାଗତ ବୋଲି ବହୁ ସମୀକ୍ଷକ ତଥା କବି-ସମୀକ୍ଷକଙ୍କର ମତ । କବି ରମାକାନ୍ତ ରଥଙ୍କର ଏକ ମନ୍ତବ୍ୟ ଏଠାରେ ପ୍ରସଙ୍ଗ କ୍ରମେ ଉଦ୍ଧାର କରୁଛି -''××× ଭଗବାନଙ୍କର ଦେହାନ୍ତ ହୋଇଗଲା- ନିତ୍‌ଶେଙ୍କର ଏହି ଉକ୍ତି ଉପରୋକ୍ତ ପ୍ରସ୍ତୁତିର ଅବଶ୍ୟମ୍ଭାବିତା ଦେଖାଇବାକୁ ଚେଷ୍ଟା କରେ ×× ଆଧୁନିକ ସାହିତ୍ୟିକ ଆଭିମୁଖ୍ୟରେ ବ୍ୟକ୍ତିତ୍ୱର ପ୍ରାଧାନ୍ୟ ଯୋଗୁଁ ତା'ର ଅନୁଶୀଳନ ସବୁ ଦେଶର ସାହିତ୍ୟରେ କରାଗଲା । ତା'ର ପରିଣାମ ଯଦିଓ ସର୍ବଦା ସୁପାଠ୍ୟ ସାହିତ୍ୟ ନୁହେଁ, ତାକୁ ମନେରଖିଲେ ଅନ୍ତତଃ କେତେକ କ୍ଷେତ୍ରରେ ଲେଖକର ଉଦ୍ଦେଶ୍ୟ ବୁଝିବା ସହଜସାଧ ହେବ ।'' (ସାଂପ୍ରତିକ କବିତାରେ ଆହ୍ଲାଦ-ରମାକାନ୍ତ ରଥ, ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ-ସଂ ପରୀକ୍ଷିତ ନନ୍ଦ, ପୃ.୩୭୩ )

କବି ଶ୍ରୀ ରଥଙ୍କ ବକ୍ତବ୍ୟରୁ ତିନୋଟି କଥା ପ୍ରତିପାଦିତ ହୁଏ । ଯଥା-ଈଶ୍ୱରଙ୍କ ସମ୍ପର୍କରେ ସଂଶୟ ଏକ ଅସ୍ତିତ୍ୱବାଦୀ ଚିନ୍ତାଧାରା, ଯାହା ନିତ୍‌ଶେଙ୍କ ଦ୍ୱାରା ତୀକ୍ଷ୍ଣ ଓ ଶାଣିତ ହୋଇଛି । ଦ୍ୱିତୀୟତଃ ବିଶ୍ୱବ୍ୟାପୀ ସାହିତ୍ୟରେ ଆଧୁନିକତା ପର୍ଯ୍ୟାୟରେ ଶିଳ୍ପୀ ଓ କଳାକାରଙ୍କ ସୃଷ୍ଟି ସମ୍ବନ୍ଧରେ କ୍ରମଶଃ ବ୍ୟକ୍ତିବାଦୀ ଚିନ୍ତାଧାରାର ପ୍ରାଧାନ୍ୟ ପରିଲକ୍ଷିତ ହୋଇଛି । ଶେଷତଃ ବ୍ୟକ୍ତିବାଦୀ କଳାସୃଷ୍ଟି ସର୍ବଦା ସୁପାଠ୍ୟ ନୁହେଁ ।

ଈଶ୍ୱରଙ୍କ ସମ୍ପର୍କରେ ସଂଶୟ ଆଧୁନିକ ଜୀବନଧାରାର ଏକ ଅଙ୍ଗ । ଯନ୍ତ୍ରସଭ୍ୟତାର ବିକାଶ କ୍ରମରେ ଘଟିଥିବା ସାମାଜିକ ବିବର୍ତ୍ତନର ଏହା ଏକ ପ୍ରକାର ଗୋଷ୍ଠୀ କୈନ୍ଦ୍ରିକ ଜୀବନର ଅବକ୍ଷୟ ସହ ବିଚ୍ଛିନ୍ନତା, ନିର୍ଜନତା, ଉଦ୍‌ବିଗ୍ନତା, ଭୟ ଓ ହତାଶା ଆଦିରୁ ଧୀରେ ଧୀରେ ଜନ୍ମ ନେଇଛି ଏ ସଂଶୟବୋଧ । ଈଶ୍ୱରଙ୍କ ପ୍ରତି ସଂଶୟରୁ ଜନ୍ମ ନେଇଚି ଅତିମାନବତ୍ୱର ପରିକଳ୍ପନା । ଏକଦା ଲୁକାସ୍ ଏହି କାରଣରୁ ନିତ୍‌ଶେଙ୍କୁ ନାଜିମାନଙ୍କ ଦାର୍ଶନିକ ରୂପେ ଗ୍ରହଣ କରି କହିଥିଲେ ''ଅସ୍ତିତ୍ୱବାଦ ହିଁ ମାର୍କସ୍‌ବାଦ ବିରୋଧରେ ଶେଷ ବୁର୍ଜୁଆ ବିପ୍ଲବ । ମାର୍କସ୍‌ବାଦ ଓ ଅସ୍ତିତ୍ୱବାଦ ନିଜ ନିଜ ପରିପ୍ରେକ୍ଷୀରେ ଭିନ୍ନ ଭିନ୍ନ ଭାବସତ୍ତାରୁ ଉଦ୍‌ଭୂତ । ମାର୍କସ୍‌ବାଦର ସଂଘର୍ଷ ବହିର୍ମୁଖୀ, କିନ୍ତୁ ଅସ୍ତିତ୍ୱବାଦର ସଂଘର୍ଷର ଫଳ ସ୍ୱରୂପ ଉଦ୍‌ଭୂତ ହୋଇଛି ଈଶ୍ୱରଙ୍କ

ପ୍ରତି ସଂଶୟ ।'' ଓଡ଼ିଆ ସାହିତ୍ୟରେ ଏ ସଂଶୟର ଝଲକ କେତେକ କବିତାରେ ପରିଲକ୍ଷିତ ହୁଏ । ପ୍ରାଚୀନ ମୂଲ୍ୟବୋଧ ସକଳର କ୍ରମବିଲୟ ସହ ଈଶ୍ୱରଙ୍କ ପ୍ରତି ଥିବା ଅଖଣ୍ଡ ବିଶ୍ୱାସ କିଭଳି ହ୍ରାସ ପାଇଛି, ତାହା ପରିଦୃଷ୍ଟ ହୁଏ ରମାକାନ୍ତ ରଥଙ୍କ 'ରାଣୀ', 'ଅନନ୍ତ ଶୟନ','ହନୁମାନ','ରାଜାଙ୍କ ରୋମାନ୍ସ', ସୌଭାଗ୍ୟ ମିଶ୍ରଙ୍କ 'ଭାଗବତ', 'ହୃଦୟେଶ୍ୱରୀ', ରାଜେନ୍ଦ୍ର କିଶୋର ପଣ୍ଡାଙ୍କ 'ଛାଇ', ଦୀପକ ମିଶ୍ରଙ୍କ 'ମୃତ୍ୟୁ ଯଦି ହୁଏ ଏକ ନିଦ', କମଳାକାନ୍ତ ଲେଙ୍କାଙ୍କ 'ଗାର୍ହସ୍ଥ୍ୟ' ଆଦି କବିତାରେ । ବସ୍ତୁତଃ ଯୁଗଯୁଗର ପ୍ରାଚୀନ ମୂଲ୍ୟବୋଧ ପ୍ରତି କବିଦୃଷ୍ଟି ଏଠାରେ ବେଶ୍ ଶ୍ଳେଷାତ୍ମକ ।

ପ୍ରାଚୀନ ମୂଲ୍ୟବୋଧ ପ୍ରତି ଆଧୁନିକ ମଣିଷର ଅବିଶ୍ୱାସ ଓ ସଂଶୟକୁ 'ଅନନ୍ତଶୟନ','ହନୁମାନ','ରାଜାଙ୍କ ରୋମାନ୍ସ' ଭଳି କବିତାରେ ପ୍ରାୟ ଶ୍ଳେଷାତ୍ମକ ରୀତିରେ ଉପସ୍ଥାପନା କରାଯାଇଛି । ରମାକାନ୍ତଙ୍କ 'ହନୁମାନ' କବିତାରେ 'ହନୁମାନ'ଙ୍କ ବର୍ଣ୍ଣନା ଏହିଭଳି-''ମୁଁ ଉଡୁଛି ନେଇ ମୋର ଉଲଗ୍ନ ଓ ପୃଥୁଳ ଶରୀର/ ବହୁ ତଳେ ଦିଶୁଅଛି ସହରର ସମୁଦ୍ରରେ ବଡ଼ ବଡ଼ କୋଠାଙ୍କ ଲହଡ଼ି '' । ଉଲଗ୍ନ ତଥା ପୃଥୁଳ ଶରୀରବିଶିଷ୍ଟ ହନୁମାନ ରାମଚନ୍ଦ୍ରଙ୍କୁ କହୁଛନ୍ତି- '' ନିଜର ନଗ୍ନତା ଦେଖି ଲୋକେ ଆଉ ହସୁନାହାନ୍ତି/ ଶୂନଶାନ୍ ରାଜପଥ ସଫା ହୁଏ / ଉଦ୍‌ଭ୍ରାନ୍ତ ଖଣ୍ଡିଆ ଭୂତରେ / ମେଘମାନେ ଭାସୁଛନ୍ତି ମୃତ୍ୟୁପରି / ଯୁଦ୍ଧର ଗର୍ଜନ ନିସ୍ତବ୍ଧ / ଅସଂଖ୍ୟ ବେଶ୍ୟାଙ୍କ କାଶ ଶବ୍ଦ ଦ୍ୱାରା କାହାକୁ ମାରିବା ପ୍ରଭୁ / କାହାକୁ ବା ଉଦ୍ଧାର କରିବା/ ଉତ୍ତର ବରଫ ହୁଏ / ସେତୁବନ୍ଧ ହୁଏ ଅନ୍ତର୍ଦ୍ଧାନ ।''

ଜଟିଳ ପାର୍ଥିବ ସମସ୍ୟାର ସମାଧାନ ଈଶ୍ୱରଙ୍କ ପକ୍ଷେ ଆଉ ସମ୍ଭବ ନୁହେଁ । ରମାକାନ୍ତଙ୍କ କବିତାରେ ମିଥ୍‌ର ଗୁମ୍ଫନ ତଥା କବିତାର ମିଥିକାଲ ଗଢ଼ଣ ତାଙ୍କର ସମସାମୟିକ କବିମାନଙ୍କର ମିଥିକାଲ ଗଢଣଠାରୁ ଅପେକ୍ଷାକୃତ ଜଟିଳ । ପାରଂପରିକ ମିଥ୍ ପରିବର୍ତ୍ତିତ ପରିପ୍ରେକ୍ଷୀରେ ତାଙ୍କ କବିତାରେ ପ୍ରାୟ ରୂପାନ୍ତରିତ ହୋଇଯାଇଛି । ଲୋକୋତ୍ତର ଚରିତ୍ର ଓ ପରିବେଶ ମଧ୍ୟ ତଦନୁଯାୟୀ ପରିବର୍ତ୍ତିତ ହୋଇଛି । ତାଙ୍କର 'ଅନନ୍ତ ଶୟନ' କବିତାର 'ସର୍ପଶଯ୍ୟା' ପ୍ରାଚୀନ ଅନନ୍ତ ଶୟନର ଏକ ବିରୋଧାଭାସ । ସମଗ୍ର କବିତାରେ ବିଷ୍ଣୁଙ୍କର ପାରମାର୍ଥିକ ସତ୍ତାର କୌଣସି ସଂକେତ ପ୍ରାୟ ନାହିଁ। ଯନ୍ତ୍ରଣା, ଅବକ୍ଷୟ ଓ ଅସହାୟତ୍ୱ ମଧ୍ୟରେ ପୀଡ଼ିତ ଆଜିର ବ୍ୟକ୍ତିସତ୍ତା । ତହିଁରୁ ଉତ୍ତରଣ ପ୍ରୟାସ ପାଇଁ ସେ ପ୍ରାୟ ଅସମର୍ଥ । କାରଣ, ଅସ୍ତିତ୍ୱର ସ୍ଥିରତା ପରିବର୍ତ୍ତେ ଏକ ଶେଷହୀନ ଅସ୍ଥିରତାରେ ସେ ଆନ୍ଦୋଳିତ (୫) । ଯୁଗ

(୫) ସେମାନେ ତ ନିଜେ ଭାସି ଯାଉଛନ୍ତି ନିଜର ପ୍ରଖର ସୁଅରେ ଅଜଣା ଏବଂ ଅନ୍ଧକାରାଚ୍ଛନ୍ନ ମୁହାଣକୁ ସମସ୍ତେ ଅସ୍ଥିର ଆମେ ପ୍ରତିମିନିଟରେ ଗୋଟିଏ ସ୍ଥିତିରୁ ଯାଉ ପୃଥକ ସ୍ଥିତିକୁ ।

(ଶିକ୍ଷାଚାର- ସପ୍ତମ ଋତୁ )

ଯୁଗର ବିଶ୍ୱାସଲାଳିତ ଈଶ୍ୱର ତା'କୁ ପରିତ୍ରାଣ ଦେବା ପାଇଁ ଅସମର୍ଥ । ଏକ ଅସାମର୍ଥ୍ୟବୋଧର 'ଅନନ୍ତ ଶୟନ' ରେ ଶାୟିତ ଆଜିର ମଣିଷ ।

ଆଧୁନିକ ଓଡ଼ିଆ କବିତାରେ ଈଶ୍ୱରଙ୍କ ପ୍ରତି ସଂଶୟ ହେତୁ ବ୍ୟକ୍ତିସତ୍ତାର ଅସାମର୍ଥ୍ୟବୋଧ ଅଧିକ ଜଟିଳ ହୋଇଛି । ପବନରେ ଉଡ଼ିଯାଇଛି " ଶସ୍ତ୍ରରେ ଅଚ୍ଛେଦ୍ୟ / ଅଗ୍ନିରେ ଅଦାହ୍ୟ ଆତ୍ମା " ( ରାଜାଙ୍କ ରୋମାନ୍ସ-ସନ୍ଦିଗ୍ଧ ମୃଗୟା) ଓଡ଼ିଆ କବିତାରେ ଏଇ ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସ୍ଥିତି ପ୍ରତି କଟାକ୍ଷ ଓ ଅବିଶ୍ୱାସ ପ୍ରକାଶ ପାଇଛି । ଈଶ୍ୱରଙ୍କ ସ୍ଥିତି ପ୍ରତି ଏ ଅବିଶ୍ୱାସ ରାଜେନ୍ଦ୍ର କିଶୋର ପଣ୍ଡାଙ୍କ 'ଛାଇ' କବିତାର ଏକ ଅଂଶରେ ସୂଚାଇ ଦିଆଯାଇପାରେ- "×× ଅଭିଶାପକୁ ନ ଡ଼ରି ପଶିଗଲି କୋଠରୀ ଭିତରକୁ / ଆଉ ଦେଖିଲି / କ'ଣ ଦେଖିଲି / ଈଶ୍ୱର ଫିଶ୍ୱର ନାହିଁ / କେବଳ ନିଛକ ଛାଇଟିଏ / ବସିଛି ବିଶୁଦ୍ଧ ଛାଇ " ( ଗୌଣ ଦେବତା ) । ସୌଭାଗ୍ୟକୁମାର ମିଶ୍ରଙ୍କ କବିତାରେ ସେହିଭଳି ଈଶ୍ୱରଙ୍କ ମହାମହିମତ୍ୱ ପ୍ରତି ଏକ ଶାଣିତ କଟାକ୍ଷ ପ୍ରଦର୍ଶିତ - " ଈଶ୍ୱରଙ୍କୁ ଦେଖୁନ । ପୂରାପୂରି ସ୍କୃ ଢ଼ିଲା / ୟାଡୁ ସାଡୁ କେଇଟା ବଙ୍କା ରଙ୍ଗ / କ'ଣ ନା ଇନ୍ଦ୍ରଧନୁ ।" ( ହୃଦୟେଶ୍ୱରୀ-ଅନ୍ଧ ମହୁମାଛି)

ଏଠାରେ ଉଲ୍ଲେଖନୀୟ ଯେ ଓଡ଼ିଆ କବିତାରେ ଅସ୍ତିତ୍ୱବାଦ ପାଶ୍ଚାତ୍ୟ ଅସ୍ତିତ୍ୱବୋଧର ଏକ ଝଲକ । ଆମ ସଂସ୍କୃତି ଓ ପରମ୍ପରା ପୂର୍ଣ୍ଣତଃ ନେତିବାଦୀ ନୁହେଁ । ଅସ୍ତିତ୍ୱବାଦ ପରିପ୍ରେକ୍ଷୀରେ ତେଣୁ କ୍ରିୟାଶୀଳ ରହିଛି ଏକ ଅଂଶରେ ଅନୁଭୂତି, ଅନ୍ୟ ଅଂଶରେ ଅଧ୍ୟୟନ । ପ୍ରେମ ଓ ମୃତ୍ୟୁର ଛାଇ-ଆଲୁଅ ଭିତରେ ମୃତ୍ୟୁ ପ୍ରତି ଯେଉଁ ନେତିଧର୍ମୀ ଦୃଷ୍ଟିକୋଣ ଏଠାରେ ପ୍ରକାଶ ପାଇଛି, ତାହା ନିଶ୍ଚିତ ଭାବେ ପାଶ୍ଚାତ୍ୟ ପ୍ରଭାବ । ସେଥିପାଇଁ ସ୍ମରଣ କରାଯାଏ ଅସ୍ତିତ୍ୱବାଦୀ ଦାର୍ଶନିକ ହାଇଡ୍‌ଗାରଙ୍କୁ । ହାଇଡ୍‌ଗାର ମନ୍ତବ୍ୟ ଦିଅନ୍ତି -"As soon as man is born he is old enough to die."

ଜୀବନ ସହ ସମାନ୍ତରାଳ ଗତିରେ ଧାଇଁଅଛି ମୃତ୍ୟୁ । ଭାରତୀୟ ସଂସ୍କୃତି ଅନୁଯାୟୀ ମୃତ୍ୟୁରେ ଶୋକାତୁର ହେବା ବାଞ୍ଛନୀୟ । କାରଣ କୌମାର, ଯୌବନ ଓ ଜରା ଭଳି ଏହା ଜୀବନର ଏକ ଅବସ୍ଥାନ୍ତର ମାତ୍ର । ନିଃଶବ୍ଦରେ ତେଣୁ ଜୀବନ-ନଦୀ ମୃତ୍ୟୁ-ସିନ୍ଧୁ ସହ ମିଳିତ ହେବା ପାଇଁ ଗତିଶୀଳ ହେଲେ ମଧ୍ୟ ତାହା ଆନନ୍ଦ ନିଃସ୍ୟନ୍ଦିନୀ । କାରଣ, ମୃତ୍ୟୁ ସେଠାରେ ଅମୃତର ସୋପାନ । ମରଣକୁ ଶ୍ୟାମ ସମାନ ବରଣ କରିବା ପାଇଁ କବିସତ୍ତା ବଦ୍ଧ ପରିକର ଥିଲା । ପ୍ରୟୋଗବାଦୀ କବିତାରେ କିନ୍ତୁ ଜୀବନକାଳରେ ହିଁ ବ୍ୟକ୍ତିଚେତନା ବାରବାର ମୃତ୍ୟୁକୁ ଅନୁଭବ କରେ । ଯନ୍ତ୍ରଣାଦଗ୍ଧ ଜୀବନ ସେଠାରେ ମୃତ୍ୟୁର ନାମାନ୍ତର । ରମାକାନ୍ତ ରଥଙ୍କ "ମରିବା ଆରମ୍ଭ ହୁଏ ବର୍ଷ ପରେ ବର୍ଷ ବିତିଯାଏ " ( ଚିତ୍ର ପ୍ରତିମା ) ଅଥବା ରାଜେନ୍ଦ୍ର କିଶୋର ପଣ୍ଡାଙ୍କ "ଶ୍ମଶାନଟିଏ କଅଁଳାପିଲା ମୁଣ୍ଡଭିତରେ ଥାଏ ବୋଲି ଜଣାପଡ଼େ ।" (ଧଳା

ଟେଲିଫୋନ-ଗୌଣଦେବତା) ଭଳି ପଙ୍‌କ୍ତି ଏଇ ପରିପ୍ରେକ୍ଷୀରେ ଦ୍ରଷ୍ଟବ୍ୟ ।

ଓଡ଼ିଆ କବିତାରେ ମୃତ୍ୟୁ ଓ ସମୟ ଚେତନା ପରସ୍ପର ନିବିଡ଼ ଭାବେ ଜଡ଼ିତ । ସମୟକୁ କେନ୍ଦ୍ର କରି ମୂଲ୍ୟବୋଧରେ ଯେଉଁ ବିବର୍ତ୍ତନ ଘଟିଛି, ତାହାର ମୂଳାଧାର ଯେ ପାଶ୍ଚାତ୍ୟ ପରମ୍ପରା, ତାହା ପୂର୍ବରୁ ଉଲ୍ଲେଖ କରାଯାଇଛି । ଏ ଅନୁଭବର ପୃଷ୍ଠପଟରେ ଅନୁଭୂତିର ସ୍ପର୍ଶ ରହିଛି ସତ, ମାତ୍ର ଜୀବନ-ଯନ୍ତ୍ରଣାର ମର୍ମହୀନ ଆବେଗ ଅପେକ୍ଷା ବୌଦ୍ଧିକତାର ଛାପ ଏଭଳି କବିତାରେ ଅଧିକ । ଏହି ପର୍ଯ୍ୟାୟରେ ବ୍ୟଙ୍ଗ, ବିଦ୍ରୂପ ଓ ଆତ୍ମମୁଖୀ ଶ୍ଳେଷ ପରିବର୍ତ୍ତିତ ସମୟ ଚେତନାର ଆଧାରରେ କାବ୍ୟଧାରାକୁ ଅବଶ୍ୟ ଏକ ନୂତନ ମୋଡ଼ ଦେଇଛି । ଜୀବନର ସକଳ ଅବକ୍ଷୟ ଭିତରେ ଶ୍ଳେଷ ଓ ବ୍ୟଙ୍ଗ ଭିତରେ ଭୟ ରହିଛି, ତ୍ରାସ ମଧ ରହିଛି । ମାତ୍ର ଉଦ୍‌ବେଗ ଓ ଯନ୍ତ୍ରଣା ପାଠକ-ମାନସରେ ତୀବ୍ର ମର୍ମଦାହ ସୃଷ୍ଟି କରିବାରେ ସଫଳ ହୋଇନାହିଁ । ତା'ର କାରଣ, ବୁଦ୍ଧିମାନ କବିଗଣ ଅଧୟନ ସୂତ୍ରରେ ଯେଉଁ ବିବର୍ତ୍ତନର ସୂଚନା ଦେଇଛନ୍ତି, କାର୍ବ୍ୟିକ ଚମତ୍କାରିତାରେ ତାହାକୁ ସେମାନେ ହୁଏତ ଆତ୍ମଗତ କରିଛନ୍ତି ; ମାତ୍ର ସେ ଅଭିବ୍ୟକ୍ତିର କୁଶଳତା ସହ ଆମ ପାଠକମାନଙ୍କର ବ୍ୟକ୍ତିଗତ ସମସ୍ୟାରାଜିର ସଂପର୍କ ବିଶେଷ ଭାବରେ ଅନୁଭୂତ ହୋଇନାହିଁ । ଅସ୍ଥିରତା, ଅସ୍ତିତ୍ୱର ସଂକଟ, କାଳର ଆତଙ୍କ ଭିତରେ ଦ୍ୱନ୍ଦ୍ୱ ଓ ସଂଘାତ ଛୋଟ କବିତାର ପରିସର ଭିତରେ ଯେଭଳି ଆତ୍ମପ୍ରକାଶ କରିଛି, ତା'ର ବୌଦ୍ଧିକ ବ୍ୟଞ୍ଜନା ପାଠକ-ମାନସକୁ ସ୍ପର୍ଶ କରିବା ପାଇଁ ସର୍ବଦା ସଫଳ ହୋଇପାରିନାହିଁ । ଈଶ୍ୱରଙ୍କ ପ୍ରତି ସଂଶୟ ଭଳି ମୃତ୍ୟୁ ଏକ ବିଶିଷ୍ଟ କାବ୍ୟାନୁଭୂତି ଭାବରେ ଏହି ପର୍ଯ୍ୟାୟରେ ଆତ୍ମିକ ସ୍ୱୀକୃତି ଲାଭ କରିଛି । ମୃତ୍ୟୁକୁ ବିବିଧ ଭାବରେ ଚିତ୍ରିତ କରିଛନ୍ତି ଗୁରୁପ୍ରସାଦ ମହାନ୍ତି, ଭାନୁଜୀ ରାଓ, ସଚ୍ଚି ରାଉତରାୟ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଦୀପକ ମିଶ୍ର, ସୌଭାଗ୍ୟକୁମାର ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ପ୍ରତିଭା ଶତପଥୀ, ସରୋଜ ରଞ୍ଜନ ମହାନ୍ତି, ନୃସିଂହ ତ୍ରିପାଠୀ, ହରପ୍ରସାଦ ଦାସ, ପ୍ରସନ୍ନ ମିଶ୍ର, ହରିହର ମିଶ୍ର, ମମତା ଦାଶ ଓ ମନୋରମା ମହାପାତ୍ର ପ୍ରମୁଖ ।

ମୃତ୍ୟୁ ପାଇଁ ଯେତିକି ଭୟ, ଜନ୍ମ ଓ ଜୀବନ ପାଇଁ ଭୟ ଏଠାରେ ତତୋଽଧିକ । ମୃତ୍ୟୁ ବ୍ୟକ୍ତିଗତ । ଏଣୁ ସାମୂହିକ ଭାବେ ଦେହାନ୍ତରର ଚତୁର୍ଥ ସୋପାନ ରୂପେ ତା'କୁ ଗ୍ରହଣ କରିହେବ ନାହିଁ । କବି ସର୍ବଦା ସେହି ବ୍ୟକ୍ତିଗତ ମୃତ୍ୟୁର ପ୍ରତ୍ୟାଶାରେ ଉଦ୍‌କିତ । କାରଣ, ସଂପର୍କ ଏଠାରେ ସଂପର୍କର ପ୍ରତିଧ୍ୱନି ମାତ୍ର । ସମୟର ଯାଦୁଘର ସଂଚିତ କରିରଖିଛି ଯେଉଁ ଅନୁଭବ, ତାହା ଆମର ଜୀବନ-ବୃତ୍ତରେ ପୂର୍ଣ୍ଣତାର ତୃପ୍ତି କେବେ ପାଏ ନାହିଁ । ଭାବ-ବିନିମୟର ପାରସ୍ପରିକ ପ୍ରଚେଷ୍ଟା ଏକ ଶୋଚନାହୀନ, ଅର୍ଥହୀନ ବିସ୍ଫୋରଣରେ ଶେଷ ହୁଏ । ସଂପର୍କର ଇତିକଥା ହୁଏ ଏକ ନିରର୍ଥକ ପ୍ରତ୍ୟାଶା । ସକାଳ ଓ ସଂଧ୍ୟାର କୋମଳତା କ୍ରମଶଃ ଏକ ନିଷ୍ଠୁର, ନିଦାଘତପ୍ତ ମଧ୍ୟାହ୍ନରେ ସଂକୁଚିତ ହୋଇଯିବାବେଳେ ଆକସ୍ମିକ ଭାବରେ ଏକ

ଅନୁଭବ ଭାଷାରୂପ ନିଏ- '' କିଏ ମତେ କହିଥିଲା ଅପେକ୍ଷା ହିଁ ମୃତ୍ୟୁ / କିନ୍ତୁ ତମ ଅପେକ୍ଷାରେ ଅନେକ ସକାଳ ଏବଂ ସନ୍ଧ୍ୟା ସବୁ / ମଧ୍ୟାହ୍ନରେ ସଂକୁଚିତ ହୋଇ ସମଗ୍ର ଦିନର ଭ୍ରାନ୍ତି / ଅସ୍ତିତ୍ୱର ବର୍ଣ୍ଣହୀନ ଆକାର କେବଳ '' ( ତମ ଅପେକ୍ଷାରେ - ଅନ୍ୟ ସବୁ ମୃତ୍ୟୁ ଓ ଅନ୍ୟାନ୍ୟ କବିତା, ଜଗନ୍ନାଥ ପ୍ରସାଦ ଦାସ )

ଚରମ ହତାଶା ଓ ନୈରାଶ୍ୟ ପରିବର୍ତ୍ତେ ପ୍ରୟୋଗବାଦୀ କବିତାର ମୃତ୍ୟୁ ଚେତନାରେ ପ୍ରେମ ଓ ମୃତ୍ୟୁ ତଥା ଆଶା ନୈରାଶ୍ୟର ଏକ 'ମତେ-ଛୁ' ଖେଳ ଲାଗିଥାଏ । ମୃତ୍ୟୁ ଉଙ୍କି ମାରୁ ମାରୁ ହାତ ବଢ଼ାଏ ପ୍ରେମ । ପୁଣି ପରମ ପ୍ରତ୍ୟାଶା ପାଇଁ ପ୍ରେମରେ ଆସ୍ଥା ପୋଷଣ କରୁ କରୁ ମୃତ୍ୟୁ ବଢ଼ାଇ ଦିଏ ତା'ର ଚରମ ପତ୍ର । ଏହାର ଭାବ-ଉତ୍ସ ବହୁଧା ବିଭକ୍ତ ଓ ବୈଚିତ୍ର୍ୟବିମଣ୍ଡିତ । ନଗର ଜୀବନର ଔପଚାରିକତା ଓ ଅବକ୍ଷୟ ମଧ୍ୟରେ ହନ୍ତସନ୍ତ ହେଉଥିବା ମଣିଷର ଦୈନନ୍ଦିନ ଜୀବନଚିତ୍ର ଏହି ପର୍ଯ୍ୟାୟରେ ବହୁ କବିତାର ଉପଜୀବ୍ୟ । ନଗର ଜୀବନର କୃତ୍ରିମତା, ଛଳନା, ପ୍ରତାରଣା ସହ କବିର ନିବିଡ଼ ସଂପର୍କ ଥିବା ଯୋଗୁଁ ସେହି ଜୀବନ ସମସାମୟିକ କଥାସାହିତ୍ୟ ତଥା ନାଟ୍ୟସାହିତ୍ୟରେ ପ୍ରତିଫଳିତ ହେବାଭଳି କବିତାରେ ମଧ୍ୟ ବ୍ୟଞ୍ଜିତ ହୋଇଛି । ହରେକୃଷ୍ଣ ଦାସ, ଗୋବର ଗଣେଶ, ଶୁକଦେବ ଜେନା, ସୁଖେନ୍ଦୁ ସାମଲ ପୁଣି ପ୍ରତିମା ନାୟକ, ଅଳକା ସାନ୍ୟାଲ,ପ୍ରଭାତୀଜୀ ଭଳି କବିତାରେ ଏହା ସୂଚିତ ହୋଇଛି । ସମସାମୟିକ ଜୀବନର କୃତ୍ରିମତା, ନାରୀତ୍ୱ ତଥା ପୌରୁଷର ଅବକ୍ଷୟ, ଅନୀତି, ସମାଜର ଭ୍ରଷ୍ଟାଚାର, ଜୈବିକ ପ୍ରବୃତ୍ତିର ଉଦ୍ଦାମତା - ଯାହା ଆଧୁନିକ ଜୀବନଧାରାର ବିବିଧ ବିପର୍ଯ୍ୟୟର ପରିମାପକ । ମାତ୍ର ଏ କବିତାଗୁଡ଼ିକ ସାମଗ୍ରିକ ଭାବେ ଅସ୍ତିତ୍ୱବାଦ ପର୍ଯ୍ୟାୟଭୁକ୍ତ କରି ହୁଏ ନାହିଁ । ଅସ୍ତିତ୍ୱବାଦୀ ଯେଉଁ "existence preceeds essence" ବିଷୟରେ କହେ, ତାହା ଏଠାରେ ପ୍ରଯୁଜ୍ୟ ହେବନାହିଁ । କାରଣ ଅସ୍ତିତ୍ୱବାଦର ଅସ୍ତିତ୍ୱ ବା ଏକ୍ଜିସ୍ଟେନ୍ସ୍ ସାମାଜିକ ତଥା ବୈକ୍ତିକ ଜୀବନର ଭ୍ରଷ୍ଟାଚାର ଅଥବା ଅବକ୍ଷୟ ନୁହେଁ ।

ପାରଂପରିକ ଚେତନା ଉପରେ ଆଧାରିତ ସତ୍ୟ, ଧର୍ମ ଯେ କେବଳ ମାତ୍ର ଛଳନା, ତାହାକୁ ଅନୁଭବ କରିଥିଲେ ଅସ୍ତିତ୍ୱବାଦର ପ୍ରତିଷ୍ଠାତା-ଦାର୍ଶନିକ ଓ ସାହିତ୍ୟିକଗଣ । ପ୍ରବଞ୍ଚନାପୂର୍ଣ୍ଣ ତଥାକଥିତ '' ଏସେନ୍ସ '' ଯେ ଆପଣା ରୁଚିରେ ବଞ୍ଚିବା ପାଇଁ ବ୍ୟକ୍ତି-ମଣିଷଟିକୁ ଅନୁମତି ଦିଏ ନାହିଁ, ତାହା ହିଁ ଥିଲା ସେମାନଙ୍କର ଉଦ୍‌ଘୋଷଣା । ଧର୍ମ ନାମରେ ବ୍ୟାପିଥିବା ତଥାକଥିତ ନୈତିକତାକୁ ଆହ୍ୱାନ ଦେବାକୁ ଯାଇ "existence preceeds essence" କଥାଟି ଉଠିଥିଲା । ଅସ୍ତିତ୍ୱବାଦୀ ଚରିତ୍ରଟିଏ ତେଣୁ ତଥାକଥିତ ନୈତିକତା ପ୍ରତି ସ୍ୱାଭାବିକ ଭାବରେ ବୀତସ୍ପୃହ ହୋଇପଡ଼ି ପାରମ୍ପରିକ ସମାଜ ନିକଟରେ ଉଦ୍‌ଭଟ ହୋଇଉଠିଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମ ସାମାଜିକ ଧାରାରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଛି । ଭ୍ରଷ୍ଟ ସମାଜର ମୁଖପାତ୍ର ରୂପେ ପ୍ରତୀକାୟିତ ହୋଇଥିବା ଚରିତ୍ରଗୁଡ଼ିକ ବହନ କରିଛନ୍ତି ସମସାମୟିକ ଜୀବନଧାରାର ନିର୍ଯାସ (essence) । କବିମାନେ ତାକୁ ପ୍ରକାଶ କରିଛନ୍ତି ନିରାଟ ଶୂନ୍ୟତା ଓ ନୈରାଶ୍ୟର ପରିଧିରେ - ଏଲିୟଟ ଯେଉଁ ମଣିଷକୁ ଭେଟିଥିଲେ ଚରମ ଶୂନ୍ୟତାର ସୀମାରେ - " of death's twilight kingdom, the hope only of empty man." ( *The hollow man* ) ମୃତ୍ୟୁର ରହସ୍ୟଘନ ପରିବେଶ ହେଉଛି ଗୋଧୂଳି । ମଣିଷ ଭେଟିଛି ଯୁଦ୍ଧ ଓ ଯନ୍ତ୍ରର ଅଭିଘାତ । ସେହି କ୍ଷତାକ୍ତ ପରିଧି ଆବୋରି ବସିଛି ଜୀବନକୁ ଏକ ଅସୂର୍ଯ୍ୟ ଉପନିବେଶ ଭଳି । ସମୟ ଓ ଜୀବନର ଯନ୍ତ୍ରଣା ପାଶ୍ଚାତ୍ୟ ପରିବେଶରେ ବଡ଼ ମର୍ମାନ୍ତିକ । କାରଣ, ସମର ଓ ସଂଘର୍ଷର ଅପଘାତ ତଥା ପ୍ରାଚୁର୍ଯ୍ୟ ଓ ସଂଭୋଗର ବିଷମତାଜନିତ ତିକ୍ତ ଅନୁଭବ ସେଠାରେ ପ୍ରାଥମିକ ପର୍ଯ୍ୟାୟରେ ଅନୁଭୂତ ହୋଇଛି । ଏହି ପ୍ରାଥମିକ ଅନୁଭବକୁ ନିବିଡ଼ କଳାଶକ୍ତିରେ ସେମାନେ ଉପସ୍ଥାପନା କରି ଜୀବନ-ଯନ୍ତ୍ରଣାକୁ ବାସ୍ତବ ରୂପ ଦେଇଥା'ନ୍ତି । ଆମ କବିତାରେ ଅନୁଭୂତି ଓ ଅଧ୍ୟୟନର ଯୁଗପଦ୍ ମିଳନ । ପାର୍ବତୀ ଓ ପରମେଶ୍ୱରଙ୍କ ଅର୍ଦ୍ଧନାରୀଶ୍ୱର ପ୍ରତିମା ଭଳି ସେ ମିଳନର ପରିଣତି ବହୁ ସମୟରେ ସାର୍ଥକ କଳାଶକ୍ତିର ପରିଚୟ ଦେଇଛି । ଏଥିରେ ଶ୍ଳେଷ ଅଛି, ବକ୍ରୋକ୍ତି ଅଛି, ଅଛି ମଧ୍ୟ ଚିତ୍ରକଳ୍ପାତ୍ମକ ଭାଷାର ବ୍ୟଞ୍ଜନା । କିନ୍ତୁ ଏହାର ଶିଳ୍ପ-ଚାତୁର୍ଯ୍ୟ ଭିତରେ ଯେଉଁ ଉଦ୍‌ବେଗ ପ୍ରକାଶ ପାଇଛି, ତାହା ସେକେଣ୍ଡ ହ୍ୟାଣ୍ଡ । ଦୁର୍ଘଟଣା ପରବର୍ତ୍ତୀ କାଳରେ ଝାଡ଼ିଝୁଡ଼ି ହୋଇ ସୁସ୍ଥ ସବଳ ରହିଥିବା ଲୋକଟିଏ ଦୁର୍ଘଟଣାର ଯେତେ ଲୋମହର୍ଷଣକାରୀ ବର୍ଣ୍ଣନା ଦେଲେ ମଧ୍ୟ ତାହା ଯେଉଁଳି ତା'ର ନିକଟତମ ଶ୍ରୋତାକୁ ଆଶାନୁରୂପ ଅଭିଭୂତ କରିପାରେ ନାହିଁ, ଉଦ୍‌ବେଗର ଆବେଦନ ଏଠାରେ ସେହିଭଳି । ଉଦ୍‌ବେଗର ଯେଉଁ ଅନୁଭୂତି ଅଧ୍ୟୟନପ୍ରସୂତ, ତାହା ନିଛକ ଉଦ୍‌ବେଗ ନ ହୋଇ ନିପୁଣ କବି-ଲେଖନୀରେ ପରିପକ୍ୱ ଅଭିବ୍ୟକ୍ତିଟିଏ ହିଁ ସୃଷ୍ଟି କରିଥାଏ । ତେଣୁ ଅଭିବ୍ୟକ୍ତିର ବ୍ୟଞ୍ଜନା ଓ ଉଦ୍‌ବେଗର ଉତ୍ତେଜନା ଭିନ୍ନ ଧରଣର ।

ପ୍ରୟୋଗବାଦୀ କବିତା ଏକ ମିଶ୍ରିତ ଭାବାବେଗର କବିତା । ପ୍ରାଚ୍ୟ ଓ ପାଶ୍ଚାତ୍ୟ - ଉଭୟ ସେଠାରେ ବିମିଶ୍ରିତ ରହିଛନ୍ତି । ବିଶେଷତଃ ପଞ୍ଚମ-ଷଷ୍ଠ ଦଶନ୍ଧିଠାରୁ ଯେଉଁ ପରୀକ୍ଷାଧର୍ମୀ ସାହିତ୍ୟ ସୃଷ୍ଟିର ପ୍ରୟୋଗ ଘଟିଛି, ପ୍ରତୀକ ଓ ରୂପକଳ୍ପଠାରୁ ଆରମ୍ଭ କରି ଭାବସତ୍ତା ପର୍ଯ୍ୟନ୍ତ ସର୍ବତ୍ର, ଏହି ପ୍ରକ୍ରିୟା ବଳବତ୍ତର ରହିଛି । ଗୁରୁପ୍ରସାଦଙ୍କ ସମୟରୁ ଯେଉଁ ଆହରଣ ଓ ଆରୋପଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା, ତାହା ପରବର୍ତ୍ତୀ ଦଶନ୍ଧିଗୁଡ଼ିକରେ ଅଧିକରୁ ଅଧିକ ଜଟିଳତର ହୋଇଛି । ଆହରଣ, ଆରୋପଣ ଓ ସମୀକରଣ ମାଧ୍ୟମରେ ରାଧାନାଥ ସାହିତ୍ୟରେ ଏକ ପକ୍ଷରେ ପ୍ରେମ ଓ ଅନ୍ୟ ପକ୍ଷରେ ଜାତୀୟତାବାଦୀ ଭାବଚେତନା ଯେଉଁଳି ଉଦ୍‌ଜୀବିତ

ହୋଇଥିଲା, ପ୍ରୟୋଗବାଦୀ କବିତା ସମୟକୁ ତାହା ନଗର ଜୀବନର ସଂଘାତ-ସଂଘର୍ଷ ମଧ୍ୟରେ ଗୋଷ୍ଠୀକୈନ୍ଦ୍ରିକ ଜୀବନର ଅବକ୍ଷୟକୁ ମୁଖ୍ୟତଃ ପ୍ରକାଶ କରିଥିଲା । ଛୋଟ କବିତାରେ ବହୁବିଧ ଭାବବିନ୍ୟାସ କବି-ଲେଖନୀକୁ କ୍ରମଶଃ ଜଟିଳ କରି ପକାଇଲା । ମୃତ୍ୟୁର ସ୍ୱରୂପ ଓ ପ୍ରକାର ବଦଳିଲା, ଜୀବନ-ଯନ୍ତ୍ରଣାର ଢ଼ାଞ୍ଚା ବଦଳିଲା, ତା'କୁ ପ୍ରକାଶ କରିବାର ଦିଗ ଓ ବାଗ ମଧ୍ୟ ବଦଳିଗଲା । ଜୀବନର ରୂପାନ୍ତର ଯେ ନ ଘଟିଥିଲା ତାହା ନୁହେଁ, କିନ୍ତୁ ଭାରତୀୟ ପରମ୍ପରାରେ ଅର୍ଥର ପ୍ରାଚୁର୍ଯ୍ୟ ମଧ୍ୟରେ ଜୀବନ ପ୍ରତି ଚରମ ବୀତସ୍ପୃହତାର ସ୍ୱରୂପ ପାଶ୍ଚାତ୍ୟ ଢ଼ାଞ୍ଚାରେ ଗଢ଼ି ଉଠିପାରି ନଥିଲା । ଦାରିଦ୍ର୍ୟର ସୀମାରେଖା ତଳେ ବସବାସ କରୁଥିବା ଆମର ଅଧିକାଂଶ ନାଗରିକ ଏଠାରେ ପ୍ରାୟତଃ ଯୁଦ୍ଧ କହିଲେ ଏବେ ମଧ୍ୟ ବୁଝନ୍ତି ଜୀବନ-ଯୁଦ୍ଧ । ଏହି ଜୀବନ-ଯୁଦ୍ଧକୁ ନେଇ ରଚିତ ହୋଇଥିବା କେତେକ କବିତାକୁ ମଧ୍ୟ କେହି କେହି ସମାଲୋଚକ ଅସ୍ତିତ୍ୱବାଦୀ କବିତା ରୂପେ ଗ୍ରହଣ କରିଛନ୍ତି । (୭) ଏହି ପର୍ଯ୍ୟାୟର କବିତା । ଏ କବିତାଗୁଡ଼ିକ ବାମପନ୍ଥୀ ଅଥବା ଅସ୍ତିତ୍ୱବାଦୀ ନୁହେଁ । କାରଣ, ଏଠାରେ ଶ୍ରେଣୀ ସଂଘର୍ଷ ଅଥବା ଅନ୍ତର୍ମୁଖୀ ଜୀବନସଂଘର୍ଷ ବ୍ୟକ୍ତ ନ ହୋଇ ପ୍ରତିକୂଳ ପରିବେଶରେ ନାରୀ କିଭଳି ଜୀବନ ସହ ମୁକାବିଲା କରେ ଓ ସେ ମୁକାବିଲାର ଅନ୍ତଃରୂପ କିଭଳି କାରୁଣ୍ୟ ଉଦ୍ରେକ କରେ, ତାହା ହିଁ ସୂଚାଇ ଦିଆଯାଇଛି । ପାଶ୍ଚାତ୍ୟ ଅସ୍ତିତ୍ୱବାଦ ଯେନତେନ ପ୍ରକାରେଣ ଜୀବନ ବଞ୍ଚାଇବାକୁ ଏକ୍‌ଜିସଟେନ୍‌ସ୍ କୁହେ ନାହିଁ । ଏକ୍‌ଜିସ୍‌ଟେନ୍‌ସ୍‌ର ଅର୍ଥ ସେଠାରେ ଭିନ୍ନ । ପାରମ୍ପରିକ ଜୀବନଧାରା ବିରୋଧରେ ତା'ର ବିଦ୍ରୋହ ଓ ବିପ୍ଳବ ଅନ୍ତର୍ମୁଖୀ । ଦାୟରେ ପଡ଼ି ପରିସ୍ଥିତିର ଚାପରେ ଜୀବନଧାରଣ କରିବାର ପ୍ରବୃତ୍ତି ଅସ୍ତିତ୍ୱବାଦୀ ନୁହେଁ ।

ଭଲ କବିତାଟିଏ କୌଣସି ନିର୍ଦ୍ଦିଷ୍ଟ କଳାତତ୍ତ୍ୱକୁ ଅନୁସରଣ ନ କରି ମଧ୍ୟ କାଳୋତ୍ତୀର୍ଣ୍ଣ ହୋଇପାରେ । ସେଭଳି କବିତାରେ ଯେଉଁ ସ୍ୱର ପ୍ରକାଶ ପାଏ, ତାହା ଅସ୍ତିତ୍ୱବାଦୀ ନ ହୋଇ ମଧ୍ୟ ଉଚ୍ଚାଙ୍ଗ କଳାକୃତିର ମର୍ଯ୍ୟାଦା ଲାଭ କରିପାରେ । କବିତା ସ୍ୱତଃସ୍ଫୂର୍ତ୍ତ ଆବେଗରୁ ହେଉ ଅଥବା ଶବ୍ଦର ସୁଚିନ୍ତିତ ସଂଯୋଗରୁ ହେଉ, କାବ୍ୟିକତା ଦୃଷ୍ଟିରୁ ସଫଳତା ଲାଭ କରିପାରେ ଓ ରସାମୋଦୀ ପାଠକମାନଙ୍କର ରସପୂର୍ତ୍ତିରେ ସହାୟକ ହୁଏ । ଓଡ଼ିଆ କାବ୍ୟ ଜଗତରେ ଏହିଭଳି ଏକ ସୃଷ୍ଟି ଭାବରେ 'ଶ୍ରୀରାଧା' ସ୍ମରଣୀୟ । 'ଶ୍ରୀରାଧାର କାବ୍ୟ ଜିଜ୍ଞାସା ଓ ରମାକାନ୍ତଙ୍କ ଆଧୁନିକତା' ଶୀର୍ଷକ ଏକ ନିବନ୍ଧରେ ( ଝଙ୍କାର -ଅକ୍ଟୋବର, ୧୯୯୩) ମୁଁ ଉଲ୍ଲେଖ କରିଥିଲି ଯେ 'ଶ୍ରୀରାଧା'ରେ ଅସ୍ତିତ୍ୱବାଦର ଏକ ଝଲକ ପରିଦୃଷ୍ଟ ହୁଏ । ଅସ୍ତିତ୍ୱବାଦୀ ଚେତନା 'ଶ୍ରୀରାଧା' ର ପୂର୍ଣ୍ଣାଙ୍ଗ ରୂପରେଖ ନୁହେଁ । ଏଠାରେ ବିମିଶ୍ରିତ ରହିଛି ପରମ୍ପରା ଓ ଆଧୁନିକତା ।

---

(୭) ଚନ୍ଦ୍ରମାର ଚୂଡ଼ୀ- ରମାକାନ୍ତ ରଥ, ସାବିତ୍ରୀ ଉବାଚ-ପ୍ରତିଭା ଶତପଥୀ

ଭାରତୀୟ ପୁରାଣର ପାରମ୍ପରିକ ଚରିତ୍ରଟିଏର ଅନ୍ତରାଳରେ ଆଧୁନିକତାର ଦର୍ଶନକୁ ଆରୋପ କରିଛନ୍ତି ରମାକାନ୍ତ ରଥ । କାଳର ଆତଙ୍କ ଭିତରେ ବ୍ୟକ୍ତିଗତ ଦୁଃଖାନୁଭବର ଯେଉଁ ଭାବଚେତନା ଏଠାରେ କାବ୍ୟାୟିତ ହୋଇଛି, ତାହା ଅସ୍ତିତ୍ୱବାଦୀ ଦର୍ଶନର ଏକ ଅଂଶ । ସୁତରାଂ ମିଥ୍‌ର ଚରିତ୍ର ଓ ପରିବେଶ ଯେ କାଳଭିତ୍ତିରେ ବିବର୍ତ୍ତିତ ହୋଇଛି ଓ ଆଧୁନିକତାର ବିଭିନ୍ନ ଦର୍ଶନ ଆଧାରରେ ନବରୂପାନ୍ତର ଲାଭ କରିଛି, 'ଶ୍ରୀରାଧା'ରୁ ତାହା ସ୍ପଷ୍ଟ ହୁଏ । ଏହି ରୂପାନ୍ତର ରମାକାନ୍ତଙ୍କ ସୃଷ୍ଟିରେ ସର୍ବାଧିକ ଓ ଏହି କାରଣରୁ ତାଙ୍କ କବିତାର ଭାବଗତ ଆବେଦନ ଅପେକ୍ଷାକୃତ ଅଧିକ ଜଟିଳ ଓ ଦୁର୍ବୋଧ ।

ଓଡ଼ିଆ କାବ୍ୟ-ଜଗତର ବହୁ କୃତିରେ ଅସ୍ତିତ୍ୱବାଦର ଝଲକ ଇତସ୍ତତଃ ପରିଦୃଷ୍ଟ ହୁଏ । ତା'ର ବାର୍ତ୍ତା ଆର୍ଯ୍ୟ ସଂସ୍କୃତି ତଥା ଭାରତୀୟ ଭାବନା ସମର୍ଥିତ । ପାଶ୍ଚାତ୍ୟ କଳା-ସୃଷ୍ଟି ମଧ୍ୟ ଅବକ୍ଷୟ ଓ ବେଦନାରୁ ମୁକ୍ତି ଓ ଉତ୍ତରଣ ପାଇଁ ବହୁ ସମୟରେ ଦୃଷ୍ଟି ଫେରାଇଛି ପ୍ରାଚ୍ୟକୁ । ପ୍ରାଚ୍ୟ ଓ ପାଶ୍ଚାତ୍ୟ କବି ଚେତନାରେ ସମନ୍ୱିତ ହୋଇ ନୂତନ କାବ୍ୟ-ସୌନ୍ଦର୍ଯ୍ୟ ଲାଭ କରିଛି । ଅନ୍ତର୍ଦ୍ୱନ୍ଦ୍ୱ, ସଂଘର୍ଷ, ସ୍ଥିତିର ଅସ୍ଥିରତା, ସଂଶୟ, ସଂଘାତ ତଥା କାଳର ଆତଙ୍କ ଓ ଦୁର୍ବିପାକ ମଧ୍ୟରେ ଏକ ଆଧ୍ୟାତ୍ମିକ ଆସ୍ପୃହା ବଳବତ୍ତର ରହିଛି । ଅସ୍ତିତ୍ୱବାଦ କେବେହେଲେ ଆଧ୍ୟାତ୍ମିକତା ଅଥବା ନୈତିକତା ବିରୋଧୀ ନୁହେଁ, ବରଂ ନୈତିକତାକୁ ଫ୍ୟାସନ୍ ରୂପେ ଗ୍ରହଣ କରୁଥିବା ତଥାକଥିତ ଆଧୁନିକ ସମାଜ ପ୍ରତି ଅସ୍ତିତ୍ୱବାଦ ଏକ ବ୍ୟଙ୍ଗ-ଭାଷ୍ୟ । ଏହି କାରଣରୁ ପ୍ରୟୋଗବାଦୀ ଓଡ଼ିଆ କବିତା ଦୁଃଖ, ଜ୍ୱାଳା, ଯନ୍ତ୍ରଣା ଓ ଆତଙ୍କରୁ ସର୍ବଦା ମୁକ୍ତିର ସନ୍ଧାନ କରିଛି । ଅବକ୍ଷୟ ଓ ବିପର୍ଯ୍ୟୟ ଭିତରେ ଆକାଶ, ମାଟି ଓ ମାଟିର ମଣିଷ ଭାରତୀୟ ଆଧ୍ୟାତ୍ମିକତା ପ୍ରତି ବିଶ୍ୱସ୍ତ ରହିଛି । ଦୁଃଖ, ବେଦନା ଓ ଦାରୁଣ ଦୁର୍ବିପାକ ଭିତରେ ଭାରତୀୟ ଆଧ୍ୟାତ୍ମିକତା ପ୍ରତି ବିଶ୍ୱସ୍ତ ରହିଥିବା କବିତାଗୁଡ଼ିକ ହିଁ ଅପେକ୍ଷାକୃତ ଅଧିକ ପାଠକୀୟ ସ୍ୱୀକୃତି ଲାଭ କରିଛନ୍ତି ।

ପାଶ୍ଚାତ୍ୟ ଅସ୍ତିତ୍ୱବାଦୀ କଳା ଓ ସାହିତ୍ୟ ଭଳି ଆମ କବିତାରେ ଏକ ନିରବଚ୍ଛିନ୍ନ ରିକ୍ତତା ମଣିଷର ଅନ୍ତରାତ୍ମାକୁ ଘାଣ୍ଟି ଚକଟି ପକାଇ ନାହିଁ, ବରଂ ରିକ୍ତତାର ଶେଷ ସୀମାରେ, ସ୍ମୃତି ଓ ଅନୁଭୂତିର ନିଃସ୍ୱତା ଭିତରେ ଆଧ୍ୟାତ୍ମିକତା ଆଡ଼କୁ ମୁହଁ ଫେରାଇଛି ମାଟି ଓ ମଣିଷ । କବି ଓ କଳାକାରମାନେ ଫେରି ଆସିଛନ୍ତି ପ୍ରତିଟି ବିକଳ୍ପ ମୁହୂର୍ତ୍ତରେ ଆଧ୍ୟାତ୍ମିକତାର ପ୍ରଶାନ୍ତିକୁ । ଦ୍ୱା-ସୁପର୍ଣ୍ଣା-ସୁପର୍ଣ୍ଣା-ସତ୍ତା-ପ୍ରତିସତ୍ତାର ଦ୍ୱନ୍ଦ୍ୱ ଅବଶ୍ୟ ଜାରି ରହିଛି କାବ୍ୟ-କଳାରେ । ଅନ୍ତଃମନର ନିଃସଙ୍ଗତା ବ୍ୟକ୍ତି ଓ ସମାଜର ପାରସ୍ପରିକ ଘାତ ପ୍ରତିଘାତ ଦେଇ ଶେଷରେ ମଗ୍ନ ହୋଇ ଯାଇଛି ଏକ ରୋମାଣ୍ଟିକ ଅଥବା ରହସ୍ୟବାଦୀ ଅତୀନ୍ଦ୍ରିୟତାରେ ।

ଏହସବୁ କାରଣରୁ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ ସୂତ୍ରରେ ଯେଉଁ ଆଧୁନିକତା ପ୍ରକଟିତ ହୋଇଛି, ତାହାର ସୀମା, ସଂଜ୍ଞା ଓ ସମ୍ଭାବନାର ପରିମଣ୍ଡଳରେ ସର୍ବଦା ଏକ ସ୍ୱାତନ୍ତ୍ର୍ୟ ପ୍ରକାଶ ପାଇଛି । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଛୋଟ କବିତାର ସୀମିତ ପରିସରରେ ପ୍ରଭାବପ୍ରସୂତ ଆଧୁନିକତା କେତେକ କ୍ଷେତ୍ରରେ କାବ୍ୟିକ ଜଟିଳତା ସୃଷ୍ଟିକରିଛି । ଜୀବନଯନ୍ତ୍ରଣା ଭିତରେ ଅନୁଭୂତି ଓ ବଦନାବୋଧର କାବ୍ୟିକ ରସିକତା ସାଧାରଣ ପାଠକ ପ୍ରାଣକୁ ପ୍ରାୟ ଉଦ୍‌ଜୀବିତ କରିପାରିନାହିଁ । ଆମ ଦେଶରେ ଶିକ୍ଷାର ଆଶାନୁରୂପ ପ୍ରସାର ଏଯାବତ ହୋଇପାରିନାହିଁ । ଅସ୍ତିତ୍ୱବାଦୀ ଅଥବା ସ୍ୱଭାବବାଦୀ ସାହିତ୍ୟ ଭିତରେ ପରିସ୍ଫୁଟ ହେଉଥିବା ସୂକ୍ଷ୍ମ ରସବୋଧର ଉପଲବଧି ପାଇଁ ଏବେ ମଧ୍ୟ ଏଠି ପରିବେଶର ଅଭାବ ଅନୁଭୂତ ହେଉଛି । ଏହି ହେତୁ ଜଟିଳ ପରୀକ୍ଷାନିରୀକ୍ଷା ପରିବର୍ତ୍ତେ ଆମର ସମକାଳୀନ ସାମାଜିକ ଓ ସାଂସ୍କୃତିକ ପରିସ୍ଥିତିକୁ ଆଖିରେ ରଖି ସୃଷ୍ଟି ହେଉଥିବା କଳା ଓ ସାହିତ୍ୟ ହିଁ ଆମ ଦେଶର ପାରିବେଶିକ ବାସ୍ତବତା ସହ ଯୋଗସୂତ୍ର ରକ୍ଷା କରିପାରିବ ।

କବି ସାମାଜିକ ଦାୟିତ୍ୱ ଅବଶ୍ୟ ନିଏ ନାହିଁ । କିନ୍ତୁ ସମାଜ ଓ ବ୍ୟକ୍ତିର ଅନ୍ତଃସଂଘର୍ଷକୁ ନିରପେକ୍ଷ ଭାବେ ପ୍ରଦର୍ଶନ କରିବା ତା'ର ଧର୍ମ । ଅସ୍ତିତ୍ୱବାଦ ଏକ ବ୍ୟକ୍ତିବାଦୀ ଦର୍ଶନ ହେଲେ ମଧ୍ୟ ସମାଜ ସହ ଅନ୍ତଃ ସଂଘର୍ଷ କ୍ରମରେ ଏହାର ଉଦ୍‌ଭବ । ଅନ୍ତଃସଂଘର୍ଷର ପରିଣତି ମଧ୍ୟ ବୈପ୍ଳବିକ ଯାହା ଆପାତତଃ ଏକ ବିକଳ୍ପବିହୀନ ବିଷାଦ ତଥା ସ୍ୱବିରୋଧ ଭଳି ପ୍ରତୀତ ହୋଇଥାଏ । କବିତା ଅପେକ୍ଷା କଥାସାହିତ୍ୟ ତଥା ନାଟ୍ୟସାହିତ୍ୟରେ ଏହାର ରୂପାୟନ ଅପେକ୍ଷାକୃତ ଅଧିକ ସୁବିଧାଜନକ । କବିତାରେ ଏହାର ସ୍ଫୁରଣ ମୁହୂର୍ତ୍ତର ଝଲକ ମାତ୍ର । ତେବେ, ଏ ଝଲକର ମଧ୍ୟ ବିବିଧ ରୂପ-ରୂପାନ୍ତର ଓ ଭାବ-ସୌନ୍ଦର୍ଯ୍ୟ ରହିଛି ।

□□□

# କବିତାରେ ଉତ୍ତର ଆଧୁନିକତା: ଭିତ୍ତି ଓ ଭାରତୀ

ହୃଷୀକେଶ ମଲ୍ଲିକ



*ଅଧ୍ୟାପକ, ଓଡ଼ିଆ ବିଭାଗ,*

*ରାଜଧାନୀ କଲେଜ, ଭୁବନେଶ୍ୱର*

'ଉତ୍ତର-ଆଧୁନିକତା' ପରିଭାଷାଟି ଯଦିଓ ଏ ଯାବତ୍ ସ୍ପଷ୍ଟ ହୋଇନାହିଁ, ତଥାପି ପ୍ରାୟତଃ ସତୁରୀ ଦଶକରୁ ଭାରତ ଭୂଇଁରେ ଏହା ତାର ଅଭିକ ପଦଚାରଣ ଆରମ୍ଭ କରିଦେଇଛି । ଓଡ଼ିଆ ଭାଷାରେ ଏ ସ୍ୱର ୧୯୮୦ରୁ ସ୍ପଷ୍ଟଭାବେ ଶୁଣାଯାଇଛି ; କିନ୍ତୁ ଦୀର୍ଘ ପନ୍ଦର ବର୍ଷରୁ ଊର୍ଦ୍ଧ୍ୱ କାଳଧରି ଏହି ସାହିତ୍ୟ ଆନ୍ଦୋଳନଟି ନାନା ମତେ ଆମକୁ ସ୍ପନ୍ଦିତ କରି ଆସୁଥିଲେ ବି ଏ ସଂପର୍କରେ ଓଡ଼ିଆ ଭାଷା କଥା ଦୂରେ ଥାଉ, ଭାରତୀୟ ଭାଷା ମାନଙ୍କରେ ହୋଇଥିବା ଆଲୋଚନା ମଧ୍ୟ ଯଥେଷ୍ଟ ଓ ଆଶାନୁରୂପ ନୁହେଁ । ଏହି କାରଣରୁ 'ଉତ୍ତର-ଆଧୁନିକତା' ସଂପର୍କରେ ଏଠାରେ ସମ୍ୟକ୍ ଆଲୋଚନା କରାଯିବା ଧୃଷ୍ଟତା ହେବ ନାହିଁ । ବିଦ୍ୱାନମାନେ ଏହି ନିବନ୍ଧକୁ ' ଉତ୍ତର-ଆଧୁନିକତା' ସଂପର୍କରେ କିଂଚିତ୍ ଆଲୋଚନାର ଏକ ପ୍ରାରମ୍ଭିକ ଉଦ୍ୟମ ଓ ଆଗାମୀ ଦିନମାନଙ୍କରେ ଏ ସମ୍ବନ୍ଧରେ ବିସ୍ତୃତ ପର୍ଯ୍ୟାଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତି ବୋଲି ଧରିନେବାକୁ ଅନୁରୋଧ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଏଇ 'ଉତ୍ତର-ଆଧୁନିକତା'ଟି କ'ଣ ଓ କେଉଁଥିପାଇଁ ଅଭିପ୍ରେତ ? ପଞ୍ଚମ ଦଶକର ମଧ୍ୟଭାଗ, ଷଷ୍ଠ ଦଶକ ଓ ତତ୍‌ପରବର୍ତ୍ତୀ ସମୟରେ ଆମେରିକା, ୟୁରୋପ ଓ ବ୍ରିଟେନ୍‌ରେ ରଚିତ ନୂତନ ସାହିତ୍ୟ-ଧାରାଟିକୁ ମୋଟାମୋଟି ଭାବେ 'ଉତ୍ତର-ଆଧୁନିକତା' ( Post Modernism) ନାମରେ ଅଭିହିତ କରାଯାଉଛି ।'ଉତ୍ତର-ଆଧୁନିକତା' ହେଉଛି ଯୁଦ୍ଧୋତ୍ତର ସାହିତ୍ୟର ଏକ ବିକଳ୍ପ ଶିରୋନାମା । ଯେଉଁମାନେ ଏଇ ପରିଭାଷାର ପ୍ରବର୍ତ୍ତକ, ସେମାନଙ୍କ ମତରେ ଯୁଦ୍ଧୋତ୍ତର ସାହିତ୍ୟ ହିଁ ଯଥାର୍ଥରେ 'ଉତ୍ତର-ଆଧୁନିକତା', କାରଣ ଏହା ଉଲ୍ଲେଖନୀୟ ଏକ ନବଚେତନାର ଦ୍ୟୋତକ ଏବଂ ପୂର୍ବବର୍ତ୍ତୀ

'ଆଧୁନକତା' ଠାରୁ ଏହାର ଭିନ୍ନତା ଅତ୍ୟନ୍ତ ସୁସ୍ପଷ୍ଟ । ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ୍ ଓ ଲାଟିନ୍ ଆମେରିକୀୟ ସାହିତ୍ୟ ଯଦିଓ 'ଉତ୍ତର-ଆଧୁନିକତା'ର ସ୍ଫୁରଣ-ଭୂମି, ତଥାପି ଲାଟିନ୍-ଆମେରିକା ହିଁ ଯଥାର୍ଥରେ ଏହାର ଏକୁଡ଼ିଶାଳ । ଯେଉଁଠି, ଯେଉଁ ଭାଷା ବା ଯେଉଁ ସାହିତ୍ୟରେ 'ଉତ୍ତର-ଆଧୁନିକତା' ଭୂମିଷ୍ଠ ହେଉନା ନାହିଁକି, ଏହା ଆଜି ବିଶ୍ୱ ପ୍ରସାରୀ ଓ ସାହିତ୍ୟର ସବୁ ବିଭାବରେ ଏହାର ସ୍ୱର କ୍ରମଶଃ ଦୃଢ଼ରୁ ଦୃଢ଼ତର ହୋଇଛି । 'ଉତ୍ତର-ଆଧୁନିକତା'ର ଜଣେ ପ୍ରମୁଖ ରୂପକାର ମାଲକମ୍ ବ୍ରାଡ଼ବରି (Malcolm Bradbury ) କହନ୍ତି : "Since world war-II, the novel does indeed seem to have become × × the exemplary literary object displacing the poem. Most post-war writers of any major significance are all novelists not only in America but also in England, France, Germany and Latin America. " ଅର୍ଥାତ୍ ଉତ୍ତର ଆଧୁନିକତା ଏକ ଆନ୍ଦୋଳନ ଭାବେ ପାଶ୍ଚାତ୍ୟ ଜଗତରେ ମୁଖ୍ୟତଃ ଉପନ୍ୟାସରୁ ହିଁ ଆରମ୍ଭ ହୋଇଛି ଓ ସମାନ୍ତରାଳଭାବେ ଏହା କବିତା ଓ ନାଟକରେ ନିଜର ପ୍ରତିଷ୍ଠା ଜାହିର୍ କରିଛି । ଖୁବ୍ ସମ୍ଭବତଃ ଯୁଦ୍ଧୋତ୍ତର କାଳରେ ସୃଷ୍ଟ ଚେତନାର ସାହିତ୍ୟକୁ ଗୋଟିଏ ଶୀର୍ଷକ ତଳେ କେନ୍ଦ୍ରୀକୃତ କରିବା ପାଇଁ ସମାଲୋଚକ ଲେସ୍‌ଲି ଫିଡ୍‌ଲର୍ ( ଆମେରିକା ) ସର୍ବ ପ୍ରଥମେ ' ଉତ୍ତର-ଆଧୁନିକ'( Post-modern) ପରିଭାଷାର ପ୍ରଗଠନ କରିଥିଲେ । ତାଙ୍କ ଦ୍ୱାରା ରଚିତ 'କ୍ରସ ଦି ବର୍ଡ଼ର-କ୍ଲୋଜ୍ ଦ୍ୟାଟ୍ ଗ୍ୟାପ୍ : ପୋଷ୍ଟମଡ଼ର୍ନିଜିମ୍' ଶୀର୍ଷକ ନିବନ୍ଧ ହିଁ ହେଉଛି ଖୁବ୍ ସମ୍ଭବତଃ 'ଉତ୍ତର-ଆଧୁନିକତା' ର ସର୍ବପ୍ରଥମ ନାନ୍ଦୀମୁଖ ।

ପ୍ରଚଳିତ ସାହିତ୍ୟଧାରାଟି ପ୍ରତି ଉତ୍ତରସୂରୀ ସ୍ରଷ୍ଟାଟିଏ ଯେତେବେଳେ ବିମୁଖ ହୋଇ ଉଠେ ଓ ସାହିତ୍ୟରେ ସେ ଯାବତ୍ ଅନୁସୃତ ଢ଼ାଞ୍ଚାରୁ ବାଟଭାଙ୍ଗି ନୂଆ ବାଟରେ ଯିବାର ଉପକ୍ରମ ଆରମ୍ଭ କରେ, ସେତେବେଳେ ସାହିତ୍ୟରେ ବ୍ୟତିକ୍ରମର ନୂଆ ଯୁଗଟିଏ ସୃଷ୍ଟି ହୁଏ । ଏହିପରି ଏକ ଉଦ୍ୟମରୁ 'ଉତ୍ତର-ଆଧୁନିକତା' ର ଉଦ୍‌ଭବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପାଠକ ପାଖରେ ତା' ସମୟର କଳା ବା ସାହିତ୍ୟ ଯେତେବେଳେ ଅପହଞ୍ଚ ହୋଇ ଉଠେ, ସେତିକିବେଳେ ଯୋଗସୂତ୍ରର ତାଡ଼ା ମାଧ୍ୟମଟି ହୋଇ ନୂତନତାର ରାହାଟିଏ କାହାରି ନା' କାହାରି କଲମ ମୁନରେ ସବାର୍ ହୋଇ ଜନ୍ମନିଏ । ଏତିକିବେଳେ ତାତ୍‌କାଳିକ ସାହିତ୍ୟ ଏପରି ଏକ ସ୍ଥିତିରେ ପହଞ୍ଚିଥାଏ ଯେ, କଳା ଓ 'ମନୋରଞ୍ଜନ' ମଧ୍ୟରେ ବ୍ୟବଧାନ ଯଥେଷ୍ଟ ବଢ଼ିଯାଇଥାଏ । ସଦ୍ୟ ଜନ୍ମନେଇଥିବା ନୂତନ-ସ୍ୱରଟି ନିଜର ଅକୃତ୍ରିମ ଆନ୍ତରିକତା ଦ୍ୱାରା ଏଇ ବ୍ୟବଧାନଟିକୁ କମାଇବାର ସଂକଳ୍ପ ନିଏ । 'ଉତ୍ତର-ଆଧୁନିକତା' ତା'ର ଆବିର୍ଭାବ କାଳରେ ସାହିତ୍ୟରେ ଠିକ୍ ଏଇଭଳି ଏକ ଭୂମିକା ତୁଲାଇବାର ଦାୟିତ୍ୱ ଆପଣାର କାନ୍ଧକୁ ନେଇଛି । ଆଧୁନିକତାର ନହୁନାଡ଼ ସମାଜର ତଥାକଥିତ କର୍ଣ୍ଣଧାରମାନଙ୍କ ରକ୍ଷଣଶୀଳ ସଂସ୍କୃତି ସହ

ଛନ୍ଦାଛନ୍ଦି ହୋଇ ରହିଥିବାବେଳେ 'ଉତ୍ତର-ଆଧୁନିକତା' ହୋଇଛି ଏଥିରୁ ନିଷ୍କୃତି ପାଇବାର ଏକ ଅକୃତ୍ରିମ ପ୍ରାର୍ଥନା ।

'ଉତ୍ତର-ଆଧୁନିକତା' ର ବୈଶିଷ୍ଟ୍ୟ ଓ ବିଭବକୁ ସଂକ୍ଷେପରେ ନିମ୍ନ ମତେ ଆଲୋଚନା କରାଯାଇପାରେ –

(୧)'ଉତ୍ତର-ଆଧୁନିକତା' ଅଭିଜାତ-ଗୋଷ୍ଠୀ କୈନ୍ଦ୍ରିକ 'ଆଧୁନିକତା'ରୁ ମୁକ୍ତ ଏକ ଜନମୁଖୀ ସର୍ବନୂତନ (Fresh) ସାହିତ୍ୟ-ଆନ୍ଦୋଳନ । ସାହିତ୍ୟର ଅନ୍ୟ ସର୍ଜନାତ୍ମକ ନୂଆ ଆନ୍ଦୋଳନ ପରି ରଂଗଢ଼ଂଗରେ ଏହା କିଛିଟା ପ୍ରାକୃତ (barbarus) ଓ ଲୌକିକ (Vulgus ) । ଆଧୁନିକ ସାହିତ୍ୟରେ ଲୋକ ଉପାଦାନ ରହିଥିଲେ ବି ଏହାର ମାତ୍ରା ନଗଣ୍ୟ ଓ ବହୁସ୍ଥଳରେ ଉପଲକ୍ଷ୍ୟ ମାତ୍ର ! 'ଉତ୍ତର -ଆଧୁନିକ' ଦାବି କରେ :- ' I am a man of unclean lips in the midst of a people of unclean lips.'

(୨) 'ଆଧୁନିକତା'ର ଫାସିବାଦୀ ଲକ୍ଷଣ 'ଉତ୍ତର -ଆଧୁନିକତା'ରେ ଅନୁପସ୍ଥିତ, ବରଂ ଅନ୍ୟପକ୍ଷରେ ଯୁଦ୍ଧୋତ୍ତର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସ୍ଥିତାବସ୍ଥାରୁ ଏହା ହେଉଛି ଏକ ସମୟୋଚିତ ନିସ୍ତାର ।

(୩) ଆଙ୍ଗିକ ଓ ଆତ୍ମିକ- ଉଭୟରେ ଜଟିଳତା ଓ କ୍ଲିଷ୍ଟତାର ପରିହାର ଏହାର ବୈଶିଷ୍ଟ୍ୟ । ଗଠନରୀତି ମୁକ୍ତ ଓ ଉଦାର । ଆଧୁନିକତମ ବୁର୍ଜୁୟାକୈନ୍ଦ୍ରିକ ସୀମିତ ବାସ୍ତବତାଠାରୁ ଏହାର ସ୍ଥିତି ଉର୍ଦ୍ଧ୍ୱରେ ଓ ବାସ୍ତବତା ସ୍ୱଚ୍ଛନ୍ଦ । ପ୍ରାଚୀନ, ସମକାଳୀନ, ବିଶେଷକରି ଲୋକ ସଂସ୍କୃତି ଓ ସାହିତ୍ୟରୁ ପ୍ରାସଙ୍ଗିକ ଉପାଦାନମାନ ଗ୍ରହଣ କରି ଏହା ନିଜକୁ ପୁଷ୍ଟ ଓ ପୁଷ୍କଳ କରେ ।

(୪) ସାହିତ୍ୟକୁ 'ସମାଲୋଚନା-ଶିଳ୍ପ' (Criticism Industry ) ଓ ବୁଦ୍ଧିଜୀବୀର ହାରେମ୍‌ରେ ପରିଣତ କରିଥିବା ଏଲିୟଟ୍, ଜୟସ୍ ଓ ଫାକ୍‌ନର ପ୍ରବର୍ତ୍ତିତ 'ଆଧୁନିକତା'ର ଏହା ପରିପନ୍ଥୀ । ଫିଡ଼୍‌ଲର୍‌ଙ୍କ ଭାଷାରେ, 'ଉତ୍ତର-ଆଧୁନିକତା' ହେଉଛି ମୂଳତଃ କଳାର ଏକ 'ଅଣ-ଏଲିୟଟୀ କରଣ' ଅଭିଯାନ ।

(୫) ମାତ୍ରାଧିକ ପରୀକ୍ଷାମୂଳକତା, ଉଦ୍ଦେଶ୍ୟମୂଳକ ଗୀତିହୀନତା, ଭାବ-ଦୁରୂହତା ଓ ଅନବୋଧତାକୁ 'ଉତ୍ତର-ଆଧୁନିକତା' ସର୍ବାନ୍ତଃକରଣରେ ନିରୁତ୍ସାହିତ କରେ । 'ପାଠ୍ୟ' ( Text) ରେ ଲାଳିତ୍ୟ ଆଣିବା ପାଇଁ ଗଦ୍ୟରେ କରେ 'ସଂଗୀତ'ର ଯଥୋଚିତ ସଂଯୋଜନ ।

(୬) 'ମିଥ୍' ପ୍ରୟୋଗ 'ଆଧୁନିକ' ଓ 'ଉତ୍ତର ଆଧୁନିକ'- ଉଭୟ ସାହିତ୍ୟର ଏକ ସାଧାରଣ ବୈଶିଷ୍ଟ୍ୟ ହୋଇଥିଲେ ବି ଉଭୟର ପ୍ରୟୋଗ ରୀତିରେ ଉଲ୍ଲେଖନୀୟ ପ୍ରଭେଦ ପରିଦୃଷ୍ଟ । 'ବ୍ୟକ୍ତିକତା'ର 'ନୈର୍ବ୍ୟକ୍ତିକରଣ', ସମକାଳୀନ ପ୍ରାସଂଗିକତାର ସମଯୋଜନ,

ଇତିହାସ ସୃଷ୍ଟ ' ଅନିଶ୍ଚୟତା' ଅତିକ୍ରମଣ ଉଦ୍ଦେଶ୍ୟରେ 'ମିଥ୍' ଏକ 'ମାର୍ଗ' ଭାବେ ଆଧୁନିକ ସାହିତ୍ୟରେ ବ୍ୟବହୃତ ହୋଇଥିବାବେଳେ 'ଉତ୍ତର-ଆଧୁନିକ'ଙ୍କ ପାଇଁ 'ମିଥ୍' କେବଳ ଏକ ବାହ୍ୟାଚାର ନୁହେଁ, ଅଧିକନ୍ତୁ ଭାବପ୍ରକାଶର ଏକ ଅନ୍ତରୀଣ ଉପଚାର । ' Myth is not a passing reference in "Uttar-Adhunik" poetry. It is a meaningful unit of the poetic text.' (ଉତ୍ତର-ଆଧୁନିକ ବଙ୍ଗଳା କବିତା: ଅଞ୍ଜନ ସେନ୍ ) । ରୋଲାଣ୍ଡ ବର୍ଥସ୍ କହନ୍ତି : 'ଆଧୁନିକମାନେ 'ମିଥ୍' କୁ ଯେଉଁ ଅର୍ଥରେ ବୁଝନ୍ତି ଓ ପ୍ରୟୋଗ କରନ୍ତି, ସେଭଳି ପ୍ରୟୋଗର ଦିନ ସରିଯାଇଛି । ସାହିତ୍ୟରେ ଏମାନଙ୍କ ' ମିଥ୍-ଥେରାପି' ସବୁ ଦୃଷ୍ଟିରୁ ଆଜି ଅଚଳ । ରାମ ବା ସୀତା, ଉଲିସେସ୍ ବା ହେଲେନ୍ ପରିବର୍ତ୍ତେ ଲୁଇସ୍, ଆର୍ମଷ୍ଟ୍ରଙ୍ଗ୍, କେନେଡ଼ି, ଇନ୍ଦିରା, ବିୟନ୍ତ ବା ବିଲ୍ଲା ଉତ୍ତର-ଆଧୁନିକଙ୍କ ହାତରେ ନୂଆ ମିଥ୍ ହୋଇ ଗଢ଼ି ଉଠିଛନ୍ତି ।

(୭) 'ମିଥ୍' ପରି ଲାଳିକା (Parody) ଓ ଶ୍ଳେଷ (Irony) ପ୍ରୟୋଗରେ 'ଆଧୁନିକତା' ଓ 'ଉତ୍ତର-ଆଧୁନିକତା' ମଧ୍ୟରେ ଯଥେଷ୍ଟ ଫରକ୍ ଦେଖିବାକୁ ମିଳେ । ଆଧୁନିକଙ୍କ ତୁଳନାରେ ' ଉତ୍ତର-ଆଧୁନିକ,ଙ୍କ ଶ୍ଳେଷ ପ୍ରୟୋଗ ଅପେକ୍ଷାକୃତ ଅକୃତ୍ରିମ, ତୀକ୍ଷ୍ଣ ଓ ଶାଣିତ । ପ୍ରାଞ୍ଜଳ ଧାରଣା ପାଇଁ ଔପନ୍ୟାସିକ ଡ଼ୋନାଲ୍ଡ ବାର୍ଥେଲ୍‌ମେ (ଆମେରିକା )ଙ୍କ 'ସ୍ନୋ ହ୍ୱାଇଟ୍' ଉପନ୍ୟାସରୁ ଉଦ୍ଧୃତିଟିଏ ନିଆଯାଉ । ନିଜ ପିତାଙ୍କ ସଂପର୍କରେ କାବ୍ୟ ନାୟକର ଏ ମନ୍ତବ୍ୟ : " Our father was a man about whom nothing was known. Nothing is known about him still ×× he was not very interesting. A tree is more interesting. A suitcase is more interesting. A canned good is more interesting. " ଆତ୍ମ-ଶ୍ଳେଷ ଓ ଆତ୍ମ-ବିଦ୍ରୂପ ଭିତରେ ଅଶ୍ୱସ୍ତି, ଅସହାୟତା, ଆତ୍ମ-ଲାଞ୍ଛନା ଓ କାରୁଣ୍ୟର କି ଚମତ୍କାର ବ୍ୟଞ୍ଜନା ! ଉତ୍ତର-ଆଧୁନିକର ପରିଭାଷାରେ ଏହାକୁ କୁହାଯାଉଛି 'Black Humour'ବା 'କଳା-ହାସ୍ୟ' ।

(୮) 'ଉତ୍ତର-ଆଧୁନିକ 'ର ପ୍ରଣେତାମାନେ ଜାଣନ୍ତି ଯେ, ଜୀବନ ଖୋଦ୍ ବହୁ ଭ୍ରାନ୍ତିରେ ପୂର୍ଣ୍ଣ । ତେଣୁ ଆଧୁନିକଙ୍କ ଜୀବନର ଭ୍ରାନ୍ତି ଆଣୁଥିବା ସାହିତ୍ୟ ସୃଷ୍ଟିରେ ଏମାନେ ଅନାଗ୍ରହ ପ୍ରକାଶ କରି ଆତ୍ମ-ପ୍ରତାରଣାଠାରୁ ନିଜକୁ ଦୂରେଇ ରଖନ୍ତି । ସାହିତ୍ୟ ଏମାନଙ୍କ ପାଇଁ ଜୀବନର ସବୁ ଦୁଃଖ ଓ ଅବସାଦକୁ ପାଶୋରିଦେବାର ଏକ ହାଲୁକା ନିଶା ନୁହେଁ ; ବରଂ ସବୁ ନିଶାକୁ ପାଣି କରି ପ୍ରାଣଶକ୍ତିକୁ ଜାଗ୍ରତ କରାଇବାର ଏକ ଅମୋଘ ମନ୍ତ୍ର ।

(୯) 'ଉତ୍ତର-ଆଧୁନିକ' ର ଜଗତଟି ଯଦିଓ ସଂପର୍କଶୂନ୍ୟତା, ଅର୍ଥହୀନତା ଓ

ବର୍ତ୍ତମାନ ବୈଷୟିକତାରେ ଅଶ୍ୱସ୍ତିକର, ତଥାପି ସେଇ ଖଣ୍ଡିତ-ଇତିହାସ ଭିତରୁ ଏମାନେ ଖୋଜନ୍ତି ଏକ ଅଖଣ୍ଡ-ଐତିହାସିକ ସଂପର୍କ ଶୂନ୍ୟତା ଭିତରେ ସଂପର୍କଟିଏ ଏବଂ ଅର୍ଥହୀନତା ଭିତରେ ଅର୍ଥଟିଏ ଗଢ଼ିତୋଳିବାକୁ ପ୍ରକାଶ କରିନ୍ତି ସଯତ୍ନ ତତ୍ପରତା , ପ୍ରୟାସ କରନ୍ତି ଉଦ୍ଧାର କରିବାକୁ ଭୁଶୁଡ଼ି ପଡୁଥିବା ମୂଲ୍ୟବୋଧ ଓ ଭ୍ରଷ୍ଟ-ବିବେକର ।

(୧୦) ସ୍ୱପ୍ନ, ଅଲୌକିକତା ଓ 'ଫାଂଟାସି ' ଭିତରେ 'ଉତ୍ତର-ଆଧୁନିକତା' ଆପଣାର ମୂଳ ଖୋଜେ । ଏକ ପଟେ ଏହା ଜୀବନର ବିଭୀଷିକା ବିପକ୍ଷରେ ମଣିଷକୁ ଜୁ' ଦେଇ ଠିଆ କରାଏ ଓ ଅନ୍ୟପଟେ ସେଇ ବିଭୀଷିକାର ଉଗ୍ର ବାସ୍ତବତାକୁ ସହ୍ୟ କରିବା ନିମିତ୍ତ 'ଫାଂଟାସି' ଦେଇ ତାକୁ ସାମୟିକ ନିଶାସକ୍ତ କରାଏ । ଖୋଜେ ମୂଲ୍ୟହୀନ ପ୍ରାତ୍ୟହିକତାରୁ ନିସ୍ତାରର ମାର୍ଗ । ତନ୍ତ୍ର ଓ ମ୍ୟାଜିକ୍‌ରେ ଖୋଜେ ଉତ୍ତରିତ ଏକ ବାସ୍ତବତା (Transcendental Reality )। ଏଣୁ 'ଉତ୍ତର-ଆଧୁନିକ' ସାହିତ୍ୟଧାରାକୁ 'ଉତ୍ତୀର୍ଣ୍ଣ-ବାସ୍ତବବାଦୀ ଧାରା' (Metaphysical trend) କୁହାଯିବା ଏଇ ଦୃଷ୍ଟିରୁ ସମୀଚୀନ । ଯଥାର୍ଥରେ କୁହାଯାଇଛି. " Post-Modernism is a rare blend of fantacy and fact ( or quasi-fact), metaphysics and realism, remoteness and immdediacy."

ବର୍ଗିସ୍ (Jorge Luis Borges) ଙ୍କ ଲେଖା ପଢ଼ିସାରି ଜଣେ ପାଠକ ଯେଉଁ ପ୍ରତିକ୍ରିୟା ପ୍ରକାଶ କରିଥିଲେ, ଟନିଟନର୍ ତାଙ୍କର ସମାଲୋଚନା ଗ୍ରନ୍ଥ 'City of Words' ରେ ଏହିପରି ତା'ର ଉଦ୍ଧାର କରିଛନ୍ତି : "From strange depths in the stories we are suddenly brought back to the surface and do not know quite what it is we have read. It may be a dream or a game or a fantancy, but then why did it move us so much ?" 'ଉତ୍ତର-ଆଧୁନିକ' ସାହିତ୍ୟ ପାଠକର ଚିତ୍ତ ଓ ଚେତନାକୁ କିପରି ଗଭୀର ଭାବେ ଆଲୋଡ଼ିତ କରୁଛି, ତାହା ଏଥିରୁ ଅନନୁମିତ ରହେ ନାହିଁ । ନିଜକୁ ସମ୍ପୃକ୍ତ କରାଇ ନ ପାରି 'ଆଧୁନିକ- ସାହିତ୍ୟ' ଆଡୁ ବହୁ ସଚେତନ ପାଠକ ମୁହଁ ଫେରାଇ ଚାଲିଯାଉଥିବାବେଳେ 'ଉତ୍ତର-ଆଧୁନିକତା' ସୌହାର୍ଦ୍ଦ୍ୟର ଯେଉଁ ଅନ୍ତରଙ୍ଗ ବାତାବରଣଟି ଗଢ଼ି ତୋଳେ, ତାହା ପୁଣି ସାହିତ୍ୟ ଭିତରକୁ ବାହୁଡ଼ି ଆସିବାକୁ ପାଠକଙ୍କ ମନରେ ପୁନଃଚିନ୍ତନର ସ୍ରୋତକୁ ତୀବ୍ର କରେ ।

(୧୧) 'ଉତ୍ତର-ଆଧୁନିକ' ସାହିତ୍ୟ ଏକ ନିଃସଂଗ ପାଠ୍ୟ (Isolated Text) ଭାବେ କେବଳ ଲେଖକଙ୍କଠି ସରିଯାଏ ନାହିଁ । ଲେଖକ, ଚରିତ୍ର, କଥାବସ୍ତୁ ଓ ପାଠକ- ସମସ୍ତେ ହୁଅନ୍ତି ଏଇ 'ପାଠ୍ୟ'ର ଊଣା ଅଧିକ ଅଂଶୀଦାର । ଏହାରି ଭିତରେ ପ୍ରତ୍ୟେକ ଯେ ଯାହାର ଅନୁଭୂତିକୁ ଭୋଗନ୍ତି ଓ ଯେଝା ଯେଝାର ପ୍ରତ୍ୟାଶାକୁ ଚରିତାର୍ଥ କରନ୍ତି । ଏପରି ଅଭିନବତା 'ଆଧୁନିକ' ପାଠ୍ୟରେ କ୍ୱଚିତ୍ ସୁଲଭ ହୁଏ ।

(୧୨) ଯାହା ପୂବରୁ କୁହାଯାଇଛି : ଉତ୍ତର-ଆଧୁନିକ ତା' ନିଜ ଗୁଣରେ 'ଅଭିଜାତ (Elite) ଓ 'ଅଣ-ଅଭିଜାତ (Folk) ସାହିତ୍ୟ ମଧ୍ୟରେ ଥିବା ତଫାତ୍‌କୁ ଯୋଡ଼ି ଦିଏ। 'ଉତ୍ତର-ଆଧୁନିକ' ଲେଖାରୁ 'ବୌଦ୍ଧିକ' ଓ 'ଅଣ-ବୌଦ୍ଧିକ' ଉଭୟ ଶ୍ରେଣୀର ପାଠକ ତୁଲ୍ୟ ନହେଲେ ବି ନିଜର ସାମର୍ଥ୍ୟ ଅନୁରୂପ ଆନନ୍ଦ ଲାଭ ପାଇଁ ଉପଯୁକ୍ତ ପରିସର ପାଆନ୍ତି। ରଙ୍ଗମଞ୍ଚ ଓ ଦର୍ଶକ, ଅଭିନୟ ଓ ଅଭିନୟ-ଭୋକ୍ତାଙ୍କ ଭିତରେ ଥିବା ଫାଙ୍କ ଅନନ୍ୟପୂର୍ବ ଏକ କୌଶଳରେ ବୁଜିଯାଏ।

(୧୩) କାହାଣୀକୁ ଭାଙ୍ଗିଦେଇ ଉତ୍ତର-ଆଧୁନିକ ନୂଆକାହାଣୀ ବା 'କାହାଣୀହୀନ କାହାଣୀ' ର ପେଡ଼ିଟିଏ ତିଆରି କରେ। ସୃଷ୍ଟି କରେ କାହାଣୀରୁ ଉପକାହାଣୀ, ଅନୁକାହାଣୀ; କବିତାରୁ 'ଉପ-କବିତା,'ଅନୁ-କବିତା'। କର୍ଟ ଭନେଗଟ୍ ଜୁନିୟର୍‌ଙ୍କ ଉପନ୍ୟାସ 'ସ୍ଲଟର୍ ହାଉସ୍ ଫାଇଭ୍' ହେଉଛି ଏହାର ଏକ ସଫଳ ଉଦାହରଣ। ତଥ୍ୟଗତ ବିବରଣୀ ଓ ବୈଜ୍ଞାନିକ ବୟନ ଓ ମନନ ଦେଇ 'ଉତ୍ତର-ଆଧୁନିକ' ସାହିତ୍ୟରେ ସୃଷ୍ଟିକରେ ନୂଆ ସ୍ୱାଦ, ନୂଆ ଚମକ। ଏହି କାରଣରୁ ସେ ଧରାବନ୍ଧା ଭାଷାର ବିଗଠନ (Deconstruction) କରି 'ଭାଷା'ରୁ ନିଷ୍ପ୍ରୟୋଜନୀୟ ଆଳଂକାରିତାର ଚୂନ ପ୍ରଲେପ ଛଡ଼ାଏ ଓ ' ଶବ୍ଦ' ଓ 'ରୂଢ଼ି' ଭିତରେ ଅନାବିଷ୍କୃତ ଅର୍ଥ ଓ ପ୍ରତ୍ୟୟର ସତର୍କ ସଂଧାନ କରେ। ଭାଷାରୁ ଆନୁଷ୍ଠାନିକତା ( Formality) କୁ ଅପସାରିତ କରି ଅଭିଷେକ କରେ ସ୍ୱାଭାବିକତାର ଲୋକ (Folk) ଠାଣି।

(୧୪) ସ୍ଥିତାବସ୍ଥାରୁ ମୁକ୍ତି ଓ ମାନବ-ଚେତନାର କ୍ରମିକ ରୂପାନ୍ତର ପ୍ରକ୍ରିୟାରେ 'ଉତ୍ତର-ଆଧୁନିକ' ନିଜକୁ ଭାଗିଦାର କରେ। ଗଡ୍‌ଡ଼ାଳିକାମୟ ଧର୍ମ ଓ ଦର୍ଶନ ବିବର୍ତ୍ତିତ ହୁଏ ନିତ୍ୟନୂତନ ଆଧ୍ୟାତ୍ମିକତାରେ। 'ମଣିଷ ଇଚ୍ଛାକୃତ ଭାବେ ତା'ର ଦୁର୍ଭାଗ୍ୟର କାରଣ ହୋଇଛି ଓ ଚାହିଁଲେ ଏଥିରୁ ମୁକୁଳି ଯାଇ ପାରିବ' - ସାହିତ୍ୟ ଜରିଆରେ ଏଇ ଅଭୟବାଣୀ ପ୍ରଦାନ କରେ ଉତ୍ତର-ଆଧୁନିକ।

(୧୫) 'ଉତ୍ତର-ଆଧୁନିକତା' କେବଳ ଭାଷା ନୁହେଁ, ଗତାନୁଗତିକ ଶଗଡ଼ ଗୁଳାରୁ ମୁକ୍ତି ଦିଏ 'ଅନୁଭୂତି'କୁ। କେନ୍ କେସି (Ken Kesy) କହନ୍ତି : "We are, most of the time, trapped in 'imposed' language, versions of reality, and roles of existence, are fixed in rigid structures. It is healthy therefore to stepout of all this into some kind of free space, into the Edge City." ବାସ୍ତବତାର ଚିରାଚରିତ ଚୌହଦୀ ଭିତରୁ ଖସୁ ଖସୁ 'ଉତ୍ତର-ଆଧୁନିକ' ପହଞ୍ଚିଯାଏ ଏକ ' ଅନ୍ୟ-ବାସ୍ତବତା' ରେ , ଅସ୍ତିତ୍ୱରେ, ଆହୁରି ଶ୍ରେୟସ୍କର ମୁକ୍ତ-ମୁଳକରେ।

' ଅସ୍ତିତ୍ୱ' ର ଏଇ ସ୍ଥିତିରେ ତା'ର ସ୍ୱର 'ରହସ୍ୟାଚ୍ଛନ୍ନ' ଶୁଭେ । ଏଣୁ ଏକ ନବ-ରହସ୍ୟବାଦ (Neo-mysticism) ହୋଇ ଉଠେ 'ଉତ୍ତର-ଆଧୁନିକତା'ର ଭିନ୍ନ ପରିଚୟ ।

(୧୬) 'ଉତ୍ତର-ଆଧୁନିକତା' ତା'ର କଳା ଓ ସାହିତ୍ୟରେ 'ଦୈହିକତା' ବା 'ପର୍ଣ୍ଣଗ୍ରାଫି'ର ସାହସିକ ପ୍ରୟୋଗ କରେ । ଅବଶ୍ୟ ଏ କ୍ଷେତ୍ରରେ ସଂପୃକ୍ତ ଲେଖକ ଯଥେଷ୍ଟ ସାବଧାନତା ଅବଲମ୍ବନ ନ କଲେ ବା ଯଥେଷ୍ଟ କୁଶଳୀ ଓ ଶକ୍ତିଶାଳୀ ହୋଇ ନଥିଲେ ସାହିତ୍ୟରେ ' ପପ୍ ଆର୍ଟ ଓ ପର୍ଣ୍ଣଗ୍ରାଫି 'ର ବିନ୍ୟାସ ବିପଜ୍ଜନକ ହୋଇ ଉଠି ଅଶ୍ଳୀଳତାର ଷଡ଼ଯନ୍ତ୍ର ତିଆରି କରେ । ସୌଭାଗ୍ୟର କଥା ଯେ, 'ଉତ୍ତର-ଆଧୁନିକ' କାଳର ବହୁ ଲେଖକ ସେମାନଙ୍କ ଲେଖାରେ ପର୍ଣ୍ଣଗ୍ରାଫିର ସଫଳ ପ୍ରୟୋଗ କରି ସ୍ୱ-ସୃଷ୍ଟିକୁ ରୁଚିକର ଓ କଳାତ୍ମକ କରିପାରିଛନ୍ତି ।

'ପର୍ଣ୍ଣଗ୍ରାଫି'ର ପ୍ରୟୋଗ ଓ ପରୀକ୍ଷାବେଳେ ଲେଖକଙ୍କୁ ଏକ ଅଭିନବ କୌଶଳ ଅବଲମ୍ବନ କରିବାକୁ ପଡ଼େ । ବିକାରଗ୍ରସ୍ତ ନାୟକ ବା ନାୟିକା ଜଣେ କଳ୍ପିତ ମନୋବିଜ୍ଞାନୀଙ୍କୁ ନିଜ ବିକାରଗ୍ରସ୍ତ ଭାବନା ଓ ଜୀବନର ପତନ ସଂପର୍କରେ ଯେଉଁ ସ୍ୱୀକାରୋକ୍ତି ଶୁଣାନ୍ତି, ତାହାହିଁ ହୁଏ କାହାଣୀର କଥାବସ୍ତୁ । ଅଭିନବତ୍ୱ ହେଉଛି, ବୟାନ ହେଉଥିବା ବିକାରଗ୍ରସ୍ତ ଚରିତ୍ରଟି କଥାବସ୍ତୁର ପରିଣତିରେ ଆଉ ବିକାରଗ୍ରସ୍ତ ହୋଇ ରହେନାହିଁ । କଥାବସ୍ତୁ ସରିବା ବେଳକୁ ତା'ର ମନସ୍ତାତ୍ତ୍ୱିକ ଭାରସାମ୍ୟହୀନତାର ଚୂଡ଼ାନ୍ତ ଉପଶମ ହୋଇସାରିଥାଏ । ପତନର ପରାଗ କଟିଯାଇ ମୁକ୍ତିର ଖରାରେ ଫୁଲ ଖେଳାଉଥାଏ ସଦ୍ୟ ଅର୍ଜିତ ଏକ ଜୀବନ-ମୂଲ୍ୟ । ଭ୍ଲାଡ଼ିମିର ନବକୋଭ୍‌ଙ୍କ 'ଲଲିତା'ର ନାୟକ ହମ୍ୱର୍ଟ ହେଉଛି ଖୁବ୍ ସମ୍ଭବତଃ 'ଉତ୍ତର-ଆଧୁନିକ' ଉପନ୍ୟାସରେ ସର୍ବପ୍ରଥମ ବିକାରଗ୍ରସ୍ତ ଚରିତ୍ର । କିଶୋରୀ ଝିଅକୁ ଉପଭୋଗ କରି ନିଜ ବିକାରର ପ୍ରଶମନ କରୁଥିବା ହମ୍ୱର୍ଟର ମାନସିକ ରୂପାନ୍ତରର ଚିତ୍ର ଉପନ୍ୟାସଟିରେ ଫଳପ୍ରଦ ଭାବେ ଉତ୍‌କୀର୍ଣ୍ଣ । ଦେହ ବର୍ଣ୍ଣନାର ପ୍ରାଚୁର୍ଯ୍ୟ ଓ ପ୍ରାଧାନ୍ୟ ସତ୍ତ୍ୱେ ବି ନବକୋଭଙ୍କ ଲେଖନୀୟ ଶକ୍ତି ଓ ସାମର୍ଥ୍ୟ 'ଲଲିତା'ର ପାଠକଙ୍କୁ ଦେହ-ଚେତନାର ଉର୍ଦ୍ଧ୍ୱରେ ଏକ ଉତ୍ତୀର୍ଣ୍ଣ ଅନୁଭୂତିରେ ଉପନୀତ କରାଏ ।

'ଲଲିତା'ର ମୁଖବନ୍ଧରେ ଜନ୍ ରେ' ନାମକ ଜଣେ କାଳ୍ପନିକ ମନୋବିଜ୍ଞାନୀଙ୍କ ତୁଣ୍ଡରେ ନବକୋଭ ପାଠକଙ୍କ ପାଇଁ ଉପନ୍ୟାସର ଯାଥାର୍ଥ୍ୟ ସମ୍ୱଧରେ କହିବାକୁ ଯାଇ ଲେଖିଛନ୍ତି : ''ବେମୁରବା ପିଲା,ଆତ୍ମକୈନ୍ଦ୍ରିକ ମାଆ ଓ ଉପନ୍ୟାସରେ ପ୍ରଦତ୍ତ ଅନ୍ୟ ଆନୁସଙ୍ଗିକ ବିଷୟ ଗୁଡ଼ିକ ଆମକୁ ଆମ ସମକାଳୀନ ସମାଜର ମାରାତ୍ମକ ଧାରାଟି ସଂପର୍କରେ ସଚେତନ ଓ ସତର୍କ କରାଇ ଦିଏ ଏବଂ ପରିଣାମରେ ବାପା ମାଆ ଓ ଶିକ୍ଷାଦାତାମାନେ ନିରାପଦ ପରିବେଶରେ ଏକ ଉତ୍ତମ-ପୀଢ଼ି ଗଠନର ଦାୟିତ୍ୱକୁ କିପରି ଅଧିକ ସଂକଳ୍ପବଦ୍ଧ

ଭାବେ ଭୁଲାଇପାରିବେ, 'ଲଳିତା' ସେଇ ବାଟ ଦେଖାଏ । '' ଉତ୍ତର-ଆଧୁନିକ ସାହିତ୍ୟରେ ଫର୍ଣ୍ଣଗ୍ରାଫିର ପ୍ରୟୋଗ ଯେ ଏକ ତୁଚ୍ଛା ଫେସନ ନୁହେଁ; ଜୀବନର ସାଂପ୍ରତିକତାକୁ ବୁଝିବାର ଏକ ମାର୍ଗ -ଉକ୍ତିଟିରୁ ଏହା ଅସ୍ପଷ୍ଟ ରହେ ନାହିଁ ।

(୧୭) 'ଉତ୍ତର-ଆଧୁନିକ' ନାୟକ ଅନେକତ୍ର ଅସୁସ୍ଥ, ରୁଗ୍ଣ ଓ ବେଳେବେଳେ ନିଶ୍ଚେଷ୍ଟ । 'ସ୍ୱ-ସତ୍ତା'ର ଅସ୍ତିତ୍ୱ ସମ୍ବନ୍ଧରେ ସେ କ୍ୱଚିତ୍ ନିଶ୍ଚିତ । କେଉଁଠି ସେ ମାନସିକ ଭାରସାମ୍ୟହୀନ ପାଗଳ ତ କେଉଁଠି ବିକାରଗ୍ରସ୍ତ । ଅନ୍ୟର ଇଚ୍ଛା, ଅନ୍ୟର ଚାହିଦା, ଅନ୍ୟର କ୍ଷମତା ପାଖରେ ସେ ଦୟନୀୟଭାବେ ସମର୍ପିତ । ନିଜର ସ୍ୱତନ୍ତ୍ର ସ୍ଥିତିଟିକୁ ଇଚ୍ଛାକୃତ ଭାବେ ହାତଛଡ଼ା କରିଥିବାରୁ ସେ ଖୋଜି ପାଏନା ବଞ୍ଚିରହିବାର ସାର୍ଥକତା । ଅର୍ଥ ଓନିୟକ୍ ପିଲ୍ (୧୯୭୩) ଉପନ୍ୟାସର ଉପସଂହାର ଏହିପରି ହୁଏ : "Life is like that , life is a hollow nothingness. Life is a discarded onion peel." ଉପନ୍ୟାସର ଲେଖକ କେ.ଏମ୍. ତ୍ରିଶଂକୁ ( ଭାରତୀୟ)ଙ୍କର ମଣିଷ ସଂପର୍କୀୟ ଏଇ ଚିନ୍ତାଧାରା ପାଶ୍ଚାତ୍ୟ ଅନୁସାରୀ ନା ହିନ୍ଦୁ ଶୂନ୍ୟବାଦୀ ଦର୍ଶନର ପ୍ରତିଧ୍ୱନି ? ୱେଲି ସିଫର୍ ଯଥାର୍ଥରେ କହନ୍ତି : 'He (man) is extremely disposable......( His self is constructed of standard materials according to a few efficient methods. "

'ଉତ୍ତର-ଆଧୁନିକ' ନାୟକ ବା ନାୟିକା ପାଗଳ, ବିକାରଗ୍ରସ୍ତ ବା ଏହିପରି କିଛି ହେଲେ ବି ଏଇମାନଙ୍କ ଭିତରୁ ବେଳେବେଳେ ମଣିଷପଣର ଯେଉଁ ଜ୍ୟୋତିର୍ମୟ ଉଦ୍‌ଗୀରଣ ଘଟେ, ତାହା ସଭ୍ୟତାର ପୋଷାମନା ତଥାକଥିତ ସୁସ୍ଥ ଓ ବିକାରମୁକ୍ତ କୁହାଯାଉଥିବା ମଣିଷଙ୍କ ଆଖିକୁ ଢଳକା କରିଦିଏ । ଏମାନଙ୍କ ଅପ୍ରତ୍ୟାଶିତ ଓ ଅକାଟ୍ୟ ତୋଫାନୀ-ସ୍ୱରରେ ସ୍ତବ୍ଧ ହୋଇଯାଏ ସାରା କାହାଣୀ, ସାରା କଥାବସ୍ତୁ ଓ ଏହି ଚରିତ୍ରମାନଙ୍କ ସଂପର୍କରେ ପାଠକ ତା' ଅବବୋଧରେ ଏ ପର୍ଯ୍ୟନ୍ତ ଗଢ଼ିଆଣିଥିବା ସବୁତକ ପୂର୍ବବର୍ତ୍ତୀ ଧାରଣା । ଭାରି ଖରାପ, ଭାରି ଲଫଙ୍ଗା ମନେହେଉଥିବା ଚରିତ୍ରର ସବୁ ପୁରୁଣା ଛାଞ୍ଚ , ସବୁ କାଦୁଅ, ସବୁ ରଙ୍ଗ ଖସିପଡ଼େ ଓ ଏଇଠୁ ଆରମ୍ଭ ହୁଏ ତା'ର ନୂଆ ତିଆରି ହବା । ପ୍ରବଞ୍ଚନାର ଗୁଳିରେ ଟଳି ପଡ଼ିବା ଆଗରୁ ଅବାଂଛିତ ଗର୍ଭଧାରଣ କରିଥିବା ସହ-ନାରୀଟି ସପକ୍ଷରେ 'ଉତ୍ତର-ଆଧୁନିକ' ନାରୀ ତା'ର ଅନ୍ତିମ ଜମାନବନ୍ଦି ଦୃଢ଼କଣ୍ଠରେ ଦେଇଯାଏ : ''ପାପ ରହିଛି ଗର୍ଭରେ; ଗର୍ଭଧାରଣ ନୁହେଂ, ଗର୍ଭ ହିଁ ନଷ୍ଟ ହେବାର ଯୋଗ୍ୟ । ' ( The sin is in the womb. The womb has to be destroyed - Goodby to Elsa)

(୧୮) 'ଉତ୍ତର-ଆଧୁନିକ' ସାହିତ୍ୟ କେତେକ ଦୃଷ୍ଟିରୁ ଏକ ଅବ-ମାନବୀକୃତ (De-humanised) ସାହିତ୍ୟ । କାରଣ ବେଶ୍ ସଂଖ୍ୟକ 'ଉତ୍ତର-ଆଧୁନିକ' କୃତିରେ

ପରିଦୃଶ୍ୟମାନ ମଣିଷଙ୍କଠାରେ ପରଂପରା-ସ୍ୱୀକୃତ ମାନବୀୟ ଗୁଣ ତଥା ଲକ୍ଷଣର ନିଷ୍ଠୁର ଅନୁପସ୍ଥିତି ପରିଲକ୍ଷିତ ହୁଏ । ଅବଶ୍ୟ ଆଜିର ମଣିଷଠାରେ ସୁଲଭ ଆବେଗଶୂନ୍ୟତା, ହୃଦୟହୀନତା, ଜୁଗୁପ୍ସା, ନୃଶଂସତା ଓ ଅବିବେକିତା ଆଦି ମାନବୀୟ ଅବିଗୁଣଗୁଡ଼ିକ ଅପେକ୍ଷା ସ୍ୱାଭାବିକ ଭାବେ ଦୁର୍ଲ୍ଲଭ ଆବେଗମୟତା, ହୃଦୟବତ୍ତା, ପ୍ରେମ, କରୁଣା ଓ ବିବେକିତା ପ୍ରଭୃତି ମାନବୀୟ ସୁଗୁଣଗୁଡ଼ିକୁ 'ଉତ୍ତର-ଆଧୁନିକ' ତା'ର ସୃଷ୍ଟିର ଦାପୂର୍ଯ୍ୟପୂର୍ଣ୍ଣ ଓ ପ୍ରଭାବଶାଳୀ କରି ଅଙ୍କିତ କରିଥାଏ । ସୁତରାଂ ' ଯାହା ଅଛି' ନୁହେଁ, ଯାହା ' ହଜି ଯାଇଛି' - 'ଉତ୍ତର-ଆଧୁନିକ' ତା'ରି ଆଡ଼କୁ ଆମ ଦୃଷ୍ଟିକୁ ଟାଣି ନିଏ ।

(୧୯) ପାଠକର ଲକ୍ଷ୍ୟ ଓ ମନନକୁ ତିର୍ଯ୍ୟକ ଓ ଏକମୁଖୀ କରାଇବା ପାଇଁ 'ଉତ୍ତର-ଆଧୁନିକ' ବର୍ଣ୍ଣନାରୁ ପରିହାର କରେ ପ୍ରଗଲ୍‌ଭତା ଓ ହୁଏ ' ମିତବାକ୍' । ପାଠକୀୟ ଆନୁଗତ୍ୟକୁ ତୀବ୍ର ଓ ନିରୁପାୟଭାବେ ଅନୁରକ୍ତ କରାଇବା ପାଇଁ ପ୍ରୟୋଜନ ସ୍ଥଳେ ଡ଼ିଟେକ୍‌ଟିଭ୍ ଶୈଳୀର ଆଶ୍ରୟ ନିଏ । କେଉଁଠି କେଉଁଠି ଅନୁଭୂତି ପ୍ରକାଶର ବ୍ୟାପକ ସ୍ୱାଧୀନତା ସୃଷ୍ଟି ପାଇଁ ଗଠନ-କଳା ଓ ଭାଷା ବିନ୍ୟାସକୁ କରିଥାଏ ଶିଥିଳ ଓ ଏପିସୋଡ଼ିକ୍ । 'ଏପିସୋଡ଼ିକ' ରଚନା ପାଠକର ସୌନ୍ଦର୍ଯ୍ୟ ଧାରଣାକୁ ଅକ୍ଷତ ରଖିବା ଓ ଗ୍ରନ୍ଥର ପଠନୋପଯୋଗିତାକୁ ଅବାଧ କରାଇବାରେ ସହାୟକ ହୋଇଥାଏ ।

(୨୦) 'ଉତ୍ତର-ଆଧୁନିକ' ପାଠ୍ୟ (Text) ପ୍ରତି ପାଠକର ସବୁ ପ୍ରଲୋଭନକୁ ଉତ୍ସାହିତ କରିବାର ଦୁର୍ବାର ଆକାଂକ୍ଷା ରଖିଥିଲେ ବି କୌଣସି ପରିସ୍ଥିତିରେ ବର୍ଣ୍ଣିତ ବିଷୟ, ଘଟଣା ବା ଚରିତ୍ରର କୌଣସି 'ସ୍ଥିତି' ପ୍ରତି ଆବେଗପ୍ରସୂତ ଦାୟିତ୍ୱହୀନ ପ୍ରତିକ୍ରିୟାକୁ ଉତ୍ସାହିତ କରେ ନାହିଁ । ଉଦାହରଣ ସ୍ୱରୂପ, କୌଣସି ଚରିତ୍ରର ଦୁଃଖରେ ମ୍ରିୟମାଣ ହୋଇ ପାଠକ ବା ଦର୍ଶକ ସହସା କାନ୍ଦିପକାଇବା ବା କୌଣସି ଚରିତ୍ରର ସୁଖ ଓ ଆନନ୍ଦରେ ସହସା ଆତ୍ମବିଭୋର ହୋଇ ଉଠିବାର ସଂଭାବନା ଥିଲେ, 'ଉତ୍ତର-ଆଧୁନିକ' ପାଠକଠାରେ ଥିବା କଳା ବା ସାହିତ୍ୟ ପ୍ରତି ଏତାଦୃଶ ପାରଂପିକ ପ୍ରତିକ୍ରିୟାକୁ ନିୟନ୍ତ୍ରିତ କରି ଏହାକୁ ଅଧିକ ଗଭୀର, ବ୍ୟାପକ ଓ ଭିନ୍ନମୁଖୀ କରାଇବାର ଚେଷ୍ଟାକରେ । କ୍ରମାଗତ ଭାବେ ପୀଢ଼ି ବାନ୍ଧି ' ବୋଧ' ଓ 'ଗ୍ରାହ୍ୟଶକ୍ତି'କୁ ବଧିରା କରି ଦେଇଥିବା ପାରଂପରିକ ମୂହ୍ୟମାନତାକୁ ପାଠକର ମନ ଓ ହୃଦୟରୁ ହ୍ରାସ କରିବା ପାଇଁ 'ଉତ୍ତର-ଆଧୁନିକ' ବିଷୟବସ୍ତୁର ଉପସ୍ଥାପନା ଓ ପରିବେଷଣରେ 'ଅତୀତ କାଳ' ର ବ୍ୟବହାରକୁ ଗୌଣ କରି 'ବର୍ତ୍ତମାନ କାଳ' କୁ ପ୍ରମୁଖ କରିଥାଏ ।

ଯେଉଁ ସୃଷ୍ଟି ମହାନ୍, ତା'ର ଆବେଦନ କାଳାନ୍ତରକୁ ପ୍ରସାରିତ ହୋଇଥାଏ; ମାତ୍ର ବିଡ଼ମ୍ବନାର ବିଷୟ ଯେ, ଯୁଗାନ୍ତର ଆଣିବାକୁ ଯାଇ ' ଆଧୁନିକବାଦ' କଳା ଓ ସାହିତ୍ୟରେ ବାସ୍ତବତଃ ଏପରି ଏକ ଯୁଗ ଆଣିଛି, ଯେଉଁ ଯୁଗ ଅନେକ ଦୃଷ୍ଟିରୁ ନିଜ ଭିତରେ ନିଜକୁ ହିଁ

ସୀମିତ କରି ଦେଇଛି । ନଈବଢ଼ି ପରି ହୁ-ହୁ ହୋଇ ମାଡ଼ି ଆସୁଥିବା 'ବଜାର-ସଂସ୍କୃତି' (Market-culture) କବଳରୁ ମାନବାତ୍ମାକୁ ରକ୍ଷା କରିବା ପରିବର୍ତ୍ତେ ଦୟନୀୟ ଭାବେ 'ବଜାର-ଅଭିମୁଖୀ' (Market oriented) ହୋଇ ତଥାକଥିତ ସଭ୍ୟତାର 'ବାଉନ ବଜାର, ତେପନ ଗଳି'ରେ ହଜିଯାଇଛି । ଆଧୁନିକତାର ଆତ୍ମ-ବଡ଼ିମା ଓ ସାଂସ୍କୃତିକ ଯଥେଚ୍ଛାଚାରରେ ଅତିଷ୍ଠ ହୋଇ ' ଉତ୍ତର-ଆଧୁନିକତା' ଜନ୍ମ ନେଇଛି । ସମୟ, ସମାଜ ଓ ସାହିତ୍ୟ ନିକଟରେ 'ଆଧୁନିକତା' ଯେତେବେଳେ ତା'ର ବିଶ୍ୱାସନୀୟତା (credibility) ହରାଇଛି ଏବଂ ମୁହୁର୍ମୁହୁ ସମାଗତ ନୂଆ ନୂଆ ଚ୍ୟାଲେଞ୍ଜକୁ ସାମ୍ନା କରିବାରେ ବିଫଳ ହୋଇଛି, ସେତିକିବେଳେ କଳା ଓ ସାହିତ୍ୟକୁ , ବିକଳ୍ପ ନେତୃତ୍ୱ ଦେବା ପାଇଁ ' ଉତ୍ତର-ଆଧୁନିକତା' ଆଗଭର ହୋଇଛି । ଡ଼କ୍ଟର ଜନ୍‌ସନ୍ କହନ୍ତି : 'ଯେଉଁ କଳା ବା ସାହିତ୍ୟ ବହୁଲୋକଙ୍କୁ ବହୁଦିନଯାଏ ଆକୃଷ୍ଟ କରିପାରେ- ତାହା ହିଁ ହେଉଛି ସାର୍ଥକ କଳା ବା ସାହିତ୍ୟ ।'' ସୁଖର କଥା ଯେ, ଏ ଯାବତ୍ ଲିଖିତ ଅଧିକାଂଶ ଉତ୍ତର-ଆଧୁନିକ ରଚନା କଳା ଓ ସାହିତ୍ୟର ଏହି ଚିରନ୍ତନୀ ଦାୟବଦ୍ଧତା ପ୍ରତି ନିଜକୁ ବିଶ୍ୱସ୍ତ ରଖିପାରିଛି । ସମକାଳୀନ ହେବାର ଯୋଗ୍ୟତାକୁ ଯେପରି ପ୍ରମାଣିତ କରିଛି, 'ଶାଶ୍ୱତ'ର ସଂଭାବନାକୁ ମଧ ସେହିପରି ନିଜ ଭିତରେ ବହନ କରିଛି । ସମୟାନ୍ତର କଥା ଦୂରେ ଥାଉ, ସମକାଳର ଅଧିକାଂଶଙ୍କୁ ସ୍ପର୍ଶ କରିପାରୁ ନ ଥିବା ଆଧୁନିକତାର ଅସାମର୍ଥ୍ୟକୁ ' ଉତ୍ତର-ଆଧୁନିକତା' ତା ନିଜ ଗୁଣ ଓ ଶକ୍ତିରେ ଅତିକ୍ରମ କରୁଛି । କଳା (Art) ଓ ଅଣ-କଳା (Non-Art) ମଧରେ ଆଧୁନିକ ଉଠାଇଥିବା ବିଭେଦର ମନଗଢ଼ା ପ୍ରାଚୀର ଧୀରେ ଭୁଶୁଡ଼ି ପଡୁଛି । ଅଭିଜାତ ଓ ଅଣ-ଅଭିଜାତ ପାଠକଙ୍କ ମଝିରେ ପୋତା ଯାଇଥିବା ଅବାଂଛିତ ବାଡ଼ ଉଠିଯାଇଛି । ' ଅଭିଜାତ ଓ ଅଣ-ଅଭିଜାତ' ଆଜି ହୋଇଛନ୍ତି ' ଉତ୍ତର-ଆଧୁନିକତା'ର ମିଳିତ 'ସହୃଦୟ' ।

ସେଦିନ, ଯୁଦ୍ଧଭୂଇଁରେ କୃଷ୍ଣଙ୍କର ସମୟୋଚିତ ଉପଦେଶ ଶୁଣି ମୋହଗ୍ରସ୍ତ ଅର୍ଜୁନଙ୍କ ହୃଦୟରେ ଯେଉଁ ରୂପାନ୍ତର ସଂଭବ ହୋଇଥିଲା ; ନିଷ୍ଠା ଓ ସଂକଳ୍ପ ଅବ୍ୟାହତ ରହିଲେ 'ଉତ୍ତର-ଆଧୁନିକତା' କଳା ଓ ସାହିତ୍ୟରେ ସେହିପରି ଏକ ରୂପାନ୍ତର ଆଣିପାରିବ ବୋଲି ବିଶ୍ୱାସ କରାଯାଏ । 'ନଷ୍ଟୋମୋହଃ' 'ସ୍ମୃତିର୍ଲବ୍ଧା', 'ସ୍ଥିତୋଽସ୍ମି' ଓ 'ଗତ ସନ୍ଦେହଃ' - ସାହିତ୍ୟ ପାଠର ଏଇ ଚାରୋଟି ଶ୍ରେୟସ୍କର ପ୍ରାପ୍ତି - ଯାହାକୁ ଏକତ୍ର କରି 'ଆଧୁନିକତା' ଏ ଯାବତ୍ ଆମକୁ ଦେଇପାରିନାହିଁ, 'ଉତ୍ତର-ଆଧୁନିକତା'ଠାରୁ ଆଜି ଅନ୍ତତଃ ଏତିକି ପ୍ରତ୍ୟାଶା କରାଯାଉ ।

□□□

# ଓଡ଼ିଆ କବିତାରେ ପ୍ରଗତିବାଦୀ ଓ ପ୍ରୟୋଗବାଦୀ ଧାରା

•

ବିଧୁପ୍ରଭା ରଥ



*ଶିଶୁବିକାଶ ପ୍ରକଳ୍ପ ଅଧିକାରୀ,*
*ଖଲ୍ଲିକୋଟ, ଗଞ୍ଜାମ*

**ପ୍ରଗତିବାଦୀ ଧାରା :**

ସ୍ୱାଧୀନତୋତ୍ତର ଯୁଗରେ ହିଁ କବିତା ରାଜ୍ୟରେ ଏକ ଯୁଗାନ୍ତର ଆସିଲା । ଏହାକୁ ଆଧୁନିକ ବା ଅତ୍ୟାଧୁନିକ କବିତା ରୂପେ ଚିହ୍ନିତ କରିବା ଉଚିତ ହେବ ନାହିଁ । କାରଣ ସମାଲୋଚନା ପରିଭାଷାରେ ଆଧୁନିକର ଏକ ନିର୍ଦ୍ଦିଷ୍ଟ ଚରିତ୍ର ଅଛି । ମଧ୍ୟଯୁଗୀୟ ପ୍ରବୃତ୍ତି ମଧ୍ୟରୁ ସମାଜ ଓ ସାହିତ୍ୟର ମାନବତାବାଦୀ ଉନ୍ମେଷକୁ ସାଧାରଣତଃ ଆଧୁନିକ ନାମରେ ଚିହ୍ନିତ କରା ଯାଇଥାଏ । ଆଧୁନିକ ଶବ୍ଦଟି ନିତାନ୍ତ ଆପେକ୍ଷିକ । ମଧ୍ୟଯୁଗୀୟ ପ୍ରବୃତ୍ତି ଓ ଚେତନାରୁ ମୁକ୍ତି ପାଇ ଏହି ଯୁଗରେ ହିଁ ଆଧୁନିକତାର ନବଜନ୍ମ ଘଟିଥିଲା । କବି ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, ସଚ୍ଚିଦାନନ୍ଦ ରାଉତରାୟ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚନ୍ଦ୍ରଶେଖର ମିଶ୍ର, କ୍ଷିତୀଶଚନ୍ଦ୍ର ଦେ ପ୍ରମୁଖ କବିମାନେ ଓଡ଼ିଆ କବିତା କ୍ଷେତ୍ରରେ ବିଂଶ ଶତାବ୍ଦୀର ପ୍ରାକ୍-ତିରିଶ କାଳରେ ଅବତୀର୍ଣ୍ଣ ହେଲାପରେ ସବୁଜ କାବ୍ୟଚେତନା ସବୁଜକବି ଗୋଷ୍ଠୀ ମଧ୍ୟରେ ଆବଦ୍ଧ ନ ରହି ଏକ ମିଶ୍ରିତ କାବ୍ୟ ଆନ୍ଦୋଳନର ରୂପ ଧାରଣ କରିଥିଲା । ପୁରାତନ କାବ୍ୟିକ ପଦ୍ଧତିକୁ ପରିହାର କରି ନୂତନ କିଛି ସୃଷ୍ଟି କରିବାର ଅଭୀପ୍ସାରେ ସବୁଜ କବିମାନେ ପ୍ରଥମେ ରବୀନ୍ଦ୍ର କାବ୍ୟ ମାନସ ଓ ପାଶ୍ଚାତ୍ୟ ରୋମାଣ୍ଟିକ୍ କାବ୍ୟଧାରା ମଧ୍ୟ ଦେଇ ଯେଉଁ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଥିଲେ, ତାହା ପ୍ରାୟ ୧୯୩୫ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । ଏଥିରୁ ସ୍ପଷ୍ଟ ହୁଏ ଯେ ଏକ ବଳିଷ୍ଠ ବାସ୍ତବବାଦୀ ସାହିତ୍ୟିକ ଆଭିମୁଖ୍ୟ ପାଇଁ ନିଶ୍ଚିତ ରୂପେ କ୍ଷେତ୍ର ପ୍ରସ୍ତୁତି ସେହି ସମୟରୁ ହିଁ ଆରମ୍ଭ ହୋଇଥିଲା ।

ନିଜକୁ ଅ-ସବୁଜ କବି ଭାବରେ ପ୍ରତିଷ୍ଠିତ କରିଥିବା କବି ମାୟାଧର ମାନସିଂହଙ୍କ ରାଶି ରାଶି ରୋମାଣ୍ଟିକ୍ ଭାବପୂର୍ଣ୍ଣ ପ୍ରେମ କବିତା ବିରୋଧରେ ଓଡ଼ିଆ ସାହିତ୍ୟରେ ଏକ ପ୍ରତିବାଦର ସ୍ୱର ତୀବ୍ରତର ହୋଇଥିଲା । ବିଶେଷତଃ କବି ସଚ୍ଚି ରାଉତରାୟ ଓଡ଼ିଆ କବିତାର ଆଙ୍ଗିକରେ ଗଦ୍ୟ ଶୈଳୀର ଅନୁବର୍ତ୍ତନ କଲାପରେ ଏହି ପ୍ରତିକ୍ରିୟାର ସ୍ୱର ଅତ୍ୟନ୍ତ ଉଗ୍ରରୂପ ଧାରଣ କରିଥିଲା ।

୧୯୩୦-୪୦ ଦଶକରେ ଯେଉଁ ପ୍ରଗତିବାଦୀ କାବ୍ୟଚେତନା ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଏକ ସମୟୋଚିତ ଆହ୍ୱାନର ସ୍ୱର ନେଇ ପ୍ରବେଶ କରିଥିଲା, ତାହା ଓଡ଼ିଆ କବିତାର ପାରମ୍ପରିକ ଧାରାରେ ଯେ ଏକ ନିଶ୍ଚିତ ବ୍ୟତିକ୍ରମ ଏଥିରେ ସନ୍ଦେହ ନାହିଁ । ଏହି କାବ୍ୟ ସ୍ୱରର ଉଦ୍‌ଗାତାମାନେ ନିର୍ଦ୍ଦିଷ୍ଟ ଭାବେ ମାର୍କସୀୟ ଚେତନାକୁ ହିଁ ପ୍ରଗତିବାଦୀ ଚେତନା ନାମରେ ନାମିତ କରିଛନ୍ତି ; କିନ୍ତୁ ଏହାଦ୍ୱାରା ଏହି ନବୀନ କାବ୍ୟ ଆଭିମୁଖ୍ୟର ସଂଜ୍ଞା ଓ ପରିସର ସଙ୍କୁଚିତ ହୋଇ ଯାଇଛି । ୧୯୩୫-୩୬ ବେଳକୁ ପ୍ରଗତିବାଦୀ କାବ୍ୟ ଚେତନାରେ ଏକ ଶୋଷଣମୁକ୍ତ ଶ୍ରମନିର୍ଭର ସମତୁଲ ସମାଜ ପ୍ରତିଷ୍ଠା ଦିଗରେ ଉଦ୍ୟମ ହୋଇଥିବାର ଜଣାଯାଏ । ୧୯୨୦-୩୦ ମଧ୍ୟରେ ରୁଷର ଅକ୍ଟୋବର ବିପ୍ଳବର ପ୍ରଭାବରେ ଭାରତର ଦୁଇଟି ଅଗ୍ରଗାମୀ ପ୍ରଦେଶ ବଙ୍ଗ ଓ ବମ୍ବେରେ ଚାଷୀ ଓ ଶ୍ରମିକମାନଙ୍କ ମଧ୍ୟରେ ନବଜାଗରଣ ଦେଖାଦେଇଥିଲା । ସେମାନଙ୍କର ପ୍ରତିନିଧିତ୍ୱ ପାଇଁ କମ୍ୟୁନିଷ୍ଟ ପାର୍ଟି ଗଢ଼ା ଯାଇଥିଲା; କିନ୍ତୁ ୧୯୨୪ର କାନପୁର ଷଡ଼ଯନ୍ତ୍ର ମାମଲା ଓ ୧୯୨୮ର ମିରଟ୍ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାପରେ ଏହି ନବୋଦ୍‌ଥିତ ଗଣଆନ୍ଦୋଳନକୁ ଅବଦମିତ କରିବାକୁ ପ୍ରବଳ ଚେଷ୍ଟା ହୋଇଥିଲା । ଅବଶ୍ୟ ଓଡ଼ିଶାରେ ଏହି ଦଳ ଆଶାତୀତ ସଫଳତା ହାସଲ କରିପାରି ନ ଥିଲା । ଅତ୍ୟାଚାରିତ ଗଡ଼ଜାତ ଲୋକଙ୍କ ମନରେ ଆଶା ଉଦ୍ଦୀପନା ସୃଷ୍ଟି କରିବା ପାଇଁ ଓଡ଼ିଶା କଂଗ୍ରେସ, ସୋସାଲିଷ୍ଟ ପାର୍ଟି ଗଠିତ ହୋଇ ଜାଗରଣ ସୃଷ୍ଟି କରିଥିଲା । ଏହାର ନେତୃତ୍ୱ ନେଇଥିଲେ ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ଭୁବନାନନ୍ଦ ଦାସ, ପ୍ରାଣନାଥ ପଟ୍ଟନାୟକ ପ୍ରମୁଖ । ଓଡ଼ିଆ ସାହିତ୍ୟରେ ଏକ ଭାବଗତ ପ୍ରଗତି ଚେତନା ସୃଷ୍ଟି କରିବା ପାଇଁ ୧୯୩୫ ମସିହା ନଭେମ୍ବର ୨୯ ତାରିଖରୁ ଡ଼ିସେମ୍ବର ୪ ତାରିଖ ପର୍ଯ୍ୟନ୍ତ କଟକର ଶ୍ରୀରାମଚନ୍ଦ୍ର ଭବନରେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଏହି ଆଲୋଚନାର ପରିସର ମଧ୍ୟରୁ ଯେଉଁ ସାହିତ୍ୟ ଅନୁଷ୍ଠାନଟି ଯୁଗଚେତନାକୁ ଲକ୍ଷ୍ୟକରି ଗଠିତ ହୋଇଥିଲା ତାହା 'ନବଯୁଗ ସାହିତ୍ୟ ସଂସଦ' ନାମରେ ନାମିତ ।

ଏପରି ଏକ ସଙ୍ଗଠନ ଗଢ଼ିବା ପଛରେ ନିଶ୍ଚିତ ଭାବରେ ଭଗବତୀ ଚରଣଙ୍କ ଚିନ୍ତାଧାରାରେ ପ୍ୟାରିସ୍‌ରେ ଅନୁଷ୍ଠିତ ହୋଇଥିବା ବିଶ୍ୱଶାନ୍ତି କଂଗ୍ରେସର ପ୍ରଭାବ ପ୍ରତିଫଳିତ

ହୋଇଥିଲା । କାରଣ ସେହି ସମ୍ମିଳନୀରେ ମୁଖ୍ୟତଃ ୟୁରୋପ ଓ ଏସିଆର ବିଶିଷ୍ଟ ସାହିତ୍ୟିକମାନେ ଏକତ୍ରିତ ହୋଇଥିଲେ । ଆବାହକ ଥିଲେ ମାକସିମ୍ ଗର୍କି ଏବଂ ୟୁରୋପରୁ ରୋମାଁରୋଲା ଓ ବାରାବୁସ୍ । ସମ୍ମିଳନୀରେ ଯେଉଁମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଆନ୍ଦ୍ରେଜିତ, ଇ: ଏମ ଫୋଷ୍ଟର୍, ଆଣ୍ଡ୍ରେମଲର, ଆଲଡ଼ସ୍ ହକ୍ସଲେ, ମାଇକେଲ୍ ଗୋଲଡ଼, ଜନ୍ ଷ୍ଟାଚି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ମର୍ମରେ ଏକ ସାଂସ୍କୃତିକ ସମ୍ମିଳନୀ କରି ନୂତନ ସାହିତ୍ୟ ସୃଷ୍ଟି ନିମନ୍ତେ ବାତାବରଣ ସୃଷ୍ଟି କରିବାର ଉଦ୍ୟମ ସ୍ୱର୍ଗତଃ ଭଗବତୀ ଚରଣଙ୍କ ସାମାଜିକ ନେତୃତ୍ୱ ଓ ଦୂରଦୃଷ୍ଟିର ପରିଚୟ ଦିଏ । କେବଳ ବକ୍ତୃତା ବା ସଭା ସମିତି ମାଧ୍ୟମରେ ଏହି ନବୀନ ଭାବଧାରାକୁ ଯଥାର୍ଥ ଭାବରେ ସମାଜରେ ପ୍ରତିଷ୍ଠିତ କରି ହେବନାହିଁ ଏବଂ ସେଥିପାଇଁ ଉପଯୁକ୍ତ ଗଣମାଧ୍ୟମ ଯେ ନିତାନ୍ତ ଆବଶ୍ୟକ, ଏହି ଚିନ୍ତାରେ ସେ ୧୯୩୬ ମସିହା ମେ ମାସରେ 'ଆଧୁନିକ' ନାମରେ ଏକ ମାସିକପତ୍ର ପ୍ରକାଶକଲେ । ଏହି ପତ୍ରିକାର ଆଭିମୁଖ୍ୟ ହିଁ 'ନବଯୁଗ ସାହିତ୍ୟ ସଂସଦ' ର ଘୋଷିତ ଆଭିମୁଖ୍ୟର ଅନୁବର୍ତ୍ତୀ ଥିଲା ।

ଆଧୁନିକ ପତ୍ରିକା ପ୍ରକାଶିତ ହେବାପରେ 'ଉତ୍କଳ ସାହିତ୍ୟ', 'ସହକାର', 'ନବଭାରତ' ପ୍ରଭୃତି ପତ୍ରିକାରେ ପୂର୍ବାନୁଲୋଚିତ ୟୁରୋପୀୟ ଚିନ୍ତାଧାରା ଦେଇ ଆସିଥିବା ଏଇ ନବୀନ ଭାବଧାରାର ରୁଚିଗତ ସାହିତ୍ୟିକ ଚିତ୍ର କ୍ରମେ ବ୍ୟାପକତର ହୋଇଛି । ମୁଖ୍ୟତଃ କବିତା କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ଓ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଠାରୁ ଏହି ମାନବବାଦୀ ବୈପ୍ଳବିକ ଭାବଧାରା ୧୯୩୫-୪୦ ମଧ୍ୟରେ ଆରମ୍ଭ ହୋଇ ୧୯୪୦-୫୦ ମଧ୍ୟରେ ରଘୁନାଥ ଦାସ, ମନମୋହନ ମିଶ୍ର, କୁଞ୍ଜ ବିହାରୀ ଦାଶ, ରଜନୀକାନ୍ତ ଦାସ, କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ଚକ୍ରଧର ରାଉତ, ଜୀବନାନନ୍ଦ ଆଚାର୍ଯ୍ୟ, ବୈକୁଣ୍ଠନାଥ ଦାସ, ସୁନନ୍ଦ କର ପ୍ରମୁଖ ବହୁ ମୁଖ୍ୟ ଓ ଗୌଣ କବିଙ୍କ ଚେତନାରେ କ୍ରମଶଃ ଉଦ୍ଭାସିତ ହୋଇଛି । ସଚ୍ଚିଦାନନ୍ଦଙ୍କ କବିତା ସଙ୍କଳନ 'ଅଭିଯାନ' (୧୯୩୮), ' ବାଜିରାଉତ' (୧୯୪୩), କାଳିନ୍ଦୀ ଚରଣଙ୍କ କବିତା ' ଜୀବନର ସ୍ପର୍ଶ' (୧୯୩୫),'ଜୟ ଭଗବାନ', 'ଯାଦୁଘର','ଛୁରୀଟିଏ ଲୋଡ଼ା','ଆଗାମୀ' ପ୍ରଭୃତି ତଥା ଅନନ୍ତ ପଟ୍ଟନାୟକଙ୍କ ରଚିତ 'ନବଯୁଗ ସାହିତ୍ୟ ସଂସଦ'ର ପ୍ରାରମ୍ଭିକ ସଙ୍ଗୀତ ରୂପେ ଧ୍ୱନିତ 'ଜାଗ ବନ୍ଧନହରା' ଠାରୁ ସଚ୍ଚିବାବୁଙ୍କ ସହିତ ଯୁଗ୍ମ ପ୍ରଣେତା ଭାବରେ 'ରକ୍ତଶିଖା' ଓ ପରେ 'ଶାନ୍ତିଶିଖା'ରେ ଏବଂ ଲକ୍ଷ୍ମୀଧର ନାୟକଙ୍କ 'ପ୍ରଳୟ ପଥେ', 'ପ୍ରଭାତର ଯାତ୍ରୀ', 'ବଞ୍ଚିତର ବ୍ୟଥା' ଆଦି କବିତାରେ ଏହି ଭାବଧାରାର ଅସାଧାରଣ ଉନ୍ମୁଖତା ଲକ୍ଷ୍ୟ କରାଯାଏ । 'କୋଣାର୍କ' କବିତାରେ ସଚ୍ଚି ରାଉତରାୟ ନିଜର ପ୍ରଗତିଶୀଳ ଚିନ୍ତାଧାରା ପ୍ରକାଶ କରି କହିଥିଲେ -

''ତୁମେ ଯହିଁ ଦେଖ ଦିବ୍ୟ ଶିଳାରେ ରମ୍ୟ କଳାର ରୂପ
ମୁଁ ତହିଁ ଦେଖୁଛି କୋଟି କଙ୍କାଳ ଭଗ୍ନ ବୁକୁର ସ୍ତୁପ ।''

ଏତଦ୍ ବ୍ୟତୀତ ତାଙ୍କ ଲିଖିତ ' ଅଭିଯାନ' ପୁସ୍ତକରେ ସନ୍ନିବେଶିତ ପ୍ରତିଟି କବିତାରେ ବିପ୍ଳବର ସ୍ୱର ଝଙ୍କୃତ ହୋଇଥିଲା; କିନ୍ତୁ ସେ ତାକୁ ସ୍ୱଚ୍ଛ-କାବ୍ୟ- ତଟିନୀର ଜଳଧାର ନକରି ଅନେକ ରୂପକଳ୍ପ, ଚିତ୍ରକଳ୍ପର ହିଡ଼ବାନ୍ଧି ହ୍ରଦରେ ପରିଣତ କରିଦେଲେ । ଅନନ୍ତ ପଟ୍ଟନାୟକଙ୍କ କବିତାରେ ଏପରି ଯନ୍ତ୍ରଣା ଜର୍ଜ୍ଜରିତ ଯୁଗମାନସର ବ୍ୟଥା ପରିଲକ୍ଷିତ ହୋଇଥାଏ ।

''ମୃତ୍ୟୁର ଜଳେ ପହଁରି ପହଁରି
ତୋଳେ ଯେ ତୋ ଲାଗି ରକ୍ତକଇଁ
କୃଷ୍ଣନାଗର ଦଂଶନେ ସେ କି
ପଡ଼ିବ ନଇଁରେ ପଡ଼ିବ ନଇଁ ।''

(ଝରରେ ରୁଧିର)

ଏଠାରେ ମୃତ୍ୟୁର ଜଳ ଏକ ଶକ୍ତିଶଳି ସଂଗ୍ରାମ ବୋଲି ଘୋଷଣା ହୋଇ ସାରିଲା ପରେ 'ରକ୍ତକଇଁ' ସାମ୍ୟବାଦର ଲୋହିତ ତାରା ବୋଲି ପ୍ରତୀକିତ ହୋଇଛି । ତା' ଛଡ଼ା ଅନ୍ତିମ ଲକ୍ଷ୍ୟରେ ପହଞ୍ଚିବା ପାଇଁ ମଝିରେ 'କୃଷ୍ଣନାଗର' ଭଳି କେତେ ବୁର୍ଜୁଆ ବସ୍ତୁ ନିଶ୍ଚିତ ଭାବରେ ମେଣ୍ଢାପଲ ଭାବରେ ବାଟ ରୋକିଛନ୍ତି । ଓଡ଼ିଆ ସାହିତ୍ୟାକାଶରେ ଝଡ଼ର ସନ୍ତ୍ରାସ ତୋଳୁଥିବା କବି ରବି ସିଂଙ୍କର ଲେଖନୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେ ସ୍ପଷ୍ଟବାଦୀ ଓ ନିର୍ଭୀକ ମନର ରୂପ ନେଇ ନିଜକୁ ପରିଚିତ କରାଇଛନ୍ତି ଜଣେ ଶିବିରମୁକ୍ତ ସୈନିକ ହିସାବରେ । ତେଣୁ ପ୍ରେମ କବିତାର ଗତିପଥରୁ ତାଙ୍କର ବିଚ୍ୟୁତି ଘଟିଛି ବହୁକାଳୁ । ସେ ତାଙ୍କର ପ୍ରତିଟି ଛନ୍ଦୋବଦ୍ଧ କବିତାରେ ସର୍ବହରାର ବେଦନାକୁ ପ୍ରସ୍ଫୁଟିତ କରିବା ସଙ୍ଗେ ସଙ୍ଗେ ମାର୍କସବାଦୀ ବୈପ୍ଳବିକ ଆହ୍ୱାନରେ ଅନୁରଣିତ କରିଛନ୍ତି । ଯଥା-

'' ବିପ୍ଳବ କି ମରେ କେବେ ଶାସକର ସୁତୀକ୍ଷ୍ଣ ସଙ୍ଗୀନେ,
ଫାଶୀ ମଞ୍ଚେ କାରାଗାରେ ଅବା କେଉଁ ବନର ଗହନେ ।
ସାମରିକ ସିପାହୀର ଭଡ଼ାଟିଆ ରାଇଫଲ ଚୋଟ,
ପାରେକି ବିପ୍ଳବେ ମାରି ଇତିହାସେ ପ୍ରଗତିର ଥାଟ ।''

(ଝଡ଼-ରବି ସିଂ)

**ପ୍ରୟୋଗବାଦୀ ଧାରା :**

ସାଧାରଣତଃ ଆଧୁନିକ ଓଡ଼ିଆ କବିତାର ବିକାଶପର୍ବକୁ କେହି କେହି ସମାଲୋଚକ ପ୍ରୟୋଗବଦୀ ଧାରା ନାମରେ ନାମିତ କରିଛନ୍ତି । ମୋଟ ଉପରେ ୧୯୫୦ ପରବର୍ତ୍ତୀ ଦୁଇଟି ଦଶକ ହିଁ ଏହି ପ୍ରୟୋଗବାଦୀ ସମୟ । ଓଡ଼ିଆ କବିତା ଏହି ସମୟରେ ତା'ର ବାମପନ୍ଥୀ-ମାନବବାଦୀ-ସାମାଜିକ ଧାରାକୁ ଉପେକ୍ଷା କରି ବିଶିଷ୍ଟ କବିମାନଙ୍କ କାବ୍ୟ ଚେତନାରେ ଏକ

ବ୍ୟକ୍ତିମୁଖୀ ରୋମାଣ୍ଟିକ୍ ବାସ୍ତବବାଦୀ ଧାରା ବରଣ କରିନେଇଛି । ଗୁରୁପ୍ରସାଦ ମହାନ୍ତିଙ୍କ 'ନୂତନ କବିତା' ଓ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ସ୍ୱଗତ' ଏହି ପ୍ରୟୋଗବାଦୀ ଧାରାର ଦୁଇଟି ଉତ୍କୃଷ୍ଟ ପ୍ରତିନିଧିମୂଳକ ସୃଷ୍ଟି । ଗୁରୁପ୍ରସାଦଙ୍କ ବ୍ୟକ୍ତିଜୀବନ ଓ ସମାଜରେ ଘଟୁଥିବା ଅବମୂଲ୍ୟାୟନର ଚିତ୍ର ତାଙ୍କ କବିତାରେ ଏକ ଉତ୍କଟ ବାସ୍ତବବାଦୀ ଦୃଷ୍ଟିକୋଣ ପ୍ରକାଶ କରିଥାଏ ; କିନ୍ତୁ ବକ୍ତବ୍ୟଟିକୁ ସିଧାସଳଖ ନ କହି ଚାତୁର୍ଯ୍ୟୋକ୍ତି, ବ୍ୟଞ୍ଜନା ଓ ରୂପକ ମାଧ୍ୟମରେ ତାହା ସେ ପ୍ରକାଶ କଲେ । ଯୁଗେଯୁଗେ ଉତ୍କୃଷ୍ଟ କବିତାର ଏହା ହିଁ ଅନ୍ତର୍ନିହିତ ସତ୍ତା ଥିଲା; କିନ୍ତୁ ଗୁରୁପ୍ରସାଦଙ୍କ କବିତାରେ ଯେଉଁ ଆଭିମୁଖ୍ୟଟି ପରିଛନ୍ନ ହୋଇ ଉଠିଲା, ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ମତରେ ତାହା ହେଲା -

" ଏ କବିତାଗୁଡ଼ିକ ରୋମାଣ୍ଟିକ୍ କାବ୍ୟଧର୍ମୀ ନୁହନ୍ତି । ଏହି କବିତାଗୁଡ଼ିକର ଅନ୍ତରାଳରୁ ମେଟାଫିଜିକାଲ୍ କବିମାନଙ୍କ ସହିତ ବଦ୍‌ଲେୟାର ଓ ଇଲିୟଟ୍‌ଙ୍କୁ ମଧ ଦେଖାଯାଏ । ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଏଠାରେ ରୋମାଣ୍ଟିକ୍ ନୁହେଁ, ବ୍ୟଙ୍ଗାତ୍ମକ । ଏହି କବିତାର ପ୍ରଧାନ ଉପାଦାନ wit ଓ ଏକ ରୁଚିପୂର୍ଣ୍ଣ ଶାଳୀନତା (urbanity) , ଚେତନା ଏଠାରେ ବ୍ୟାପକ ଓ ବହୁ ବିଚିତ୍ର; କିନ୍ତୁ ଉପମା, ଉପମେୟର ସଂକ୍ଷିପ୍ତ ପ୍ରୟୋଗ ଦ୍ୱାରା ପ୍ରକାଶଭଙ୍ଗୀ କଠିନ ଭାବରେ ସୁନିୟନ୍ତ୍ରିତ ।"

ଗୁରୁପ୍ରସାଦ ମହାନ୍ତି ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ପର୍ବ (୧୯୩୫-୪୦)ରେ ଥିଲେ ଏକାନ୍ତ ରୋମାଣ୍ଟିକ୍ ; ତେଣୁ ତାଙ୍କୁ ସବୁଜଠାରୁ ଅଲଗା କରି ଦେଖିବାର ଅବକାଶ ମଧ ନ ଥିଲା; କିନ୍ତୁ କବିତା ରଚନାର ଦୀର୍ଘ ଅବକାଶ ପରେ ସେ ସମ୍ପୂର୍ଣ୍ଣ ଏକ ପରିବର୍ତ୍ତିତ କାବ୍ୟମାନସ ନେଇ ଏହି ବିକାଶ ପର୍ବରେ ଆତ୍ମପ୍ରକାଶ କଲେ । ତାଙ୍କ କବିତାର ଅନ୍ତରାଳରୁ ପ୍ରତ୍ୟେକ ବ୍ୟକ୍ତିବିଶେଷର ଉତ୍କଟ ମାନସିକ ଆଲୋଡ଼ନ, ପ୍ରେମର ମୋହହୀନ ମହଳରୂପ, ଆତ୍ମପ୍ରତାରଣା, ଉତ୍କଟ ନୈରାଶ୍ୟ ଓ ପାପବୋଧ, ପୁଣି ସାମାଜିକ ପରିବେଶର ନିତାନ୍ତ ଗ୍ଲାନିକର କୁତ୍ସିତ ଦିଗ ଓ ମିଳନ ଚିତ୍ର ପ୍ରାଞ୍ଜଳ ହୋଇ ଉଠିଲା । ବ୍ୟକ୍ତି ମାନସର ବିଖଣ୍ଡିତ ଚେତନାକୁ ରୂପ ଦେବାକୁ ଯାଇ ସେ ଶକ୍ତିଶାଳୀ ରୂପକଳ୍ପ, ପ୍ରତୀକ ଓ ମିଥ୍ ମଧ ପ୍ରୟୋଗ କଲେ । ଏ ସବୁକୁ ଏକ ବ୍ୟଞ୍ଜନାତ୍ମକ କଥିତଭଙ୍ଗୀ ମାଧ୍ୟମରେ ପ୍ରକାଶ କରି ସଚ୍ଚିବାବୁଙ୍କ ବାକ୍‌ରୀତିଠାରୁ ବରଂ ଅଧିକ ଭାବେ ଲିରିକାଲ୍ କାବ୍ୟରୀତି ସହିତ ସମ୍ପର୍କ ସ୍ଥାପନ କଲେ । ଜୀବନର ଓ ସମାଜର ପରିବର୍ତ୍ତିତ ପରିସ୍ଥିତିକୁ ଯଥାର୍ଥ ଭାବରେ ରୂପ ଦେବାକୁ ଉପମା ଓ ପ୍ରତୀକ ଭାବରେ ସେ 'ଶିମୁଳିକଣ୍ଟା', 'ପତ୍ରଝଡ଼ା', 'କୋରଡ଼ ଆଖି', 'ଥୁଣ୍ଟାଗଛ', 'ଗଳିମୋଡ଼', 'ଭଙ୍ଗାକୋଠାଘର', 'ଛିଣ୍ଡାଲୁଗା', 'ବାଲିଚର', 'ହ୍ୟାଣ୍ଡବିଲ୍', 'ବାଦୁଡ଼ି', 'କାଦୁଅ' ଇତ୍ୟାଦି ଏହି ପ୍ରାତ୍ୟହିକ ଜୀବନର ଦୃଶ୍ୟରାଜିକୁ ସଂଗ୍ରହ କଲେ ।

ଅନ୍ୟତମ ପ୍ରୟୋଗବାଦୀ କବି ରମାକାନ୍ତ ରଥଙ୍କ କବିତାରେ ଏହିପରି ରୂପଚେତନାର ମାତ୍ରା ଅଧିକ। ଉଦାହରଣ ସ୍ୱରୂପ-'ମକ୍‌ଚା ପାଦ', 'ଫିମ୍ପିମରା ଛାତ', 'ପାଚିଲା ପତ୍ର', 'ନିଭୃତ କୋଠରୀ', 'ହଳଦିଆ କାନ୍ଥ' ଆଦି ପ୍ରତୀକ ଓ ରୂପକ ମାଧମରେ ଏହି ବାସ୍ତବବାଦୀ କାବ୍ୟମାନସକୁ ଛୁଇଁହୁଏ । ଗୁରୁ ମହାନ୍ତିଙ୍କ ଚିତ୍ରକଳ୍ପ ଖୁବ୍ ଶାଣିତ ଭାବରେ ଆନୁପାତିକତା ରକ୍ଷାକରି ଲକ୍ଷ୍ୟବିଦ୍ଧ କଲାବେଳେ ସଚ୍ଚି ରାଉତରାୟଙ୍କ ଚିତ୍ରକଳ୍ପ ଖୁବ୍ ରୋମାଣ୍ଟିକ୍ ଓ ଆବେଗପ୍ରବଣ ଭଳି ମନେହୁଏ। ଉଦାହରଣ ସ୍ୱରୂପ-'ମାଛକାତି ମେଘରାତି', 'ଗହମ ରଙ୍ଗର ଗାଲ', 'ଚର୍ବିପରି ସ୍ନିଗ୍ଧ ନିଦ', 'ଅଫିମ ରାତି', 'ଘାସର ହ୍ରଦ', 'ଶବରୀ ଆଖି', 'ରେଶମ ଶ୍ୱାସ', 'କାମନାର ନୀଳାଭ ଚୌରଙ୍ଗୀ'- ଏହିପରି ରାଶି ରାଶି ଉଦାହାରଣ ଦିଆଯାଇ ପାରେ ।

ତୁଳନାତ୍ମକ ଭାବରେ ନିମ୍ନଲିଖିତ କେତୋଟି ଚିତ୍ରକଳ୍ପର ଦୃଷ୍ଟାନ୍ତରୁ ପ୍ରୟୋଗବାଦୀ କବିତାର ବିଶେଷତ୍ୱ ଜାଣିହେବ । ଉଦାହାରଣ -''ସନ୍ଧ୍ୟା କେବେ ନିଭିଯାଏ ଗାଢ଼ ଲାଲ ବଣନିଆଁ ପରି / ଆକାଶର କଳାଧଳା ବଉଦର ପାହାଡ଼ ଉପରେ / ସନ୍ଧ୍ୟା ପୁଣି କେବେ ନିଭେ କୁଢ଼ କୁଢ଼ କଳା କଳା ବଉଦ ଭିତରେ / କୋଇଲା ଚୂଲୀର ଶେଷ ଝିକିମିକି ରଡ଼ନିଆଁ ପରି/ ଅରଖ ଫୁଲର ଫିକା ବାଇଗଣି ବଉଦ ଉପରେ / ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତଙ୍କ ହଳଦିଆ ପ୍ରଜାପତି ପରି / ଆକାଶର ଫିକା ନେଳି ହଳଦୀ ଓ ବାଇଗଣି ମୁଠା ମୁଠା ବଉଦ ଭିତରେ / ସୂର୍ଯ୍ୟ ପୁଣି କେବେ ନିଭେ ଧୀରେ ଧୀରେ ଛୋଟ ହୋଇ ବ୍ୟାଟେରୀ ନଥିବା ସାନ ଟର୍ଚ୍ଚ ଲାଇଟ୍ ପରି ।'' (ହରେକୃଷ୍ଣ ଦାସ -ଲେ: ଗୁରୁ ମହାନ୍ତି )

'' ବସନ୍ତ ଆସେ ଯେ ଠେଲି /ଧକ୍‌କା ଖାଇ କୁକୁଡ଼ାର ଦିହେ /ଭାଙ୍ଗି ବହୁ ମହୁର ସୋରେଇ/ ମାଟିରେ ଗଡ଼ାଇ ଅବା ଫୁଲବଣ ସଞ୍ଜେ / ବସନ୍ତ ଆସେ ଯେ ଠେଲି ମଳାଚେର ଗଞ୍ଜେ / ଶୁଖିଲା ହାଡ଼ର ରନ୍ଧ୍ରେ ବଜାଇ ସାନାଇ ।'' (ବସନ୍ତର ନିଛକ ଢିଲ୍ଲୀରେ- ଲେ: ସଚ୍ଚି ରାଉରତାୟ )

ଉପରେ ଦିଆଯାଇଥିବା ଉଦାହରଣମାନଙ୍କରୁ ସ୍ପଷ୍ଟ ବୁଝିହେବ ଯେ, ରୂପଗତ ବା ଦୃଶ୍ୟଗତ କୌଣସି ସାମ୍ୟ ପ୍ରତି ଦୃଷ୍ଟିପାତ ନ କରି ପ୍ରୟୋଗବାଦୀ କବିତାରେ ବ୍ୟବହୃତ ରୂପକଳ୍ପରେ କି ଚମତ୍କାର ଭାବଗତ ସାମ୍ୟ ପ୍ରତିଷ୍ଠିତ ହୋଇଛି ଓ ତା'ର ଭାବ ସଚେତନ ପାଠକକୁ କିପରି ଉଦ୍‌ବୁଦ୍ଧ କରିପାରୁଛି। ପ୍ରୟୋଗବାଦୀ କବି ଅତି ସ୍ପଷ୍ଟ ଭାବରେ ଉଗ୍ର ବାମପନ୍ଥୀ କାବ୍ୟଧାରାକୁ ଉପେକ୍ଷା କରି ଆତ୍ମମଗ୍ନ ସ୍ୱଗତୋକ୍ତି ଓ ବ୍ୟକ୍ତିଗତ ନୈରାଶ୍ୟ ବିଜଡ଼ିତ ବିଷାଦବାଦିତା ଭିତରେ ଆତ୍ମପ୍ରକାଶ କଲା । କବି ରାଉତରାୟଙ୍କ 'ସ୍ୱଗତ' ଏହାର ଏକ ଉତ୍କୃଷ୍ଟ ଉଦାହରଣ । ସଚ୍ଚି ରାଉତରାୟଙ୍କ କବିତାରେ ଏହି ସ୍ୱର ପରିବର୍ତ୍ତନ ପାଇଁ ନାନାଦି ବ୍ୟକ୍ତିଗତ କାରଣ ଥିଲେ ବି ୧୯୫୦ ପରବର୍ତ୍ତୀ ଓଡ଼ିଆ କବିତାରେ ଏହା ହିଁ ଥିଲା ଅନିବାର୍ଯ୍ୟ

ଐତିହାସିକ ପରିଣତି । ଏପରିକି ଏହି ସମୟର ତରୁଣତମ କବିମାନଙ୍କ କବିତାରେ ଏହି ଆତ୍ମମଗ୍ନତାର ଚିତ୍ର ଅଧିକରୁ ଅଧିକ ପ୍ରକଟିତ । ରମାକାନ୍ତ ରଥଙ୍କ 'ଚନ୍ଦ୍ରମାର ଚୁଡ଼ି', 'ନବଗୁଞ୍ଜର' ଭଳି କେତୋଟି କବିତାରେ ସମାଜର ଉତ୍କଟ ବୈଷମ୍ୟ ଓ ଅର୍ଥନୈତିକ ଦୁର୍ଗତିର ଚିତ୍ର ପ୍ରତିଫଳିତ ହୋଇଥିଲେ ବି ମୁଖ୍ୟ କାବ୍ୟ ସ୍ୱରଟି ହେଉଛି ଜଗତ, ପ୍ରେମର ବିଫଳତା, ପାପବୋଧ, ଅସହାୟତା, ନୈରାଶ୍ୟ, ନିଃସଙ୍ଗତାବୋଧ, ମୃତ୍ୟୁ ଚେତନା ଓ ବିଚ୍ଛିନ୍ନତାବୋଧ । ପ୍ରକାଶ ଭଙ୍ଗୀରେ ଜଟିଳତା ପ୍ରୟୋଗବାଦୀ କାବ୍ୟଧାରାର ଅନ୍ୟତମ ବିଲକ୍ଷଣ । ପୁଣି ନାନାଦି ବିଚ୍ଛିନ୍ନ ଭାବଧାରାକୁ ଏକତ୍ର କରିବାପାଇଁ ଏହି ସମୟର କବି ଅଧିକରୁ ଅଧିକ ରୂପକ, ପ୍ରତୀକ ଓ ମିଥ୍‌ର ଆଶ୍ରୟ ନେବାକୁ ବାଧ ହୋଇଛି । କବିତାରେ ଅନେକ ଐତିହାସିକ ଅନୁସଙ୍ଗ ଓ ବୈଜ୍ଞାନିକ ମତବାଦ ପ୍ରବେଶ କରିଛି । ଏପରିକି ଐତିହାସିକ ଓ ପୌରାଣିକ କାହାଣୀକୁ ଅବଲମ୍ବନ କରି ଗାଥାକବିତା ଲେଖିଥିବା ଯଶସ୍ୱୀ କବି ରାଧାମୋହନ ଗଡ଼ନାୟକ ମଧ୍ୟ 'ଦୁଇଟି ତାହାର ଡ଼େଣା ' କବିତାରେ ଏହି ନୂତନ ଧାରାର ଶକ୍ତିମତ୍ତାକୁ ପରୀକ୍ଷା କରିବା ପାଇଁ ଆଗ୍ରହୀ ହୋଇ ଉଠିଛନ୍ତି ।

ଏଠାରେ ସ୍ପଷ୍ଟ କୁହାଯାଇପାରେ ଯେ, ପ୍ରୟୋଗବାଦୀ କବିତା ବହୁ ମାତ୍ରାରେ ଶୈଳୀସର୍ବସ୍ୱ ହେବାକୁ ବାଧ ହୋଇଛି । ଶବ୍ଦର ବିଳାସ, ଭାଷାର ଭାସ୍କର୍ଯ୍ୟ, ପ୍ରତୀକ ତଥା ଚିତ୍ରକଳ୍ପର ବ୍ୟାପକ ପ୍ରୟୋଗ ଓ ଇଂରେଜୀ ଢ଼ାଞ୍ଚାର ଅନୁସରଣ ଏହି ସମୟର କବିତାରେ ଅନେକ ପରିମାଣରେ ନୂତନ ପରୀକ୍ଷାକୁ ମାନିନେଇଛି । ଗଦ୍ୟଛନ୍ଦରୁ ସମ୍ପୂର୍ଣ୍ଣ ଗଦ୍ୟଗ୍ରାସ ପର୍ଯ୍ୟନ୍ତ ଏହି ସମୟର କବିତାରେ ଦୁର୍ଗତି ଆସିଛି ଓ, ଏବଂ, କିମ୍ବା, ବା, ଅଥବା ଇତ୍ୟାଦି ସଂଯୋଜକ ଓ ବିଯୋଜକ ଅବ୍ୟୟମାନଙ୍କୁ ପାଦର ଆଦ୍ୟରେ ରଖି କବିତା ମଧ୍ୟ ରଚିତ ହୋଇଛି । ଏହାକୁ ନିଶ୍ଚିତ ଭାବରେ ଇଂରାଜୀ କବିତାର ଅନୁସରଣଜନିତ କାବ୍ୟଶୈଳୀ ବୋଲି କୁହାଯିବ ।

ଏହି ସମୟରେ କିଛି ପରିମାଣରେ କଂକ୍ରିଟ କବିତା ମଧ୍ୟ ଲେଖା ହୋଇଛି । ସଚ୍ଚିଦାନନ୍ଦ ରାଉତରାୟଙ୍କ 'କବିତା ୧୯୬୨' କାବ୍ୟଗ୍ରନ୍ଥର ' ଶୀତ ବା ଦର୍ପଣ' ପ୍ରଭୃତି କବିତାରୁ ଏହାର ଦୃଷ୍ଟାନ୍ତ ମିଳିବ । ଭାବ ଚେତନାର ଅତିରିକ୍ତ ବ୍ୟକ୍ତିଗତତା ହେତୁ ଏ ସମୟର କବିତା କ୍ରମେ ଦୁର୍ବୋଧ ହୋଇ ପଡ଼ିଛି । ସଚ୍ଚି ରାଉତରାୟଙ୍କ 'ସ୍ୱଗତ' ଓ ଅନ୍ୟାନ୍ୟ ବହୁ କବିତା ଓ ରମାକାନ୍ତ ରଥଙ୍କ 'ଇନ୍ଦ୍ରଧନୁ','ପବନ','ମୁଁ','ଆତ୍ମଜ୍ଞାନ' ପରି କେତେକ କବିତା ଏହି ଦୁର୍ବୋଧତାର ସ୍ୱାକ୍ଷର ବହନ କରେ । ଏସବୁ ବିଲକ୍ଷଣ ସତ୍ତ୍ୱେ ଏହି ସମୟର କବିତାରେ ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ପରି ପୂର୍ବତନ ବାମପନ୍ଥୀ କବିମାନେ ଓ ବେଣୁଧର ରାଉତ, ଚିନ୍ତାମଣି ବେହେରା, କୁଞ୍ଜବିହାରୀ ଦାଶ, ରାଧାମୋହନ ଗଡ଼ନାୟକ ପ୍ରମୁଖ କବିମାନେ ରୋମାଣ୍ଟିକ୍ ବାସ୍ତବବାଦୀ କାବ୍ୟ ସ୍ୱରର ବ୍ୟାପକ ପରିଚୟ ଦେଇଛନ୍ତି । ଏହି ପ୍ରୟୋଗବଦୀ କାବ୍ୟଧାରା

ଉତ୍ତର ଷାଠିଏ ବେଳକୁ ଅଧିକ ପୋଖତ ତଥା ଘନୀଭୂତ ହୋଇଛି । ପ୍ରେମ ଓ ଜୀବନ ପ୍ରତି ଏ ସମୟରେ ଆଉ ଆସକ୍ତିପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ନାହିଁ, ବରଂ ଓଡ଼ିଆ କବିତାକୁ ମୃତ୍ୟୁ ଚେତନା , ଅଧିକ ନୈରାଶ୍ୟଘନ ନିଃସଙ୍ଗତା ଓ ବିଚ୍ଛିନ୍ନତାବୋଧ ଆଚ୍ଛନ୍ନ କରିଛି ।

ଉଦାହରଣ ସ୍ୱରୂପ -

''ଏ ସମୟ ଅନ୍ତଃସତ୍ତ୍ୱା ଜୀବନର ଭଗ୍ନାଂଶ କେବଳ / ତେଣୁ ଏ ସହରର ଗଳିରେ ଛିନ୍ନ ପ୍ରାଣହୀନ ଦେହ ଓ କାମନା / ତେଣୁ ଏ ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ ଉଲ୍‌ର ପୋଷାକ / ଭିତରେ ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ /ଅଭିଶପ୍ତ ମଣିଷର ପାପ ଆଉ ଭୟର ପ୍ରେତାତ୍ମା ।'' (ହରେକୃଷ୍ଣ ଦାସ-ଗୁରୁ ମହାନ୍ତି)

ବା

''ମୋର ଚୌଦିଗେ ମୃତ୍ୟୁ ଏବଂ ତା'ର ଥଣ୍ଡା ଥଣ୍ଡା ହାତ
ଚିପିବାକୁ ଆସେ ତମ ବେକ ।''

( ଅନନ୍ତଶୟନ-ରମାକାନ୍ତ ରଥ )

ବା

'' ସବୁ ଯାଏ ଜଳିପୋଡ଼ି ମନ ଓ ଇନ୍ଦ୍ରିୟ / ଜଳିଯାଏ ଅନୁଭୂତି ସକଳ ଭାବନା / ସବୁ ସ୍ୱପ୍ନ, ଆହା ସବୁ ସ୍ୱପ୍ନ, ସବୁ ଆଶ୍ୱାସନା / ଦାଉ ଦାଉ ଧପ ଧପ ଆକାଶକୁ କୁଦାମାରେ ନିଆଁ / ଲହ ଲହ ରକ୍ତଜିହ୍ୱ ଆକାଶ ପୃଥିବୀ ଭରେ ସ୍ଫୁଲିଙ୍ଗ ଓ ଧୂଆଁ ।''

( ମୃତ୍ୟୁନାଚ-ସୀତାକାନ୍ତ ମହାପାତ୍ର)

ଏହିସବୁ ବଳିଷ୍ଠ ଉଦାହରଣ ଗୁଡ଼ିକରୁ ଆଧୁନିକ ଯନ୍ତ୍ରଣାଦାୟକ ପରିବେଶ, ମୃତ୍ୟୁର ଭୟ ଓ ଏକ ଜୀବନ୍ତ ଦହନ ଭିତରେ ବଞ୍ଚିଥିବା କାବ୍ୟନାୟକର ସ୍ଥିତି ବେଶ୍ ପ୍ରତିଫଳିତ ହୁଏ । ମୃତ୍ୟୁ ଭାବନା ତଥା ତଜ୍ଜନିତ ଆତଙ୍କ ଭିତରୁ ତା'ର ମୁକ୍ତି ନାହିଁ । ରମାକାନ୍ତଙ୍କ ' ଅନେକ କୋଠରୀ' ଓ ସୀତାକାନ୍ତଙ୍କ ' ଅଷ୍ଟପଦୀ'ର ଅତି ପ୍ରାଞ୍ଜଳ ଓ ମୁଖ୍ୟ ସ୍ୱରଟି ଏହି ମୃତ୍ୟୁ ଭାବନାକୁ କେନ୍ଦ୍ରକରି ସଙ୍ଗଠିତ । ରମାକାନ୍ତଙ୍କ 'କେତେଦିନର' (୧୯୬୩) କାବ୍ୟ ସ୍ୱରରେ ଦେହ ଓ ତାକୁ କେନ୍ଦ୍ରକରି ଯେତେ ପ୍ରେମ, ପ୍ରଣୟ, ବ୍ୟର୍ଥତା, ଅବସାଦ, ଆସକ୍ତି, ଅନାଶକ୍ତି, ଶୂନ୍ୟତା ଓ ନୈରାଶ୍ୟବୋଧ କାବ୍ୟନାୟକକୁ ଆଚ୍ଛନ୍ନ କରିଥିଲା, 'ଅନେକ କୋଠରୀ' (୧୯୬୩)ର ମୃତ୍ୟୁ ଭାବନା ଓ ଦେହାତୀତକୁ ଯାତ୍ରା ମଧ୍ୟରେ ତାହା ଏକ ଉତ୍ତରଣର ପ୍ରତିଶ୍ରୁତି ରଖେ । ସେହିପରି ସୀତାକାନ୍ତ ତାଙ୍କ 'ଦୀପ୍ତି ଓ ଦ୍ୟୁତି' (୧୯୬୩)ର ବ୍ୟକ୍ତିଗତ ଜଗତ ଭିତରୁ 'ଅଷ୍ଟପଦୀ' (୧୯୬୭)ର ପରିବ୍ୟାପ୍ତ ଜଗତ ଭିତରକୁ ଓ ବ୍ୟାପକ ମାନସିକ ପ୍ରତିକ୍ରିୟା ମଧ୍ୟକୁ

ଲମ୍ଫ ପ୍ରଦାନ କରିଛନ୍ତି ଓ ହଠାତ୍ ତାଙ୍କ କବିତା ଏକ ଅପୂର୍ବ ସିଦ୍ଧି ଆଡ଼କୁ ମୁହାଁଇ ଯାଇଛି । ବିଶେଷତଃ ମିଥ୍ ଓ ପ୍ରତୀକର ବ୍ୟାପକ ପ୍ରୟୋଗ ମାଧମରେ ସୀତାକାନ୍ତ ସାମ୍ପ୍ରତିକ ମଣିଷ ଜୀବନର ଅସହାୟ ଯନ୍ତ୍ରଣାଦଗ୍ଧ ମାନସିକତାକୁ ଅଖଣ୍ଡ କାବ୍ୟାବେଗ ମଧ୍ୟରେ ପ୍ରକାଶ କରିବାକୁ ଚେଷ୍ଟା କଲାବେଳେ ଶ୍ରୀ ରଥ ସେଇ ଜ୍ୱଳନକୁ ପ୍ରକାଶ କରିଛନ୍ତି ଗଦ୍ୟଭଙ୍ଗୀରେ ଓ ବଳିଷ୍ଠ ରୂପକଳ୍ପ ମାଧମରେ । ଏହି ଦୃଷ୍ଟିରୁ ଶ୍ରୀ ରଥ ଓ ଶ୍ରୀ ମହାପାତ୍ର ଆଧୁନିକ ଓଡ଼ିଆ କବିତାର ଯଥାର୍ଥ ଉତ୍ତରାଧିକାରତ୍ୱ ଦାବି କରିବେ ।

'କବିତା (୧୯୬୨)'ରେ ଚାତୁର୍ଯ୍ୟୋକ୍ତି, ବୁଦ୍ଧିଦୀପ୍ତତା ଓ ରୂପକଳ୍ପର ପର୍ଯ୍ୟାପ୍ତ ପ୍ରୟୋଗ କବି ରାଉତରାୟଙ୍କୁ ଏକ ଶୀର୍ଷ ସ୍ଥାନରେ ଉପନୀତ କରାଇ ଦେଇଛି । ଠିକ୍ ସେହିପରି ଗୁରୁପ୍ରସାଦ ମଧ ଏହି ସମୟ ସୀମା ମଧରେ ତାଙ୍କ କାବ୍ୟ ଚେତନାର ଶୀର୍ଷତମ ସ୍ଥାନରେ ପହଞ୍ଚି ପାରିଛନ୍ତି; କିନ୍ତୁ ପରେ ପରେ ଏହି ଦୁଇ ବିଶିଷ୍ଟ କବିଙ୍କଠାରୁ କବିତାର ନେତୃତ୍ୱ ଛଡ଼ାଇ ନେଇଛନ୍ତି ଯଥାକ୍ରମେ ରମାକାନ୍ତ ଓ ସୀତାକାନ୍ତ । ବର୍ଷିୟାନ ଓ ପ୍ରତିଷ୍ଠିତ କବିମାନେ କାବ୍ୟ ରାଜ୍ୟରୁ କ୍ରମେ ଅପସାରିତ ହୋଇ ଯାଇଥିଲାବେଳେ ଏକ ନୂତନ କବିଗୋଷ୍ଠୀର ଅଭ୍ୟୁଦୟ ଉତ୍ତର ଷାଠିଏର କବିତା ରାଜ୍ୟରେ ଏକ ଆଲୋଡ଼ନ ସୃଷ୍ଟି କରିଥିବା ଲକ୍ଷ୍ୟ କରାଯାଏ ।

ପ୍ରୟୋଗବାଦୀ ଓଡ଼ିଆ କବିତାର ଅନ୍ୟ ଏକ ବଳିଷ୍ଠ ବିଭାବ ଭାବେ ମିଥ୍‌ର ବ୍ୟାପକ ପ୍ରୟୋଗ ଓଡ଼ିଆ କାବ୍ୟ ଜଗତକୁ ବେଶ୍ ଭାବପୂର୍ଣ୍ଣ କରିଛି । ଗୁରୁପ୍ରସାଦ ତାଙ୍କ 'କାଳପୁରୁଷ' ଓ ' ଅକ୍ରୁର ଉବାଚ'ରେ ଏହି ମିଥ୍‌ର ପରୀକ୍ଷା କଲେ । ଆଧୁନିକ ଜୀବନର ନାନାବିଧ ମାନସିକ ଓ ଆଧିଭୌତିକ ଯନ୍ତ୍ରଣାରେ ଘାଣ୍ଟି ହେଉଥିବା ମଣିଷ ଅକ୍ରୁର ହୋଇପାରେ ବା ପରୀକ୍ଷିତ ବି ହୋଇପାରେ । ପୁରାଣ ଏଠାରେ କେବଳ ପ୍ରଚ୍ଛଦପଟ ଭାବରେ ଆଧୁନିକ ଜୀବନ ଯନ୍ତ୍ରଣାକୁ ପ୍ରତିପନ୍ନ କରୁଛି । ଆଜି ବି ମଣିଷ ଅଜସ୍ର ଆତ୍ମକୃତ ବେଦନାର ବୋଝକୁ ନେଇ ମୁକ୍ତି ପାଇଁ ବ୍ୟାକୁଳଭାବେ ଉପରକୁ ହାତ ଟେକୁଛି । ତେଣୁ ଗୁରୁ ମହାନ୍ତି ତାଙ୍କ କାବ୍ୟଚିନ୍ତାରେ ମିଥ୍‌କୁ ଏକ ଅପରିହାର୍ଯ୍ୟ ଅଙ୍ଗ ଭାବରେ ଗ୍ରହଣ କରି ଓଡ଼ିଆ କବିତାକୁ ଏ ଯେଉଁ ଐଶ୍ୱର୍ଯ୍ୟ ପ୍ରଦାନ କଲେ ସୀତାକାନ୍ତଙ୍କ 'ଅଷ୍ଟପଦୀ'ରେ ତା'ର ଏକ ପରିପୂର୍ଣ୍ଣ ବିକାଶ ଘଟିଥିବା ଲକ୍ଷ୍ୟ କରାଯାଏ ।

ଜୀବନ ଓ ମୃତ୍ୟୁର ଅନୁଭବ ସହିତ ପାପ, ପୁଣ୍ୟ ଓ ଆଧାତ୍ମିକ ଅନୁଯୋଗର ଅନୁଭୂତି ବିଜଡ଼ିତ । ' ଅଷ୍ଟପଦୀ'ର କାବ୍ୟ ନାୟକ ଅନୁରୂପ ଭାବେ ଆଧୁନିକ ନର୍କରେ ଦଗ୍ଧୀଭୂତ ହେଲେ ବି ତା' ପାଇଁ ମୃତ୍ୟୁ ଭାବନାଟି ଅଧିକ ତୀବ୍ର । ଏହି ନର୍କରେ ଜୀବନ ନାହିଁ କି ମୃତ୍ୟୁ ନାହିଁ, ଅଛି ଏକ ଜୀବୋନ୍ମୃତ ଅବସ୍ଥା । ପୁନଶ୍ଚ ଏଠାରେ ପାପ ପୁଣ୍ୟର ଅନୁଭୂତି ମଧ ଭ୍ରଷ୍ଟ ଓ ବିପର୍ଯ୍ୟସ୍ତ । ତେଣୁ ଏପରି ଏକ କରୁଣ ଅବସ୍ଥାରୁ ମୁକ୍ତି ପାଇଁ ଗୁରୁପ୍ରସାଦଙ୍କ ଉଦ୍ଧବ ବା ଅକ୍ରୁର ଯେପରି ଉପରକୁ ହାତ ଟେକି ଉଦ୍ଧାର ପାଇଁ ଦୟିନୀ କରନ୍ତି, ସୀତାକାନ୍ତଙ୍କ ଯନ୍ତ୍ରଣା ପୀଡ଼ିତ

କାବ୍ୟ ନାୟକମାନେ ତା' ନ କଲେ ବି ଏକ ମୁକ୍ତ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ଜୀବନ ପାଇଁ ମୃତ୍ୟୁର ଯନ୍ତ୍ରଣା ଓ ସ୍ଥିତିର ସୀମାବଦ୍ଧତା ଭିତରୁ ଏକ ପରିପୂର୍ଣ୍ଣ ସୁନ୍ଦର ଜୀବନର ଆସ୍ୱାଦନ ନିମନ୍ତେ ଆକୁଳତା ପ୍ରକାଶ କରିଛନ୍ତି । ଭାରତୀୟ ପୁରାଣବର୍ଣ୍ଣିତ ଦେବକୀର ଅଷ୍ଟମ ଗର୍ଭ, ଭୀମର କାଳରଡ଼ି, କୁବୁଜାର କୃଷ୍ଣପ୍ରାପ୍ତି ବା ଗ୍ରୀକ୍ ମାଇଥୋଲୋଜିର ସୋଲନ୍‌ର ସମୁଦ୍ର ସହିତ ଆତ୍ମୀୟତା ଭିତରେ ମୁକ୍ତି ବା ବୃହତ୍ତର ମୂଲ୍ୟବୋଧର ଏହି ଚିତ୍ରକୁ ଉପଲବ୍ଧି କରାଯାଇ ପାରେ ।

ମୋଟ ଉପରେ ମିଥ୍‌ର ବ୍ୟବହାର ଫଳରେ ଓଡ଼ିଆ କବିତା ସମୃଦ୍ଧ ହୋଇଛି ଓ ଏହା ମାଧ୍ୟମରେ ମଣିଷର ଜଟିଳ ଭାବନାରାଜି ସ୍ୱଚ୍ଛନ୍ଦ ଭାବରେ ପ୍ରକାଶିତ ମଧ୍ୟ ହେଉଛି ।

ଷଷ୍ଠ ଦଶନ୍ଧିର କବିତାରେ ମିଥ୍ ପ୍ରୟୋଗରେ ଗୁରୁପ୍ରସାଦ ଓ ସୀତାକାନ୍ତଙ୍କ ସିଦ୍ଧ ଅନ୍ୟାନ୍ୟ ସାଧାରଣ ହେଲେ ବି ବିନୋଦ ନାୟକ, ବେଣୁଧର, ଚିନ୍ତାମଣି, ଦୀପକ, ବ୍ରଜନାଥ, କମଳାକାନ୍ତ ଓ ପ୍ରତିଭା ଶତପଥୀ ପ୍ରଭୃତିଙ୍କ କବିତାରେ ଏହାର ପ୍ରୟୋଗ ଉଲ୍ଲେଖଯୋଗ୍ୟ । ଉତ୍ତର ସତୁରୀର ଓଡ଼ିଆ କବିତାରେ ଏକ ମାନସିକ ଉତ୍ତରଣ ଚିହ୍ନ କ୍ରମେ ସ୍ପଷ୍ଟତର ହୋଇ ଉଠିଛି ଓ ଉତ୍ତର ସତୁରୀ କାଳରେ ଏହା ବେଶ୍ ସଫଳ ଭାବରେ ନିଜକୁ ଅଭିବ୍ୟକ୍ତ କରିପାରିଛି । ଓଡ଼ିଆ କବିତାର ଏହି ଉତ୍ତରଣ ପର୍ବରେ କବିର ମେଟାଫିଜିକାଲ୍ ଦୃଷ୍ଟିଭଙ୍ଗୀ ଓ ବାକ୍-ବୈଦଗ୍ଧ୍ୟ କ୍ରମେ ବିଶେଷ ଭାବରେ ପ୍ରକାଶ ପାଉଛି । ଏହି ଅନୁଭୂତି ପାଖରେ ବ୍ୟକ୍ତିଗତ ପ୍ରେମଜନିତ ବିଫଳତା, ନୈରାଶ୍ୟ, ଯନ୍ତ୍ରଣାବୋଧ ନିଃଶେଷିତ ହୋଇଯାଇ ତା' ମନରେ ଆଶାର ଉଜ୍ଜ୍ୱଳ ମୟୂଖ ପ୍ରକାଶିତ ହେଉଛି । ଏପରିକି ବାକ୍‌ରୀତିମୂଳକ ଛନ୍ଦ ପ୍ରୟୋଗରେ ଏହି ସାବଲୀଳତା ମଧ୍ୟ ସୁବୋଧ ହୋଇ ଉଠୁଛି । ଏଣିକି କବିତା ହେଉଛି ଅଧିକ ସରଳ ଏବଂ ଭାବବୃତ୍ତିଟି ସ୍ପଷ୍ଟ ଓ ପ୍ରଶସ୍ତ । ସବୁଠାରୁ ଆକର୍ଷଣୀୟ ଭାବରେ ମିଥ୍, ପ୍ରତୀକ, ରୂପକ ଓ ରୂପକଳ୍ପର ପ୍ରୟୋଗରେ କାବ୍ୟବିଭବ ପ୍ରକଟିତ ହେବାରେ ଲାଗିଛି । ସୁତରାଂ ଏହା ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ ।

□□□

# ଆଧୁନିକ କବିତାର ଅତୀତ ଓ ବର୍ତ୍ତମାନ

•

ଡକ୍ଟର ବିଦ୍ୟୁତପ୍ରଭା ନାୟକ



*ଅଧ୍ୟାପିକା , ଓଡ଼ିଆ ବିଭାଗ,*
*ଜେ.କେ.ବି.କେ. କଲେଜ, କଟକ*

**କବିତାରେ ଆଧୁନିକତାର ଉନ୍ମେଷ:**

ସମାଲୋଚକ ଫ୍ରାଙ୍କ୍ କରମୋଡ୍ (Frank Kermode) ୧୯୦୭ରୁ ୧୯୨୫ ମସିହା ମଧ୍ୟରେ ଆଧୁନିକତାର ଉନ୍ମେଷ ହୋଇଥିଲା ବୋଲି କହୁଥିବାବେଳେ ରିଚାର୍ଡ଼ ଏଲ୍‌ମ୍ୟାନ୍ (Richard Ellman) ୧୯୦୦ ମସିହାରେ ଏହା ଘଟିଥିବାର ମତ ଦିଅନ୍ତି । ୧୯୨୨ରେ ଜେମ୍‌ସ ଜୟେସ୍‌ଙ୍କର 'Ulysses' ଉପନ୍ୟାସ, T.S.Eliot ଙ୍କର 'The Wasteland' କାବ୍ୟ ଓ ଉଇଲିୟମ୍ ବ୍ରେକ୍‌ଟଙ୍କର 'Baal' ନାଟକ ଆଦିର ପ୍ରକାଶନ ସମୟକୁ ଆଧୁନିକତାର ପ୍ରକୃତ ଉନ୍ମେଷକାଳ ବୋଲି ଗ୍ରହଣ କରାଯାଏ । କାରଣ ଏହି ସମୟ ବେଳକୁ ସମଗ୍ର ପୃଥିବୀରେ ସମାଜତତ୍ତ୍ୱ, ରାଜନୀତି, ଦର୍ଶନତତ୍ତ୍ୱ, ଅର୍ଥନୀତି, ଶିଳ୍ପ, ବିଜ୍ଞାନ ଓ ମନସ୍ତତ୍ତ୍ୱ ଆଦି ବିଭିନ୍ନ କ୍ଷେତ୍ରରେ ନୂତନ ଆଭିମୁଖ୍ୟମାନ ସୃଷ୍ଟି ହୋଇଥିଲା । ଫ୍ରାନ୍‌ସ ଓ ଜର୍ମାନୀରେ ପ୍ରବର୍ତ୍ତିତ ଏକ ଦାର୍ଶନିକ ତତ୍ତ୍ୱ ଉପରେ ଆଧାରିତ ସଂସ୍ଥିତିବାଦ ବା Existentialism ସେ ସମୟରେ ଦାର୍ଶନିକମାନଙ୍କ ଅପେକ୍ଷା କବିମାନଙ୍କୁ ଅଧିକ ପ୍ରଭାବିତ କରିଥିଲା । (୧) ସଂସ୍ଥିତିବାଦ (Existentialism), (୨) ଅତି-ବସ୍ତୁବାଦ (Surrealism), (୩) ଭବିଷ୍ୟଦ୍‌ବାଦ (Futurism), (୪) ପ୍ରତୀକବାଦ (Symbolism) ଏବଂ ଚିତ୍ରକଳ୍ପ, ଅଭିବ୍ୟକ୍ତିବାଦ ଓ ପ୍ରଭାବବାଦ (Imagism, Expressionism and Impressionism ) ଆଦି ବିଭିନ୍ନ 'ବାଦ' ଗୁଡ଼ିକ ପାଶ୍ଚାତ୍ୟ ଦେଶମାନଙ୍କରେ ମଣିଷର ବିଡ଼ମ୍ବିତ ଅସ୍ଥିର ଜୀବନ ଭିତରୁ ସୃଷ୍ଟିହୋଇ କ୍ରମେ ଆମ ସାହିତ୍ୟକୁ ପ୍ରଭାବିତ କରୁଥବାରୁ, ଅନେକେ ଆଧୁନିକ ସାହତ୍ୟକୁ ବିଦେଶୀ ଛାଞ୍ଚର ବିକଳ ଅନୁକୃତି

ବୋଲି କହି ସମାଲୋଚନା କଲେ । ପ୍ରଥମ ମହାଯୁଦ୍ଧର ଅନୁଭୂତିକୁ ନେଇ ଏଲିଅଟ୍ ୧୯୨୨ରେ ଲେଖିଥିଲେ 'Wasteland' । ତତ୍‌କାଳୀନ ଅଧଃପତନ ଓ ନୈରାଶ୍ୟ ସହିତ ସହର ଜୀବନର କୁତ୍ସିତ ପରିବେଶ, ଆଧୁନିକ ଯାନ୍ତ୍ରିକ ଜୀବନ, ଦୁର୍ଭିକ୍ଷ ଓ ଅନଟନ , ଅବକ୍ଷୟ ଓ ଶୂନ୍ୟତା ଥିଲା ସେ କବିତାର ଭାବଭୂମି । କବିଙ୍କର ପ୍ରତ୍ୟକ୍ଷାନୁଭୂତି ଜନିତ ନୈରାଶ୍ୟପାଠକକୁ ସାମଗ୍ରିକ ଭାବରେ ଅଭିଭୂତ କରେ । ଗୁରୁପ୍ରସାଦ ୧୯୬୦ ରେ ତାହାର ଅନୁକରଣରେ 'କାଳପୁରୁଷ' ରଚନା କରି ଯେଉଁ ନୂତନତାକୁ ପ୍ରକାଶ କଲେ ,ସେଥିରେ କବିତାର ଅନ୍ତରଙ୍ଗ ଆତ୍ମା ଆମ ପାରିପାର୍ଶ୍ୱିକ ଜୀବନର ପ୍ରତିନିଧିତ୍ୱ କରୁନାହିଁ ବୋଲି କେତେକ କହିବା ବେଳେ ଏହାର ବହିରଙ୍ଗ ଶୈଳୀର ଚମତ୍କାରିତା ପ୍ରତି ଶ୍ରଦ୍ଧା ପୋଷଣ କଲେ । ଏହା ମଧ୍ୟରେ ୧୯୪୩ରେ ଜାଁ-ପଲ୍ ସାର୍ତ୍ରେ 'Being and Nothingness'ଗ୍ରନ୍ଥ ଛପାଇ ସ୍ଥିତିବାଦ ଦର୍ଶନର ଉପସ୍ଥାପନା କରି ସାରିଥିଲେ । ପାଶ୍ଚାତ୍ୟୋନ୍ମୁଖୀ ଆମ ସାହିତ୍ୟରେ ଯୁଗଯନ୍ତ୍ରଣା, ଜୀବନ ଜଟିଳତା, ବ୍ୟକ୍ତିବିଚ୍ଛିନ୍ନତା, ଅସହାୟବୋଧ, ଆତ୍ମନିର୍ବାସନ, ବ୍ୟର୍ଥତା, ନୈରାଶ୍ୟ, ଆର୍କିଟାଇପ୍ ଓ ଚେତନା ପ୍ରବାହ ଆଦି ସାରସ୍ୱତ ସୂତ୍ରମାନଙ୍କୁ ଲକ୍ଷ୍ୟ ରଖି ଆଧୁନିକତାର ପ୍ରୟୋଗ କରାଗଲା । କେବଳ କେତେକ ସ୍ଥଳରେ ପୁରାବୃତ୍ତିର (Myth) ପ୍ରୟୋଗ ଛଳରେ ଅତୀତ ସାହିତ୍ୟର ସଂସ୍ରବ କିଛି ରହିଲା । ସଚ୍ଚି ରାଉତରାଙ୍କର ପାଣ୍ଡୁଲିପି ଓ କବିତା-୧୯୬୨ ଆଦିରେ ଚିତ୍ରକଳ୍ପ ପ୍ରୟୋଗ ବେଶ୍ ଆଧୁନିକ ମନେହେଲା, ଯେତେବେଳେ ସେ କହିଲେ -

''ହୀରାର ମାଛର ତିର୍ଯକ ଗତିକୋଣ
ହଠାତ୍ ଫେରିଲା, କିପରି ଫେରିଲା ଜାଣ ?
ସୁନାର ମାଛର ଆଖିର ପ୍ରସ୍ରବଣ
ହଠାତ୍ ଯେ ତା'ର ତରୀପଥେ ଦେଲା ଧକ୍‌କା ।'' (ପାଣ୍ଡୁଲିପି-ଜ୍ୟାମିତି)

କବିତା ବାକ୍‌ଭଙ୍ଗୀର ଯେତେ ନିକଟବର୍ତ୍ତୀ ହେଲା ସେ ସେତେ ହୃଦୟଗ୍ରାହୀ ହେଲା । ଚିତ୍ରକଳ୍ପର ପ୍ରାଧାନ୍ୟ ବିଷୟରେ ପାଶ୍ଚାତ୍ୟ ମତର ଉଦ୍ଧାର କରାଯାଇପାରେ - " A poetry of images endeavours to arrest you to make you continuously see a physical thing to present you gliding through an abstract process. " ( Speculations: New York 1923) ।

T.S.Eliotଙ୍କର ଏକ କବିତାରେ କୁହାଯାଇଛି-

"When the evening is spread against the sky
Like a patient etherized on the table."

ଅପରେସନ୍ ହେବା ନିମନ୍ତେ ଟେବୁଲ୍ ଉପରକୁ ଆନୀତ ଏକ ଅବସନ୍ନ ରୋଗୀ ଭଳି ସନ୍ଧ୍ୟା, ଆକାଶର ଗୋଟାଏ କୋଣରେ ଅତି ଦୟନୀୟ ଭାବରେ ଶୋଇଛି । ଏହିପରି ଚିତ୍ରକଳ୍ପ

ମାଧମରେ କବିତାର ଭାବସତ୍ତା କବିମାନଙ୍କୁ ଆକୃଷ୍ଟ କରିଥିଲା । ମୁକ୍ତଛନ୍ଦ (Verselibre) ଆଧୁନିକ କବିତାର ମର୍ମକଥା ବ୍ୟକ୍ତ କରିବାରେ ନୂଆ form ବା ଆଙ୍ଗିକ ହୋଇଗଲା । ଏହି କ୍ରମରେ ଭଗବାନଙ୍କ ବିରୋଧରେ ଅନନ୍ତ ପଟ୍ଟନାୟକଙ୍କର କଣ୍ଠସ୍ୱର ହେଲା-

''ଈଶ୍ୱର ସେ ବିଶ୍ୱର ସେ କେ ? କି ଯାଏ ଆସେ ତାହାର ସାଥେ
ତାହାରି ପାଇଁ ଅନ୍ଧ ଭଳି ବୁଲୁରେ କିମ୍ବା ରିକ୍ତ ହାତେ ?''

ପ୍ରଗତିବାଦୀ କବିତାର ଏହି ମୁକ୍ତସ୍ୱର ପୁରାତନ ରୀତିନୀତି ବିରୋଧରେ ଉଦ୍‌ଘୋଷଣା ପ୍ରକାଶ କରିବାର ସ୍ୱଷ୍ଟ ପ୍ରମାଣ । ମାନବିକ ସମ୍ବେଦନରେ ଉର୍ଦ୍ଧ୍ୱସ୍ୱଳ ଆଧୁନିକ ଚେତନା କିପରି ମୁକ୍ତହେଲା, ଏହାହିଁ ତା'ର ନିଦର୍ଶନ । ବାକ୍‌ରୀତି ଓ କାବ୍ୟିକରୀତିର ସମନ୍ୱୟ ନ ହେଲେ ପାଠକ ନିକଟରେ ଏହା ପହଞ୍ଚିବା ସହଜ ନୁହେଁ ବୋଲି ପ୍ରତୀତ ହେଲା । ମୁକ୍ତ କବିତା ଓ ଗଦ୍ୟ କବିତାର ପୂର୍ବସୂରୀ ହ୍ୱିଟ୍‌ମ୍ୟାନ୍, ଡ୍ରାଇଡେନ୍, ଲରେନ୍‌ସ ଏବଂ ଫରାସୀ ପ୍ରତୀକବାଦୀ କବିଗୋଷ୍ଠୀ - ମାଲାର୍ମେ ଓ ଭାଁବୋ ଗଦ୍ୟଧର୍ମୀ କବିତା ଲେଖି ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠା ଲାଭକଲେ । ମୁକ୍ତ-ଛନ୍ଦ କବିତାଯୋଗୁ ଏଜରାପାଉଣ୍ଡ, ଏଲିଏଟ୍, ଆରାଁଗ, ସ୍ପେଣ୍ଡର ପ୍ରଭୃତି ଖ୍ୟାତିଲାଭ କରିଛନ୍ତି । ସଚ୍ଚି ରାଉତରାୟ କହନ୍ତି- '' ପଦ୍ୟର ଆବେଗ ସଙ୍ଗେ ଗଦ୍ୟର ସୋଜା, ସରଳ, ସାବଲୀଳ ପ୍ରକାଶର ସମ୍ମିଶ୍ରଣ- ଏହାହିଁ ହେଉଛି ଗଦ୍ୟଧର୍ମୀ ନୂତନ କବିତାର ବୈଶିଷ୍ଟ୍ୟ ଓ ଉପଯୋଗର ପ୍ରଧାନ ହେତୁ ।''

କବିତା ହେଉଛି ଅନୁଭୂତିର ଆବେଗମୟୀ ପରିପ୍ରକାଶ । ଆଜିର କବି କଳ୍ପନାକୁ ସ୍ୱୀକାର କରେ କେବଳ ବାସ୍ତବତାର ଉପଲବ୍‌ଧି ପାଇଁ । ଏହି ଉପଲବ୍‌ଧି ପାଇଁ ଅନୁଭବର ସବୁ ଦ୍ୱାରକୁ ଉନ୍ମୁକ୍ତ କରିଦେଲେ ଚିନ୍ତା, ଯୁକ୍ତି, ଜ୍ଞାନ, ପ୍ରଜ୍ଞା, ଆବେଗ ଓ କଳ୍ପନା ସବୁ ଏକତ୍ରିତ ହୋଇଯା'ନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ କହନ୍ତି -'' ଆଧୁନିକ କାବ୍ୟର କାର୍ଯ୍ୟ ମନହରଣ ନୁହେଁ, ମନ ଜୟ । ଲକ୍ଷ୍ୟ ଲାଳିତ୍ୟ ନୁହେଁ, ଯଥାର୍ଥ ବିଷୟୀର ଆତ୍ମତା ନୁହେଁ, ବିଷୟର ଆତ୍ମତା ।''

ଆଧୁନିକ ଯୁଗ ବୌଦ୍ଧିକ ବିକାଶର ଏକ ପରିପ୍ରକାଶ । ଏକ ଧ୍ୱଂସମୁଖୀ କ୍ଷୟିଷ୍ଣୁ ପରିବେଶରେ ବଞ୍ଚି ରହିଥିବା ମଣିଷଟି ଯଦି ବାରମ୍ବାର ଉପଲବ୍‌ଧି କରେ ଯେ, ବିଜ୍ଞାନ ନିୟନ୍ତ୍ରିତ ସମାଜରେ ଈଶ୍ୱର ମୃତ, ତେଣୁ ଈଶ୍ୱରସୃଷ୍ଟ ସନ୍ତାନ ଭାବେ ନିଜ ଭିତରେ କିଛି ଗର୍ବ ଓ ଗୌରବକୁ ସେ ଖୋଜି ପାଏ ନାହିଁ । ନିଜ ଜୀବନ ପ୍ରତି ଏକ ବିଷାଦଭାବ ପୋଷଣ କରିବା ସହିତ ଏକ ଖଣ୍ଡିତ ଓ ବିଭକ୍ତ ପରିସ୍ଥିତିରେ ନିଜର ଅସହାୟତାକୁ ସେ ନିଜେ ହିଁ ବ୍ୟଙ୍ଗ କରେ । ପ୍ରତି କ୍ଷଣରେ ଅସହାୟତାର କରୁଣ ମୂର୍ଚ୍ଛନା ଭିତରେ ଜୀବନକୁ ସାଇତି ରଖିବା ହୋଇଛି କବିର ପ୍ରଧାନ ଆକାଂକ୍ଷା । ହତାଶା ଓ ନୈରାଶ୍ୟ ମଧ୍ୟରେ ମଣିଷ ବଞ୍ଚିଛି ଏବଂ ଏହି ବଞ୍ଚିବା ହିଁ ହେଉଛି ତାର ଏକ କଳା ।

କାର୍ଲମାର୍କସଙ୍କ ନୂତନ ସାମ୍ୟବାଦୀ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିବା କବି ସଚ୍ଚି ରାଉତରାୟଙ୍କ କବିତାରେ ପ୍ରଥମେ କବି ଟର୍ଣ୍ଣରଙ୍କର 'I hunt the velvet tiger in the prusian jungle'ସ୍ୱର ପରି 'ମୁଁ ଶିକାର କରେ ଜଙ୍ଗଲର ସେଇ ଉଚ୍ଛିଷ୍ଟତ୍ୟାଗୀ ମଖମଲଦେହୀ ବାଘ' ସେପରି କୌଣସି ପ୍ରଭାବ ପକାଇ ନ ପାରି ଏକ ମାନସିକ ଫେସନରେ ପରିଣତ ହେଲା । ମାତ୍ର ଅଧିକ ପ୍ରଭାବଶାଳୀ ହେଲା ତାଙ୍କର 'କୋଣାର୍କ'ର କଙ୍କାଳ ଉପରେ ଦରିଦ୍ରର ଜୀବନଗୀତିକୁ ଏହିପରି ଖୋଜିବାରେ - ''ତୁମେ ଦେଖୁଅଛ ଶିଳାରେ ତା'ର ତ ରମ୍ୟକଳାର ରୂପ /ମୁଁ ଦେଖୁଛି ତହିଁ କୋଟି କଙ୍କାଳ ଭଗ୍ନ କୁକୁର ସ୍ତୂପ '। ପୁଣି ଶେଷରେ '' ଆଭିଜାତ୍ୟର ବରାଦର ସେଠି ସାଆଁତିଆ ରୁଚି ଛାଂଚେ, ନଗ୍ନ ନଟୀର ଅଧର ଚରଣ ଚପଳ ଛଂଦେ ନାଚେ/ ସେଠି ଅଛି ଖାଲି ଫୁଲର ଫସଲ, ସପନର ନୀଳ ଢ଼େଉ/ହୀରାର ସୂର୍ଯ୍ୟ ପାହାଂତି ପ୍ରହରେ ପ୍ରଣାମ ତା ନେଉ ନେଉ / କହିଯାଏ ଧରା କାନେ , ଜୀବନର ଯେତେ କ୍ଷତ ଅପମାନ ଗାଇନାଇ କିଏ ଗାନେ / ରମ୍ୟ କଳାର ଲୀଳା, କିଛିତ କହିନି ମଣିଷର କଥା, କହିବାକୁ ଯାହା ଥିଲା ''। ଏଠାରେ ସାମ୍ୟବାଦ ସହିତ ମାବବବାଦର ବିଜ୍ଞାପନ ହିଁ ଥିଲା ତା'ର ନୂତନତା । ସଚ୍ଚି ରାଉତରା, ଅନନ୍ତ ପଟ୍ଟନାୟକ, ଭାନୁଜୀ ରାଓ, ରଘୁନାଥ ଦାସ ( ଶ୍ରୀ ଜଟାୟୁ) ପ୍ରମୁଖ କବିମାନଙ୍କର ବୈପ୍ଳବିକ ସ୍ୱର ପ୍ରଗତିବାଦୀ କାବ୍ୟଚେତନାରେ ଝଙ୍କୃତ ହୋଇଥିଲା ।

୧୯୪୫ ପରବର୍ତ୍ତୀ କବିତାରେ ମାନବିକ କ୍ରିୟାହିଁ କବିତାର ଚିରନ୍ତନ ସ୍ୱର, ଯାହା ରାଉତରାୟଙ୍କ କବିତାରେ ବୈପ୍ଳବିକ ମାନସକୁ ଏକ ରୋମାଣ୍ଟିକ ବାସ୍ତବବାଦୀ ଭୂମିକା ଉପରେ ଉପସ୍ଥାପନ କରିଛି । ଏହି ରୋମାଣ୍ଟିକ Realisation ସହିତ ରୂପଚେତନା, ଉପମା ଓ ନୂତନ ଚିତ୍ରକଳ୍ପରେ ସମୃଦ୍ଧ ତାଙ୍କର କାବ୍ୟ ଆଙ୍ଗିକକୁ ''ଭାନୁମତୀର ଦେଶେ ' କବିତାରେ ଲକ୍ଷ୍ୟ କରାଯାଇପାରେ-

''ତାର ମନେହେଲା ଏଇ ସକଳ ଅନ୍ଧାରର/ ସମୁଦ୍ର ଭିତରେ ବିନତାର ଶୁଭ୍ରହାତ ଯେମିତି ଏକ ହଳଦିଆ ଦ୍ୱୀପ/ଉପରେ ସପ୍ତର୍ଷିର ଶ୍ୟାମଳ ଅନ୍ତରୀପ ।''

ନାୟିକାର ପ୍ରସାରିତ ଉଜ୍ଜ୍ୱଳ ହାତକୁ ଜୀବନର ଅନ୍ଧକାର ଭିତରେ ଏକ ଉଜ୍ଜ୍ୱଳ ଦ୍ୱୀପ ଭାବେ କଳ୍ପନା କରାଯାଇଛି । Ezra Pound ଓ T.E. Hulme ଇତ୍ୟାଦିଙ୍କର ଚିତ୍ରକଳ୍ପନା ଯୁଦ୍ଧୋତ୍ତର କାଳରେ ରାଉତରାୟଙ୍କୁ ପ୍ରଭାବିତ କରିଥିବା ମନେହୁଏ , ଯେତେବେଳେ ଆମେ ତାଙ୍କ କବିତାରେ ଦେଖୁ -ଗହମରଙ୍ଗର ଗାଲ, ଘାସର ହ୍ରଦ, ଚର୍ବିପରି ସ୍ନିଗ୍ଧ ନିଦ ଇତ୍ୟାଦିର ପ୍ରୟୋଗ । ୧୯୫୦ ପୂର୍ବବର୍ତ୍ତୀ କବିତାର ଭାବ ଓ ସାମାଜିକ ବ୍ୟଞ୍ଜନା, ଯଥା- ''ପ୍ରାଣ ଏଥି ପଣ୍ୟ ଖାଲି କୂଟନୀତି ନ୍ୟାୟବଳେ ଗୋଟି, ଗର୍ଭିଣୀ ନାରୀକୁ ନେଇ ଦସ୍ୟୁଦଳେ ଭାଗ

ବଣ୍ଟାବଣ୍ଟି / କାହିଁଗଲା ମୈତ୍ରୀ, କ୍ଷମା, କାହିଁଗଲା ଆଜି ସେ କରୁଣା/ ଆନ୍ତର୍ମାନବିକ ମନ ହୃଦୟର ବିନୟ ଏଷଣା ? '' ପରବର୍ତ୍ତୀ କବିତାରେ ପ୍ରାୟ ଦେଖାଯାଏ ନାହିଁ । କାବ୍ୟର ଆତ୍ମା ଅପେକ୍ଷା ଅଙ୍ଗସଜ୍ଜା ପ୍ରତି ଅଧିକ ସଚେତନା ସଙ୍ଗେସଙ୍ଗେ ତାଙ୍କ କବିତା ବହୁ 'ବାଦ' ଯୋଗୁଁ ବୁଦ୍ଧିବାଦୀ ଓ ଜଟିଳ ହୋଇ ପଡ଼ିଥିବା ମନେହୁଏ । ଅନନ୍ତ ପଟ୍ଟନାୟକଙ୍କ କବିତାରେ ପ୍ରତୀକଧର୍ମୀ ଚିତ୍ରକଳ୍ପ ମାଧ୍ୟମରେ ସାମ୍ୟବାଦୀ କବିତାର ସ୍ୱର କିପରି କଳାତ୍ମକ ହୋଇପାରିଛି ତାହା ଲକ୍ଷ୍ୟ କରାଯାଇପାରେ -''ମୃତ୍ୟୁର ଜଳେ ପହଁରି ପହଁରି ତୋଳେ ଯେ ତୋ ଲାଗି ରକ୍ତକଇଁ/କୃଷ୍ଣନାଗର ଦଂଶନେ ସେ କି ପଡ଼ିବ ନଇଁରେ ପଡ଼ିବ ନଇଁ '' (ଝରରେ ରୁଧିର) । ରଘୁନାଥ ଦାସ ଙ୍କ କବିତା 'ରାହୁଗ୍ରାସ'ରେ-''ସୂର୍ଯ୍ୟକୁ ଗ୍ରାସିଛି ରାହୁ, ପ୍ରସାରିତ ଗୃଧ୍ରପକ୍ଷୀ ଭଳି, କ୍ରୁଦ୍ଧ ବିକଟାଳ ବାହୁ ତା'ର / ତୋଟି ଚିପି ଅସହାୟା ଲୁଣ୍ଠିତ ଧରାର/ ଜୀବନକୁ କରେ ଶ୍ୱାସରୁଦ୍ଧ '' ସେହି ସାମ୍ୟବାଦୀ ସ୍ୱରର ଦୃଢ଼ ଉଚ୍ଚାରଣ । ଯୁଦ୍ଧ ପରବର୍ତ୍ତୀ ଅବସ୍ଥାର ଭୟାବହତା ଓ ମୃତ୍ୟୁ ମଣିଷ ଜୀବନର ସ୍ୱପ୍ନକୁ ଯେତେବେଳେ ନଷ୍ଟ କରିଦେଲା, ସେତେବେଳେ ଏ ସମାଜ ଓ ଧର୍ମଠାରୁ ଊର୍ଦ୍ଧ୍ୱରେ ନିଜକୁ ଜବରଦସ୍ତ ପ୍ରତିଷ୍ଠା କରିବାର ମାନସିକ ଦୃଢ଼ତା ପ୍ରକାଶ କରିଛି । ତେଣୁ ନେତିବାଦରୁ ଅସ୍ତିତ୍ୱବାଦ (Existentialism) ର ସୃଷ୍ଟି କବିତାକୁ ଆଚ୍ଛନ୍ନ କରିଛି । ତେଣୁ ୧୯୫୧ରେ ପ୍ରକାଶିତ 'ଶାନ୍ତିଶିଖା' ପୁସ୍ତକ ଧ୍ୱଂସ ପରିବର୍ତ୍ତେ ସୃଷ୍ଟିର ଆହ୍ୱାନ ଦିଏ ।

୧୯୬୧ରେ ରଚିତ ପ୍ରଗତିଶୀଳ କାବ୍ୟଗ୍ରନ୍ଥ 'ଚରମପତ୍ର'ରେ ଚବିଶ ଘଣ୍ଟା ଭିତରେ ବୈକୁଣ୍ଠ ସିଂହାସନ ତ୍ୟାଗ କରିଦେବା ପାଇଁ କବି ରବି ସିଂ ଭଗବାନଙ୍କୁ ଯେତେବେଳେ ନିର୍ଦ୍ଦେଶ ଦେଇଦେଲେ 'ଶିରୁ ଅବୟବ ଛିନ୍ନ କରିବ, କରିବ ମୋ ତରବାରୀ, ତମରି ଅଙ୍କ ଶାୟିନୀ ଦଳର କରକଙ୍କଣ ପଦାଘାତେ ଦେବି ଚୂରି, ମହାମୁକ୍ତିର ଆଜିତ ଶୁଭଦିନ, ତେଣୁ ଭଗବାନ ଖାଲି କରିଦିଅ ଗୋଲକ ସିଂହାସନ '', ପୁସ୍ତକର ମୁଖବନ୍ଧରେ ତ୍ରିବିକ୍ରମ ପତି ତାଙ୍କୁ ଓଡ଼ିଆ ସାହିତ୍ୟରେ ମାୟାକୋଭସ୍କି ବୋଲି ଅଭିହିତ କଲେ । ସମାଜବାଦୀ ବାସ୍ତବତା ଓ ମାର୍କସୀୟ ସାହିତ୍ୟିକ ଧାରାର ଶେଷ ରଶ୍ମି ରୂପେ ଅଭିହିତ କରି Indian Express ଲେଖିଥିଲେ ''It is a literary truism that if Rabi Sing had not appeared in the literary horizon in the fifties, then the Marxist trend in Oriya literature would have come to an end.'' ଓଜଃସ୍ୱିନୀ ଓ ଦାମ୍ଭିକତାପୂର୍ଣ୍ଣ ଭାଷା, ବ୍ୟଞ୍ଜନାଧର୍ମୀ ଶବ୍ଦ ପ୍ରୟୋଗ, ବିପ୍ଳବାତ୍ମକ ଚିନ୍ତା, ବ୍ୟଙ୍ଗ, ବିଦ୍ରୂପ, କାରୁଣ୍ୟ ଓ ହାସ୍ୟରସର ଅପୂର୍ବ ସମନ୍ୱୟ ସହିତ ଜଣେ ମୌଳିକ ଛନ୍ଦ ସ୍ରଷ୍ଟା ଭାବରେ ସେ ସ୍ୱତନ୍ତ୍ର ଆସନର ଅଧିକାରୀ । ରବି ସିଂଙ୍କର ଭ୍ରୂକୁଟୀ, ଜ୍ୱାଳାରମାଳା, ବିଷବାଣୀ, ଝଡ଼, ସର୍ବହରା, ଅଗ୍ନିବେଦ, ଝଡ଼ଗାନ୍ଧାର, ଲୋହିତ ସଂକ୍ରାନ୍ତି,ନବମସ୍ୱର୍ଗ ଆଦି କବିତା ପୁସ୍ତକଗୁଡ଼ିକ ବ୍ୟଞ୍ଜନାଧର୍ମୀ ନାମକରଣ ସହିତ ବୈପ୍ଳବିକ ଏବଂ ରାଜନୈତିକ କଟୁ ସମାଲୋଚନାଯୁକ୍ତ ଅଟନ୍ତି ।

ବାମପନ୍ଥୀ କାବ୍ୟଚେତନାକୁ ଏକ ସ୍ୱତନ୍ତ୍ର ଏବଂ ସାମଗ୍ରିକ ସତ୍ତା ଭିତରେ କବି ବ୍ରଜନାଥ ରଥ ତାଙ୍କର ମରୁଗୋଲାପ, ନିଜସ୍ୱ ସଂଳାପ ଓ ହେ ମହାଜୀବନ କବିତା ପୁସ୍ତକଗୁଡ଼ିକରେ ଯୁଦ୍ଧଖୋର ସାମ୍ରାଜ୍ୟବାଦୀ ଶାସକ ଓ ଶୋଷକ ଗୋଷ୍ଠୀ ବିରୁଦ୍ଧରେ ପ୍ରବଳ ପ୍ରତିବାଦର ସ୍ୱର ପ୍ରକାଶ କରିଛନ୍ତି । ତାଙ୍କର ସ୍ୱର ଏହିପରି -" ସ୍ୱାଧୀନତା ଆଉ ସାମ୍ୟର ପାଇଁ ସେଇପଥେ ଶତ ସଂଗ୍ରାମୀ ବୀର ଚଳେ/ ମରଣର ଯହିଁ ଯଜ୍ଞ ଜଳୁଛି, ରକ୍ତର ଯହିଁ ଆହୁତି ହେଉଛି ଢଳା / ଆଖିର ଲୋତକ, ବୁକୁର ରକ୍ତ ଯେଉଁଠାରେ ବହି ସିକ୍ତ କରୁଛି ମାଟି/ ଅନାଗତ ଏକ ପ୍ରତ୍ୟୁଷେ ତହିଁ ଫୁଟିବ ନିଶ୍ଚେ ଗୋଟିଏ ରକ୍ତ କଳି ।" ସ୍ୱାଧୀନତା ପରବର୍ତ୍ତୀ କବିତା ଗୁଡ଼ିକରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଅସ୍ତିବାଦୀ ଭାବଧାରା ଓ ଅତିବାସ୍ତବବାଦୀ ଆଭିମୁଖ୍ୟ, ସାମାଜିକ ବାସ୍ତବବାଦର ଚେତନାକୁ ମର୍ମୀଭୂତ କରିବା ପରେ କବିତାରୁ କ୍ରମେ ନାନ୍ଦନିକତା ବିଦାୟ ନେଇଛି । ତେଣୁ ଏହି ସମୟରେ ରୋମାଣ୍ଟିକ୍ ଭାବପ୍ରବଣତା ତଥା ଉଗ୍ର ମାର୍କସିଷ୍ଟ ସମାଜପ୍ରବଣତା ପ୍ରଭାବରୁ ମୁକ୍ତ ଓଡ଼ିଆ କବିତା ଗୁଡ଼ିକୁ ଏକ ସ୍ୱତନ୍ତ୍ର ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

ବିଂଶ ଶତାବ୍ଦୀର ବହୁ ଓଡ଼ିଆ କବିଙ୍କର କବିତାରେ ବିଚ୍ଛିନ୍ନତାବୋଧ, ନିଃସଙ୍ଗତା, ନୈରାଶ୍ୟ, ସଂଶୟ, ସଂକଟ, ଆଧ୍ୟାତ୍ମିକ ପଙ୍ଗୁତା ପ୍ରକାଶ ପାଇବା ଯୋଗୁ ଏଗୁଡ଼ିକୁ କେତେକ ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଇଂରାଜୀ କବିତା ପ୍ରଭାବିତ ବୋଲି ଅଭିଯୋଗ କରିଥିଲେ ମଧ୍ୟ ତତ୍କାଳୀନ ଇଉରୋପର ମାନସିକ ଅବସ୍ଥା ସହିତ ପାଶ୍ଚାତ୍ୟ ସଭ୍ୟତାଗ୍ରସ୍ତ ଭାରତବର୍ଷର ମାନସିକ ଅବସ୍ଥାର ବହୁ ସାମ୍ୟ ଏଥିରେ ପରିଲକ୍ଷିତ ହୁଏ । ଜଗତ ଓ ଜୀବନର ସମସ୍ତ ଅଶୁଭ, ଅସୁନ୍ଦର, ବୀଭତ୍ସ ଓ ଅନୁଦାର ଦିଗ ପ୍ରତି ଆଧୁନିକ କବିର ସଚେତନତାହିଁ ମୁଖ୍ୟ । ଦ୍ୱନ୍ଦ୍ୱ ବହୁଳ ଜୀବନରେ ଆଧୁନିକ ମଣିଷ ତା'ର ଜୀବନ ଶକ୍ତି ହରାଇ ବସିଛି । ନିଜ ଭିତରେ ଏକ ବିରାଟ ଶୂନ୍ୟତାବୋଧକୁ ଉପଲବ୍ଧି କରୁଥିବା ମଣିଷଟିର ଚେତନାରେ ସୌନ୍ଦର୍ଯ୍ୟବୋଧ ବାଧାପ୍ରାପ୍ତ । Rollo May ତାଙ୍କର 'Man's Search for Himself' ପୁସ୍ତକରେ କହନ୍ତି -'Another characteristic of modern people is loneliness'। ଏହି ନିର୍ଜ୍ଜନତା ବା ଶୂନ୍ୟତା ତା'ର ପ୍ରାଣକୁ କ୍ଷତବିକ୍ଷତ କରିବା ସହିତ ଭାବନାକୁ ମଧ୍ୟ ଲକ୍ଷ୍ୟହୀନ କରିଦେଇଛି । ଏକ ନିରର୍ଥକ ଜୀବନର ବ୍ୟର୍ଥତାରେ ନିଜର ସ୍ଥିତିକୁ ତଉଲିଥିବା କବି ନିଜକୁ ମଧ୍ୟ ଅସ୍ୱୀକାର କରୁଛି । ଆଲବର୍ଟ କାମ୍ୟୁଙ୍କର ଉପନ୍ୟାସ'The Stranger' ର ଭାବନାରେ ସେ ଆଜି ଜୀବନ ଚାହେଁନି, ସେ ମୃତ୍ୟୁର ଅନଳଶିଖାରେ ଅହରହ ଜଳିଯାଉଛି । ସାହିତ୍ୟର ଏହି ମାର୍ମିକ ଆବେଦନ କବିତାରେ ଅଧିକ ହୃଦ୍ୟ ହୋଇ ପାରିଛି । Oscar Wild ତେଣୁ କହନ୍ତି -" Literature always anticipates life. It does not copy it, but moulds it to its purpose."

ଇଂରାଜୀ ସାହିତ୍ୟରେ T.S.Eliotଙ୍କର 'The Wasteland' କବିତାର ମୃତ୍ୟୁ ଓ ମୃତ୍ୟୁର ଅନୁଭବକୁ କବି ଗୁରୁପ୍ରସାଦଙ୍କ କାଳପୁରୁଷ କବିତାରେ ସନ୍ଧାନ କରାଯାଇପାରେ- '' ନିଃଶବ୍ଦ ଏ ବାଲିଚର, ବାଲି ଆଉ ବାଲି / ବିବର୍ଣ୍ଣ ଘାସ ଓ ବାଲି, ପଥହୀନ ବିବର୍ଣ୍ଣ ପୃଥିବୀ / ଉପରେ ନିସ୍ତେଜ ଖରା, ପଥହୀନ ବିବର୍ଣ୍ଣ ଆକାଶ / ବିବର୍ଣ୍ଣ ବାଲି ଓ ଘାସ / ଶେଷହୀନ ଶୋଷ ଆଉ ଶୋଷ /ନିସ୍ତେଜ ଧୂସର ସ୍ତବ୍ଧ ବାଲି ପୁଣି ବାଲି ଓ ଆକାଶ ।'' ପୋଡ଼ାଭୂଇଁର ଧୂମ୍ରାଭ ଅରଣ୍ୟାନି ଭିତରେ ଶ୍ୱାସରୁଦ୍ଧ କବି ମୃତ୍ୟୁର ଅନୁଭବ କରିଛନ୍ତି, ମାତ୍ର ଅନ୍ୱେଷଣ କରିଛନ୍ତି ଜୀବନକୁ । କାଳପୁରୁଷ କୌଣସି ସମାଧାନ ନ ପାଇ ଶେଷରେ ଆଧ୍ୟାତ୍ମିକ ଚେତନା ନିକଟରେ ଆତ୍ମସମର୍ପଣ କରି କହିଛି - ''ଯିବି ମୁଁ ତୁମରି ପରି ତାରା ଖୋଜି, ଜହ୍ନଖୋଜି, ଖୋଜି ଖୋଜି ଝରଣାର ସୁଅ । ନିର୍ମୂଳୀଲାରେ ଖୋଜି ଅରୁନ୍ଧତୀ ତାରାର ଆଲୁଅ ।'' ଆବେଗ ଓ ଆଧ୍ୟାତ୍ମିକତାର ଏ ସମନ୍ୱୟ ସୀତାକାନ୍ତ ମହାପାତ୍ରଙ୍କ 'ଅଷ୍ଟପଦୀ'ର 'କୁବୁଜା ପାଇଁ ଗୋଟିଏ ସଙ୍ଗୀତ'ରେ '' ହେ ପରମ ଆଦିମୂଳ/ତେଣୁ ଆଜି ମୁକ୍ତି ମାଗେ/ଅଭିଶପ୍ତ ମଥୁରାର ବନ୍ଦୀ ନଗ୍ରଲୋକ'' ରେ ସୁସ୍ପଷ୍ଟ ।

ବ୍ୟକ୍ତିଗତ ହତାଶା ଭିତରୁ ସ୍ୱର ଉତ୍ତୋଳନ କରି ଅନ୍ତିମ ଜୀବନର ପରିଣତି ବିଷୟରେ ଭାନୁଜୀ ରାଓ କହନ୍ତି -'' ଆତ୍ମା ମୋର ଖୋଜିବୁଲେ ନୀଡ଼ ', 'ଅନ୍ଧକାର କାରା ଭାଙ୍ଗି ଜହ୍ନ ଜହ୍ନନେବ ' ଉକ୍ତି ଭିତରେ ଆଧିଭୌତିକ ଉପଲବ୍ଧି ବି ସୁସ୍ପଷ୍ଟ । 'ଦୁଇଟି ଆଖିର ସୂର୍ଯ୍ୟାବର୍ତ୍ତ'କବିତାର ପ୍ରଥମ ଧାଡ଼ିରେ ବେଣୁଧର ରାଉତ କହିଲେ , '' ହଠାତ୍ ମୁଁ ଅନ୍ଧ ହେଲି ଇଏ କେଉଁ ଆଲୋକ ଜ୍ୱାଳାରେ ।' ଆଧ୍ୟାତ୍ମିକତାର ଦୀପ୍ତି ଏହି ଆଲୋକ ଶେଷରେ ପିଙ୍ଗଳାର ସୂର୍ଯ୍ୟ ହୋଇଗଲା ।-'' ଏ ନୀଳ ନିଶୀଥ ଯେହ୍ନେ ପ୍ରଜ୍ୱଳିତ ଅସଂଖ୍ୟ ତାରାରେ ××× ଏ ନୀଳ ନିଶୀଥ ଯେହ୍ନେ ଭାଙ୍ଗିପଡ଼େ ପ୍ରତୀକ୍ଷାର ବିଶ୍ଳଥ କ୍ଳାନ୍ତିରେ / ଏ ନୀଳ ନିଶୀଥ ଯେହ୍ନେ ମିଶାଉଛି ବିଦେହକୁ ମହାଶୂନ୍ୟତାରେ / ଏବଂ ମହାଶୂନ୍ୟତାରେ ମିଶାଉଛି ଗୋଣ୍ଡକିରୀ-ଉଦ୍ଦୀପ୍ତ-ରାଗିଣୀ'', '' ଏ ରାତିର ଆକାଶରେ ଏତେ ତାରା ! ଏତେ ରାତି ! ଏତେ ନିର୍ଜନତା ! ପିଙ୍ଗଳାର ଏତେ ଦେହ ! ଏତେ ଜ୍ୱଳା ! ଏତେ ଆତୁରତା '' ଏହିଭଳି ଏକ ମୁହ୍ୟମାନ ବିଲୁପ୍ତ ସତ୍ତା ଭିତରେ ଶୃଙ୍ଗାର ଓ କରୁଣରସର ଗାଢ଼ ସମନ୍ୱୟରେ ଉଦ୍ଭୁତ ସାତ୍ତ୍ୱିକ ବୈରାଗ୍ୟ, ପ୍ରଭାତର ଗୋଣ୍ଡକିରୀ ରାଗିଣୀ ମାଧ୍ୟମରେ ଅନୁରଣିତ । 'ପିଙ୍ଗଳାର ସୂର୍ଯ୍ୟ' କବିତା ସଂକଳନରେ ଓଟପକ୍ଷୀ ଚରିତମ୍, ଉତ୍ତରଣ, ମଳୟର ଆତ୍ମହତ୍ୟା, ପିଙ୍ଗଳାର ରାତି, ପିଙ୍ଗଳାର ସୂର୍ଯ୍ୟ ଆଦି କବିତାଗୁଡ଼ିକ ଲାଗି ଜଣେ ଇନ୍ଦ୍ରିୟୋତ୍ତର (Metaphysical) କବି ଭାବରେ ବେଣୁବାବୁ ଏକକ ଓ ଅଦ୍ୱିତୀୟ । ମୋଟ୍ ଉପରେ ରୋମାଣ୍ଟିକ ଓ ମିଥ୍ ଚେତନା ସମ୍ବଳିତ କବିତାର ଜଣେ ସାର୍ଥକ ଓ ଅଦ୍ୱିତୀୟ ସ୍ରଷ୍ଟା ଭାବେ ଓଡ଼ିଆ କବିତା କ୍ଷେତ୍ରରେ ସେ ସ୍ମରଣୀୟ ।

ସୀତାକାନ୍ତ ମହାପାତ୍ରଙ୍କର 'ମୃତ୍ୟୁନାଚ' କବିତାରେ ' ଆକାଶ ଜଳୁଛି ଖାଲି ନାଲି ଚହଚହ, ଆହା ଏଇ ନୀଳିମା ଜଳୁଛି । ××× ପାହାଡ଼ ଜଳୁଛି ଏହି ସଂଧ୍ୟା ମୁଖେ, ଜଳିଯାଏ ରକ୍ତମାଂସ ହୃଦୟ ନର୍ମଦା, ଲହଲହ ରକ୍ତଜିହ୍ୱ ଆକାଶ ପୃଥିବୀ ଉପରେ ସ୍ଫୁଲିଙ୍ଗ ଓ ଧୂଆଁ '' ବ୍ୟକ୍ତିସତ୍ତାଠାରୁ ଅତିକ୍ରମି ଯାଇଛି ବିଶ୍ୱର ବେଦନାବୋଧ, ଏହାର ବ୍ୟାପ୍ତି ଆକାଶର ନୀଳିମା ପର୍ଯ୍ୟନ୍ତ । ସମଗ୍ର ପୃଥିବୀରେ ଏହି ସର୍ବଗ୍ରାସୀ ଅନ୍ତର୍ଜ୍ୱଳନକୁ କବି ଲକ୍ଷ୍ୟ କରିବା ସହିତ ଅନ୍ୟ ଏକ କବିତା 'ଓଟ ଓ ଓଏସିସ୍ ର ରାତି'ରେ ବାଲୁକାସ୍ତୂପରେ ପାଦ ଥାପି ଥାପି ଓଟଟିଏ ମରୂଦ୍ୟାନର ସନ୍ଧାନ ପାଇଁ ଉନ୍ମୁଖ ହୋଇ ଉଠିଥିବା ପ୍ରତୀକ ମଧ୍ୟରେ ମାନବାତ୍ମା 'ଓଟ'ର ମୁକ୍ତି ଅଭିଳାଷ ହିଁ ତାଙ୍କର ଆତ୍ମିକସତ୍ତାକୁ ସୂଚାଇ ଦେଇଛି, ଯେଉଁଥିରେ ସେଇ ଅନ୍ତର୍ଜ୍ୱଳନ ଓ ମୁକ୍ତିଚିନ୍ତା ହିଁ ନିହିତ । ' ଘାସଫୁଲ' କବିତାରେ ଘାସଗଛରେ ନଙ୍ଗଳା ନେଳିଫୁଲ ଟିଏ ସକାଳର କୁହୁଡ଼ିଆ ଥଣ୍ଡା ପବନରେ ଅର୍ଥାତ୍ ଅବକ୍ଷୟଗ୍ରସ୍ତ, କ୍ଷୟିଷ୍ଣୁ ମାଟିର ପୃଥିବୀରେ ଥାଇ ମଧ୍ୟ ଆକାଶର କାମନା କରିଛି ।

ଗୁରୁପ୍ରସାଦଙ୍କ କବିତାରେ ମିଥ୍ ପ୍ରୟୋଗ କ୍ଷେତ୍ରରେ ପାଶ୍ଚାତ୍ୟ ପ୍ରସଙ୍ଗ ଥିଲେ ମଧ୍ୟ ମିଥ୍ ପରିକଳ୍ପନା ଭାରତୀୟ, ମୁଖ୍ୟତଃ ଭାଗବତ ହିଁ ଏହାର ବଳିଷ୍ଠ ଆଧାର । ' ହେ ଅକ୍ରୁର, ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର' ବାରମ୍ବାର ଉଚ୍ଚାରଣ କରିବା ଭିତରେ ଏଲିଏଟ୍‌ଙ୍କର 'Burning, Burning, Burning, Burning / Oh Lord, Thou pluckest me out ' ଶୈଳୀ ପ୍ରତିଫଳିତ । ଅକ୍ରୁର, ଉଦ୍ଧବ, ଅବଧୂତ ଓ ଅଜଗର ପ୍ରସଙ୍ଗ, ତକ୍ଷକ ପରୀକ୍ଷିତ ପ୍ରସଙ୍ଗ, ଭାଗବତ ପରିମଣ୍ଡଳରେ ବ୍ୟାପ୍ତ । ଭାରତୀୟ ଉପନିଷଦ ଛାୟାରେ ବର୍ଣ୍ଣିତ ସମୟବୋଧ ଓ ମୃତ୍ୟୁପ୍ରତି ଏକ ନିର୍ଲିପ୍ତି ଦୃଷ୍ଟିଭଙ୍ଗୀ ହିଁ ତାଙ୍କ କବିତାରେ ପରିଲକ୍ଷିତ । 'କୁରୁକ୍ଷେତ୍ର'କୁ ମଣିଷ ମନର ଏକ ଅନ୍ତହୀନ ଚେତନା ଓ ସଂଘର୍ଷର ଚିରାୟତ ଭୂମି ଭାବେ ସେ ଚିତ୍ରଣ କରିଛନ୍ତି । ମୃତ୍ୟୁ ଅମୃତରେ ପରିଣତ ହେବାର ଯେଉଁ ଉପନିଷଦୀୟ ଭାବନା କବି ଗଙ୍ଗାଧର ମେହେରଙ୍କ ''ମୁଁ ତ ଅମୃତ ସାଗର, ବିନ୍ଦୁ , ନଭେ ଉଠିଥିଲି ତେଜି ସିନ୍ଧୁ/ ପଥେ ଶୁଖିଗଲେ ପାପତାପରେ, ହୋଇ ଶିଶିର ଖସିବି ତା'ପରେ'' ପଦଟିରେ ପରିବ୍ୟାପ୍ତ, ତାହାକୁ ନେଇ ସେ 'ଆଶ୍ଚର୍ଯ୍ୟ ଅଭିସାର' ପୁସ୍ତକର ' ମୃତ୍ୟୁ' କବିତାରେ ରୂପ ଦେଇଛନ୍ତି ।

ରମାକାନ୍ତ ରଥଙ୍କ କବିତାରେ ନିଃସଙ୍ଗତା ଭିତରେ ଜର୍ଜରିତ ମାନବାତ୍ମା କେବଳ ଶୁଣୁଥାଏ-''ଏଠି କିଛି ନାହିଁ, ଖାଲି ଅଛି ଏକ ଅଦୃଶ୍ୟ ପକ୍ଷୀର ଡ଼େଣା ଫଡ଼ ଫଡ଼ ଶବ୍ଦ, କୋଳାହଳ ତୁଚ୍ଛା ନଥିବାର '' । ଜୀବନ ପ୍ରତି ନାସ୍ତିବୋଧ ଭିତରେ ଡ଼େଣା ଫଡ଼ ଫଡ଼ କରୁଥିବା ମୃତ୍ୟୁପ୍ରତି ହିଁ କବିର ସଚେତନତା ପ୍ରକାଶିତ । ' ଅନେକ କୋଠରୀ' ଠାରୁ ' ସନ୍ଦିଗ୍ଧ ମୃଗୟା'ପର୍ଯ୍ୟନ୍ତ ସବୁଥିରେ କାବ୍ୟସ୍ୱର ଏହି ଭାବନାରେ ରୂପାୟିତ । ରୂପକଳ୍ପ ପ୍ରୟୋଗରେ

ତାଙ୍କର ବିଶେଷତ୍ୱ । 'ଚନ୍ଦ୍ରମାର ଚୁଡ଼ି'ରେ ଅଜଗର ସାପର ରୂପକଳ୍ପ ଏହାର ଉଦାହରଣ । ମୃତ୍ୟୁ ଚେତନାରେ ପରିପୂର୍ଣ୍ଣ ' ସପ୍ତମରତୁ' କୁ ଜୀବନ-ନଦୀର ପରପାରରେ କବି ଭେଟିଛନ୍ତି । ମୃତ୍ୟୁତ୍ତର ଜୀବନର ରହସ୍ୟଘନ ଅନ୍ଧକାରକୁ ସେ ଏକ ସୁଦୃଶ୍ୟ ଚିତ୍ରପଟରେ ଉପସ୍ଥାପିତ କରିଛନ୍ତି ' ସଚିତ୍ର ଅନ୍ଧାର' ସଂକଳନରେ । ଶାଗୁଣା, ଅନ୍ଧାର, ଜଙ୍ଗଲ, କଳା ଟ୍ୟାକ୍ସି ଡ୍ରାଇଭର, ମୋଟୀ କାଳୀ ବେଶ୍ୟା, ସମୁଦ୍ର ସବୁ ତାଙ୍କ କବିତାରେ ମୃତ୍ୟୁର ପ୍ରତୀକ । ମୃତ୍ୟୁର ଭାବଚେତନା ଯେପରି ଏକ ବୀଭତ୍ସ ଓ ଭୟଙ୍କର ସାଂକେତିକତା ଭିତରେ ଉପଲବ୍‌ଧ । 'ଶ୍ରୀରାଧା' କବିତା ପୁସ୍ତକ ଏକ ଭିନ୍ନ ଚେତନାର ସୃଷ୍ଟି । ଆଧୁନିକ କବିତାରେ ଅଳକା ସାନ୍ୟାଲ୍ ବା ପ୍ରତିମା ନାୟକଙ୍କୁ ନିର୍ବାସନ ଦେଇ ପରମ ପ୍ରେମମୟୀ ଶ୍ରୀରାଧା, ପ୍ରେମର ପବିତ୍ର ବନ୍ଧନରେ ଜୀବନକୁ ସମର୍ପି ଦେଇଥିବା ନାରୀ ଚରିତ୍ରର ଉପସ୍ଥାପନ ସାଂପ୍ରତିକ ସମାଜ ଭାବନାରେ ବେଶ୍ ଉଚ୍ଚକୋଟୀର ମନେହୁଏ ।

'ଦୀପ୍ତି ଓ ଦ୍ୟୁତି' ଠାରୁ ' ବର୍ଷା ସକାଳ' ଯାଏ ଏଗାର ଗୋଟି ସଂକଳନର ପ୍ରଣେତା କବି ସୀତାକାନ୍ତ ମହାପାତ୍ର । ମାଟିଠାରୁ ଅକାଶ ଯାଏ ଚେତନାର ସରହଦ, ଜୀବନ ଓ ମୃତ୍ୟୁ ତଥା ପାରତ୍ରିକ ସ୍ଥିତିର ରହସ୍ୟ ଉଦ୍‌ଘାଟନ, ଆଈବୁଢ଼ୀଠାରୁ ଆରମ୍ଭ କରି ଚଢ଼େଇଯାଏ ପରଂପରା, ଆଧୁନିକତା ଓ ଇନ୍ଦ୍ରିୟୋତ୍ତର ଚେତନା - ସବୁ ତାଙ୍କ କବିତାରେ ଅଭିବ୍ୟକ୍ତ । ସୀତାକାନ୍ତଙ୍କ ଆର୍କିଟାଇପ୍ ଓ ମିଥ୍‌ର ପରିସର ମଧ୍ୟରେ ନର୍କ ଓ ତା'ର ଯନ୍ତ୍ରଣା ଭିତରୁ ଖ୍ରୀଷ୍ଟ-ବୁଦ୍ଧ-କୃଷ୍ଣ ଚେତନାର ଏକ ସାଂସ୍କୃତିକ ସମନ୍ୱୟ 'ଅଷ୍ଟପଦୀ'ରେ ମୁକ୍ତି ପିପାସାର ମାର୍ଗ ନିର୍ଦ୍ଦେଶ କରେ । ସମୁଦ୍ରର ନୀଳ ସ୍ପର୍ଶ, ଅଭିଳାଷରେ ଇନ୍ଦ୍ରିୟୋତ୍ତର ଉପଲବ୍‌ଧି, ଚିରକାଳ ଧୂଳି ପିଇପିଇ ଦଗ୍‌ଧ ଜୀବନରେ ନୀଳ-ସ୍ୱପ୍ନ, ନୀଳ ମୃତ୍ୟୁ, ନୀଳ ନିର୍ବାପକ ଭଳି ଚେତନାରେ ନୀଳାତ୍ମ ହୋଇଯିବା କବିଙ୍କର ଏକ ବିଦେହ ଅନୁଭବ । 'ବର୍ଷା ସକାଳ' ର 'ଯାଦେବୀ' କବିତାରେ - " ତମେ ଆସ ଆଗୋ ତୃଷ୍ଣା, ଆଗୋ ରାତ୍ରି ଆଗୋ ଭ୍ରାନ୍ତି, ଆଗୋ ମୁକ୍ତି, ମୋତେ ମିଳୁ ନୀଳ-ସ୍ୱପ୍ନ, ନୀଳ-ମୃତ୍ୟୁ, ନୀଳ ନିର୍ବାପନ", 'ଚଢ଼େଇରେ ତୁକି ଜାଣୁ ', 'ଫେରି ଆସିବାର ବେଳ, 'ଆରଦୃଶ୍ୟ', 'ଚିତ୍ରନଦୀ' ସଂକଳନ ଗୁଡ଼ିକରେ ନିଜର ଚଢ଼େଇସତ୍ତାଟି ଅଭୀପ୍‌ସିତ ପରମ ସତ୍ତା ଚଢ଼େଇ ସହିତ ଏକାତ୍ମ ହୋଇଯିବାର ମାର୍ମିକ ଆହ୍ଲାଦ ଉପଲବ୍‌ଧ ।

ଉତ୍ତର ଷାଠିଏ କାଳରେ ମୃତ୍ୟୁକୁ ଅରଣା ମଇଁଷି ଭାବେ ପ୍ରତୀକିତ କରିଥିବା ଅନ୍ୟତମ ପ୍ରୟୋଗବାଦୀ କବି ଦୀପକ ମିଶ୍ର ମଇଁଷିର ଦୃଷ୍ଟିରେ ଯମଦୂତକୁ ଦେଖନ୍ତି, ମଇଁଷି ଗୋଠ ଭିତରେ ଆତଯାତ ଜୀବନ ସବୁବେଳେ ମଇଁଷିର ସଁ ସଁ ନିଃଶ୍ୱାସ ସହିତ ବେଶ୍ ପରିଚିତ ଓ ଏକାତ୍ମ । ବାଲ୍ୟ, ଯୌବନ ଓ ବାର୍ଦ୍ଧକ୍ୟରେ ମୃତ୍ୟୁର ଛାଇକୁ ନିଜ ଭିତରେ ସାମିଲ କରିନେଇଛନ୍ତି କବି । ଏକ ଦାର୍ଶନିକ ଉପଲବ୍‌ଧିରେ ଜୀବନ ଓ ମୃତ୍ୟୁ ଯେପରି ତାଙ୍କ କବିତାରେ ହାତ ଧରାଧରି ହୋଇ ଚାଲିଚନ୍ତି ।

କବି ସୌରୀନ୍ଦ୍ର ବାରିକଙ୍କର 'ବାଘ ଆଖି ପରି ଜଳ ଜଳ ସୁନାମୁଣ୍ଡା ନୁହେଁ, ଠାକୁର ଧଣ୍ଡା ପାଇଁ ହାତ ପାତନ୍ତେ '' ଭାବନା ଭିତରେ ମୋହଗ୍ରସ୍ତ ସଂସାରର ଲୋଭ ପାଖରୁ ମୁକ୍ତି ପାଇଁ ମନ୍ଦିର ଯିବାର ଏକାନ୍ତ ଆକର୍ଷଣ ଆଧ୍ୟାତ୍ମିକତାର ଅନ୍ୱେଷାକୁ ସୂଚିତ କରେ । ନୀରବତାର ବେଣୁ ବଜାଇ, ଅରୂପରେ ମୋହି, ଏକ ଉଦାସୀନ ଆସକ୍ତିରେ କୋଳକୁ ଟାଣି ନେବା ଅତିଥି ଜଣକ ଯେ ମୃତ୍ୟୁ ଏବଂ ତାର ନିଶ୍ଚିତ ଆସିବାର କଥା ସେ କହନ୍ତି । ସରଳ ଭାଷା, ଅନୁଭୂତିର ଅନ୍ତରଙ୍ଗତା ଓ ପ୍ରାତ୍ୟହିକ ଜୀବନର କର୍ମପ୍ରବଣତା ଭିତରେ ତାଙ୍କର ଭାବାବେଗ ଓ ସଂଯତ ପ୍ରଜ୍ଞାନ-ଗମ୍ଭୀର ଉଚ୍ଚାରଣ ଏକ ମୁକ୍ତ ତରଙ୍ଗିତ ଉଚ୍ଛ୍ୱାସ । ଅନୁଭାରତ, ଉପଭାରତ, ଚହଲା ଛାଇରେ ଘଡ଼ିଏ, ପଢ଼ ବା ନ ପଢ଼, ଆମେ ଦୁହେଁ ପ୍ରଭୃତି ସଂକଳନ ଗୁଡ଼ିକର ଛୋଟ ଛୋଟ କବିତାରେ ଟିକିନିଖି ସଂପର୍କର କଥା ହିଁ ସେ କହିଛନ୍ତି । ସେ ସଂପର୍କ ମାଲୁଣୀ ସହିତ ହୋଇପାରେ, ସାଇକେଲ ସହିତ ବି ହୋଇପାରେ ।

ଆତ୍ମନେପଦୀ, ମଧପଦଲୋପୀ, ନଇ ପହଁରା, ଅନ୍ଧ ମହୁମାଛି, ସବୁଥିରେ ସୌଭାଗ୍ୟ ମିଶ୍ରଙ୍କର ଆତ୍ମସମୀକ୍ଷାର ବ୍ୟାକୁଳଭାବ ଓ ଆଧ୍ୟାତ୍ମିକ ଆସ୍ପୃହା ପରି ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି ବିଶ୍ୱାସ ନାହିଁ । ପ୍ରତ୍ୟେକ ଆଦର୍ଶ ନିକଟରେ ତା'ର ପ୍ରଶ୍ନବାଚୀ । ତେଣୁ ଏ ସୃଷ୍ଟି ଅମୃତମୟ ଭାବନାରେ ଅନ୍ଧ ମହୁମାଛି ଭଳି ସେ ' ଯଦି ପାରୁ ତ ନିଜକୁ ନିଜେ କ୍ଷମା କରି ଯା' ପରି ଏକମାତ୍ର ସମାଧାନର ସନ୍ଧାନ କରିଛନ୍ତି । କବି ନିତ୍ୟାନନ୍ଦ ନାୟକଙ୍କର ବିଦୀର୍ଣ୍ଣ ମରାଳ, ତ୍ରସ୍ତ ପଦ୍ମାସନ, ଭୋର ଆକାଶ ଭଳି ସଂକଳନ ଗୁଡ଼ିକରେ ଧୂସର ଜୀବନର ମଳିନ ସ୍ଥିତିରୁ ଉତ୍ତୀର୍ଣ୍ଣ ଚେତନାକୁ ଚାଲିଯିବାର ବ୍ୟାକୁଳତା ପରିଲକ୍ଷିତ ।

ପ୍ରତୀକବାଦୀ ଭାବନାରେ ବିଭୋର କବି ହରିହର ମିଶ୍ର ଜୀବନର ରହସ୍ୟାନୁଭୂତି ମଧରେ ଜଗନ୍ନାଥଙ୍କ ମହମା ଦର୍ଶନ କରନ୍ତି । 'କେଲୁଣୀ' କବିତାରେ ' ଖୋଜଇ ଯୁଗଳ ମୂର୍ତ୍ତି ମତ୍ତ ବୃନ୍ଦାବନ', 'ଗୀତ ନାହିଁ ଛନ୍ଦ ନାହିଁ କେଲୁଣୀ ଓ ମୋର ନୃତ୍ୟ ପାଇଁ ' ଅତୀନ୍ଦ୍ରିୟ ଏକାତ୍ମତା ହିଁ ଉପଲବ୍ଧ । ' ଶଙ୍ଖନାଭି' ସଂକଳନର ମରୁ ଓଟଟିଏ ଆଦର୍ଶର ବୋଝ ଧରି ତପ୍ତ ବାଲୁକାଶଯ୍ୟାର ଇତସ୍ତତଃ ଭ୍ରମଣ କରୁଥାଏ । ଅନିର୍ଦ୍ଦିଷ୍ଟ ଅନିଶ୍ଚିତ କବିର ଭାବନା । କବି ପ୍ରସନ୍ନ ମିଶ୍ରଙ୍କର ରତ୍ନ ଦ୍ୱୀପର ମାଝି, ଅଦୃଶ୍ୟ ସଂଗମ, ଚାଲିବାର ଗୀତ ପ୍ରଭୃତି ସଂକଳନ ଗୁଡ଼ିକରେ ରୋମାଣ୍ଟିକ୍ ସୌନ୍ଦର୍ଯ୍ୟାନୁଭୂତି, ମାନବବାଦୀ ଆଭିମୁଖ୍ୟ ଓ ବିଦଗ୍ଧ ପ୍ରେମର ଭାବନା ସୂଚିତ । ଏକ ମୁଗ୍‌ଧ ମାନବିକତାର ପ୍ରତିଷ୍ଠା, ମଣିଷ ଓ ତାର ପରିବେଶ ପ୍ରତି ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ, ଟ୍ରକ ଡ଼ାଲାରେ ସନାତନ ପୁସ୍ତକର ମୁଖ୍ୟ ଆଭିମୁଖ୍ୟ । ଜଣେ ସମାଜ ସଚେତନ ଓ ମାନବବାଦୀ କବି ଭାବରେ ସରୋଜ ରଞ୍ଜନ ମହାନ୍ତ ସାଂପ୍ରତିକ ସମୟର କାରୁଣ୍ୟକୁ ପ୍ରକାଶ କରନ୍ତି । 'କାଗଜ ଡ଼ଙ୍ଗାର ଶୋକ'ରେ ରୋମାଣ୍ଟିକ୍ ବିଁଷାଦବାଦୀ

କବି କାଗଜଡ଼ଙ୍ଗା ଭଳି ସାମାନ୍ୟ ଅସ୍ତିତ୍ୱ ଟିକେ ନେଇ ଶ୍ରାବଣ ଭଳି ନିଷ୍ଠୁର ପ୍ରେମିକାର ବିଦାୟ ପରେ ଶୋକର ସୁଅରେ ଭାସିବୁଲନ୍ତି । ମାତ୍ର 'ବାଇଗେଣୀ ଋତୁ'ରେ ସେ ଯୁକ୍ତିନିଷ୍ଠ କବିତ୍ୱ ମାଧ୍ୟମରେ ବିଷାଦକୁ ଅସ୍ୱୀକାର କରନ୍ତି । 'ସପ୍ତମ ଋତୁ'ର ମୃତ୍ୟୁ ଚିନ୍ତାକୁ ଅସ୍ୱୀକାର କରି ପ୍ରଶ୍ନ କରନ୍ତି -''କାହିଁକି ଚିହ୍ନିତ କରାଯିବ ବିଷାଦକୁ ଋତୁ ରୂପେ ? କାହିଁକି ପିନ୍ଧା ଯାଇ ବେହାଗର କୃତ୍ରିମ ପୋଷାକ ସପ୍ତମ ଋତୁର ନାମ ଦିଆଯିବ ?'' ଜୀବନର ଜୟଗାନରେ କବି ଆଶାବାଦୀ । ପ୍ରମୋଦ କୁମାର ମହାନ୍ତି ଏକ ଆଧ୍ୟାତ୍ମିକ ଉପଲବ୍ଧି ପାଇଁ ଯେପରି ଜନ୍ମ ଜନ୍ମାନ୍ତର ପ୍ରୟାସ କରନ୍ତି । ମଲ୍ଲିଫୁଲ ବିଛେଇ ହୋଇ ପଡ଼ିବାର ଏକ ନନ୍ଦିତ ମୁହୂର୍ତ୍ତରେ 'ଜୀବନତ ଅନନ୍ୟୋପାୟ ବୟସ୍କତା, ଯେଉଁ ଜୀଇବାର କୋଳାହଳ ଗହଳି ଭିତରେ, କାହୁଣୁ ମାହୁଣୁ ମୁଁ ତାଙ୍କ ଡ଼ାକ ଖୋଜୁଅଛି ଏକା ଏକା ' ଭଳି କାରୁଣ୍ୟଭରା ସ୍ୱର ତାଙ୍କ କବିତାରେ ଶୁଣିବାକୁ ମିଳେ । ଶରତ୍ ଚନ୍ଦ୍ର ପ୍ରଧାନଙ୍କ କବିତାରେ ଲୋକକଥା, ମିଥ୍, ରୂପକଥା ସହିତ ମାନବେତର ଚରିତ୍ରମାନେ ପ୍ରାଧାନ୍ୟ ଲାଭ କରିଛନ୍ତି । ଯଥା, ''ପତର ପତର, ପଣସ ପତର, ଭାସିଲା ପଥର, ବୁଡ଼ିଲା ସୋଲ, କହରେ ଡ଼ଗର ଆମ ରାଇଜର କି ସମାଚାର '' (ବତ୍ରିଶ ସିଂହାସନ) । ପରଂପରା ପ୍ରତି ଅନୁରାଗ ସହିତ ଲୋକଗୀତି ଶୈଳୀର ପ୍ରୟୋଗ ତାଙ୍କର ନୂତନତା । କବି କମଳାକାନ୍ତ ଲେଙ୍କା ନିଜସ୍ୱ ଜୀବନାନୁଭୂତିର ନିଷ୍କପଟ ଉଚ୍ଚାରଣ କରନ୍ତି । ସଂକଟ ଓ ସମସ୍ୟାର ଘେରରେ ଗୁଡ଼େଇ ହେଇଥିବା ଜୀବନ ହିଁ ତାଙ୍କ କବିତା । ବିଭୁଦତ୍ତ ମିଶ୍ର ପ୍ରେମ ଓ ପ୍ରଣୟର ସନେଟ୍ ରଚୟିତା ଭାବେ ଅନନ୍ୟ ।

ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନର ବହୁଭାବନାରେ ରୂପାନ୍ତରିତ ଆଧୁନିକ କବିତା । ଆଜିର କବିତା ଉତ୍ତର ଆଧୁନିକତାର ଉଚ୍ଚାରଣରେ ସଂପର୍କିତ ହେଲେ ମଧ୍ୟ ପ୍ରାଚୀନ ପରଂପରା ପ୍ରତି ମାନ୍ୟତାକୁ ନୂଆ ରୂପରେ ଗ୍ରହଣ କରିପାରିଛି ।

**ଉତ୍ତର ଆଧୁନିକ କାଳ :**

ଉତ୍ତର ଆଧୁନିକ କବିତା ଗୁଡ଼ିକରେ, ସରଳ ଓ ଗୀତିପ୍ରବଣ ଶୈଳୀରେ ଈଶ୍ୱର ସଂପର୍କ, ଆଧ୍ୟାତ୍ମିକ ବିଶ୍ୱାସ, ପରଂପରା ଓ ତା'ର ମୂଲ୍ୟବୋଧ ପ୍ରତି ମମତ୍ୱବୋଧ ପ୍ରକାଶ ପାଉଛି । ସତୁରୀ ଦଶକ ମଧ୍ୟରେ ପ୍ରୟୋଗବାଦୀ କବିତାରେ ଜୀବନ ପ୍ରତି ଯେଭଳି ନେତିବାଦୀ ଦୃଷ୍ଟିଭଙ୍ଗୀ, ହତାଶା, ନୈରାଶ୍ୟ ଓ ବୈରାଗ୍ୟ ପ୍ରକାଶ ପାଇଥିଲା, ତାହା କ୍ରମେ ଆସ୍ତିବାଚକ ହୋଇ ସୁସ୍ଥ ସୁନ୍ଦର ପାର୍ଥିବ ଭାବନା ସହିତ ମଣିଷ ଓ ତା'ର ପରିବେଶ ପ୍ରତି ଅଧିକ ସଂବେଦନଶୀଳ ହେବା ଲକ୍ଷ୍ୟ କରାଯାଏ । ସାଂପ୍ରତିକ ସମାଜରେ ମଣିଷର ବହୁ ଜଟିଳ ଅନୁଭୂତି ଓ ଜୀବନ ଯାତ୍ରାକୁ ମିଥ୍‌ର ବହୁଳ ପ୍ରୟୋଗ ମାଧ୍ୟମରେ ପ୍ରକାଶ କରାଯାଉଅଛି । ରାଜେନ୍ଦ୍ର କିଶୋର ପଣ୍ଡା ମାନବ ଶିଶୁର ପାପୁଲିରେ ପଦ୍ମର ସଂକେତ ଦେଖିବା ସହିତ

ନଳୀଗୋଡ଼ରେ ସାପଜିଭକୁ ଖୋଜି ପା'ନ୍ତି । " ନଳୀ ଗୋଡ଼ରେ ଲହ ଲହ ଚିରା ସାପଜିଭର କହରା ବେଶ । ତାକୁ ଉପରେ ଫଁ ଫଁ ଅଠର ନାକପୁଡ଼ା, ତତଲା ଅଭିଶାପର ନିଃଶ୍ୱାସ । ପାଦରେ ସ୍ୱସ୍ତିକ ଚିହ୍ନ, ପାପୁଲିରେ ପଦ୍ମର ସଂକେତ । " ମାନବତାର ବିଶ୍ଳେଷଣ, ମଣିଷର ଭଲ ମନ୍ଦ ସ୍ୱରୂପ ଉଦ୍‌ଘାଟନ ତାଙ୍କର ଲକ୍ଷ୍ୟ । ସାଧାରଣ ମଣିଷର ଦୁଃଖ ଓ ବିଷାଦ ପାଇଁ ସଂବେଦନଶୀଳ କବି ଅଶ୍ୱିନୀ ମିଶ୍ର ସମକାଳୀନ ସମାଜ ବ୍ୟବସ୍ଥାକୁ ବ୍ୟଙ୍ଗ କରନ୍ତି ଏହିପରି - "ଏବେ କେବଳ, ନିଜକୁ ପରଠୁ ଜିଣେଇ ନେବାର, ପରିଚ୍ଛନ୍ନ ରଣକୌଶଳ, ଭୁସ୍‌ଭାସ୍ ଦଉଡ଼ା ଦଉଡ଼ି, ଗୋଟେଇ ରଖିବାକୁ ଗୋଟାକେତେ ଖ୍ୟାତିର ବଟକରା ।"

ଏହି ସମୟର କବି ଭାବରେ ହୃଷୀକେଶ ମଲ୍ଲିକ 'ଧାନ ସାଉଁଟା ଝିଅ'ର କଥା କହି ଅବକ୍ଷୟଗ୍ରସ୍ତ ପଲ୍ଲୀର ଅସ୍ତିତ୍ୱକୁ ଖୁବ୍ ସରଳ ଭାବରେ ବ୍ୟକ୍ତ କରନ୍ତି । ଗ୍ରାମ୍ୟ ଶବ୍ଦାବଳୀର ଅବିକଳ ପ୍ରୟୋଗ ଯୋଗୁଁ ପଲ୍ଲୀର ସବୁଜଚିତ୍ର ତାଙ୍କ କବିତାର ଏକ ସୌନ୍ଦର୍ଯ୍ୟ । କବି ଶତ୍ରୁଘ୍ନ ପାଣ୍ଡବଙ୍କ କବିତାରେ ଦାର୍ଶନିକ ଦୃଷ୍ଟିଭଙ୍ଗୀ ସହିତ ରୂପୋତ୍ତର ଭାବନା, ଐଶ୍ୱରିକ ସାନ୍ନିଧରେ ' ପଦ୍ମପାଲିଙ୍କି'ର କବିପ୍ରାଣ ପଦ୍ମଗନ୍ଧରେ ମହମହ । ପ୍ରସନ୍ନ ମହାନ୍ତଙ୍କ କବିତା ପ୍ରେମ, ଜୀବନ ଓ ଈଶ୍ୱରକୁ ନେଇ ସମୃଦ୍ଧ । ନାରୀକବିଙ୍କ ମଧ୍ୟରେ ପ୍ରତିଭା ଶତପଥୀଙ୍କର 'ସାହାଡ଼ା ସୁନ୍ଦରୀ'ରେ କୁତ୍ସିତତାର ଅନ୍ତରାଳରେ ପ୍ରକୃତ ସୌନ୍ଦର୍ଯ୍ୟର ସନ୍ଧାନ, ମାଟିର ଖୋଳ ଭିତରୁ ପରମସତ୍ତାର ଅନୁସନ୍ଧାନ ସୂଚିତ । 'ନିମିଷେ ଅନ୍ଧାର'ରେ କାକର ବିନ୍ଦୁଟିଏ ସୂର୍ଯ୍ୟଙ୍କୁ ଧରି ରଖିଥିବା ପରି ଗୋଟିଏ ମୁହୂର୍ତ୍ତର ଅନୁଭବକୁ କବିଜୀବନର ପରିପୂର୍ଣ୍ଣତା ବୋଲି ସେ ମନେକରନ୍ତି ।

ଉତ୍ତର ଆଧୁନିକ କବିତାରେ ଜୀବନ ସହିତ ମୃତ୍ୟୁର, ଭୂମି ସହିତ ଭୂମାର ସଂପର୍କକୁ ଯେଉଁ ଭଳି ମନନଶୀଳ ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀରେ କବି ବ୍ୟକ୍ତ କରନ୍ତି, ଏଥିରେ ସମୟଚେତନା, ମୃତ୍ୟୁ ଭାବନା ଓ ଇନ୍ଦ୍ରିୟୋତ୍ତର ପାରତ୍ରିକ ଭାବନା ତିନିଗୋଟି ମୁଖ୍ୟ ଆତ୍ମିକ ବିଭବ ରୂପେ ପ୍ରକାଶ ପାଇଛି । ବ୍ରହ୍ମୋତ୍ରି ମହାନ୍ତିଙ୍କର 'ମୃତ୍ୟୁ ସଂପର୍କରେ' ମୃତ୍ୟୁ ପାଇଁ ଏକ ବୁଝାମଣା ଅପେକ୍ଷା 'ସ୍ତବକ' ସଂକଳନର କବିତାଗୁଡ଼ିକରେ ପାରତ୍ରିକ ଭାବନାର ସ୍ତବକ, ମୃତ୍ୟୁ ବା ଆରପାରିର ଯାତ୍ରା ପାଇଁ ସ୍ୱାଭାବିକ ଅପେକ୍ଷା ହିଁ ପ୍ରକାଶ ପାଏ । ଦିଲୀପ ଦାସ 'ଘର' କବିତାରେ ' ମଇଁଷିର ଲାଞ୍ଜ' ଧରି 'ନଦୀପାର ହେବା ସହଜ' କହିବା ସହିତ 'ପେଚା ମୁହଁଭଳି ଜହ୍ନ' ଦେଖିବା କଥା କହନ୍ତି । ସ୍ୱପ୍ନିଳ ଭାବନାରେ ବି ସେ ମୃତ୍ୟୁକୁ ଦେଖିପାରନ୍ତି ।

ପ୍ରତିଭା ଶତପଥୀ ଅପାରଗ ଦେହଟାକୁ ମୃତ୍ୟୁର ପାରଣା ପାଇଁ ଅର୍ପଣ କରିଦେବାରେ ଅନୁଶୋଚନା କରନ୍ତି ନାହିଁ । ମୃତ୍ୟୁକୁ 'ସବା ସାନପୁଅ'ର ପ୍ରତୀକ ଭିତରେ ବି ସେ ଅପେକ୍ଷା କରି ବସନ୍ତି । ଦୀପକ ମିଶ୍ର ମୃତ୍ୟୁକୁ ରମଣୀୟ, ରମଣୀର କୋଳ ପୁଣି ପ୍ରଥମ ଶ୍ରେଣୀ ବିଶ୍ରାମାଗାର ଭଳି ନିରାପଦ ସୁଖପ୍ରଦ ସ୍ଥାନ ବୋଲି ମନେକରନ୍ତି । ରମାକାନ୍ତ ଓ

ସୀତାକାନ୍ତ ମୃତ୍ୟୁକୁ ଅତିଥିଭାବେ ଗ୍ରହଣ କରିବା ପରେ ବହୁ କବିଙ୍କର ଭାବନାରେ ମୃତ୍ୟୁ ଅତିଥି ହୋଇଯାଇଛି । ରମାକାନ୍ତ ରଥଙ୍କ 'ଉଜ୍ଜ୍ୱଳ ଭବିଷ୍ୟତ' କବିତାଟି ସମୟବୋଧ ଓ ମୃତ୍ୟୁବୋଧ ସଂପର୍କିତ କବିତା । ମୃତ୍ୟୁ ବା ସପ୍ତମ ଋତୁକୁ ସେ ଚେତନାର ଏକ ନୂଆ ଦିଶା ବୋଲି ଭାବୁଛନ୍ତି । ମେଘ ମଧ ତାଙ୍କ ପାଇଁ ମୃତ୍ୟୁର ପ୍ରତୀକ ହୋଇଯାଇଛି । ଶାଶ୍ୱତ ସମୟର ଅଖଣ୍ଡ ପ୍ରବାହ କେବଳ, ଜୀବନ ନୁହେଁ କି ମୃତ୍ୟୁ ନୁହେଁ, ମୃତ୍ୟୁ ପରେ ପ୍ରାୟଶ୍ଚିତ ବି ନୁହେଁ, ସମୟ ପରେ ଅମାପ ଅନ୍ଧାର କେବଳ । ବାଲ୍ୟକାଳର ଉଜ୍ଜ୍ୱଳତାକୁ ଭବିଷ୍ୟତର ଉଜ୍ଜ୍ୱଳବର୍ଣ୍ଣ ବୋଲି ଗ୍ରହଣ କରିନେଇ ମୃତ୍ୟୁକୁ ବେପରୁଆ ଓ ଉଦାସୀନ ଭାବରେ ସେ ଦେଖୁଛନ୍ତି । ଜୀବନପ୍ରତି, ପୃଥିବୀ ପ୍ରତି ତାଙ୍କର ଗଭୀର ଆସକ୍ତି ରହିଛି । ନୃସିଂହ ରଥ ସମୟ ଆଖିର ପ୍ରହରୀଠାରୁ ନିଷ୍କୃତି ପାଆନ୍ତି ନାହିଁ । କବି ଶତର ପ୍ରଧାନ ଦରଦୀ ସ୍ୱରରେ ରତ୍ନପଲଙ୍କ, ହଁସୁଲୀଶେଯ ପକାଇଥିଲେବି ସମୟ ସ୍ୱତଃ ଅପସାରିତ ହୋଇଯାଏ । ରଞ୍ଜିତା ନାୟକ ସମୟ ସ୍ରୋତରେ ଉବୁଟୁବୁ ମଣିଷର ହାତମୁଠାରେ କିଛି ନଥିବା କଥା କହି ମଣିଷର ଅସହାୟତାକୁ ସୂଚାନ୍ତି । ପ୍ରେମାନନ୍ଦ ପଣ୍ଡା ଅସମୟରେ ଧର୍ମଭୀରୁ ମଣିଷର ଅସହାୟତା କଥା କହନ୍ତି- 'ବୃଷଭ ପହ୍ନାରୁ କ୍ଷୀର ଝରେ, ଦୁହିଁ ନିଏ ଲୋଭୀ ଗାଈଆଳ, କଳମୀ ହେଉଛି ମାଙ୍କଡ଼ କି ମେଣ୍ଢାର ଦୁଲାଳ ।' ବିଦ୍ୟୁତ୍‌ପ୍ରଭା ନାୟକ 'ଶବ୍ଦର ପକ୍ଷୀ' ଓ 'ଅମୃତ ଅଭିସାର' ରେ ସମୟର ଅନ୍ତିମ ଲଗ୍ନରେ ମୃତ୍ୟୁ ନୁହେଁ ପରମ ସହିତ ତଲ୍ଲୀନ ହେବାକୁ ଅମୃତ ଅଭିସାର ବୋଲି କହନ୍ତି । ଶକୁନ୍ତଳା ପଣ୍ଡା ମୃତ୍ୟୁକୁ ଅବିକଳ ସତ୍ୟ ବୋଲି କହନ୍ତି । ସୌଭାଗ୍ୟ ମିଶ୍ର ମୃତ୍ୟୁଲୋକକୁ ଯାତ୍ରା ତୀର୍ଥଯାତ୍ରା ବୋଲି କହନ୍ତି । ଇନ୍ଦୁ ମିଶ ଯୂଇଗଛ ସହିତ ସମୟର ଆତ୍ମିକ ସମ୍ଭାଷଣ ଶୁଣାଇଛନ୍ତି । ଫନୀ ମହାନ୍ତି ଜୀବନ ଓ ମରଣରେ ସେଇ ପାରତ୍ରିକ ପରମ ଶ୍ୟାମସୁନ୍ଦରଙ୍କୁ ହୃଦୟର ଜୟମାଲ୍ୟ ଦେବାଲାଗି ଶବ୍ଦ ପାଆନ୍ତି ନାହିଁ । ପ୍ରବାସିନୀ ମହାକୁଡ଼ ପାରତ୍ରିକ ଭାବନାରେ ଅଦୃଶ୍ୟ ପରମ ପ୍ରେମିକ ନିକଟରୁ ମେଘର ପାଚେରୀ ଡେ଼ଇଁ ବାର୍ତ୍ତା ପଠାନ୍ତି ।

ମଣିଷ ଓ ପୃଥିବୀକୁ ଭଲ ପାଇବାର ଇଛା ସାଂପ୍ରତିକ କବିତାର ମୁଖ୍ୟ ସ୍ୱର ହେବାରେ ଲାଗିଛି । ହୁସେନ୍ ରବିଗାନ୍ଧି ବୈପ୍ଲବିକ ମାନସରେ ତେଣୁ ଭାରତମାତାର ବନ୍ଦନା କରନ୍ତି । ଘର ବାହୁଡ଼ାବେଳେ ନିତ୍ୟାନନ୍ଦ ନାୟକ ମଧ ଭାବନ୍ତି -''ଜାଣି ହୁଏନି ଆଜି, କେଉଁ ଧ୍ୱନି, କେଉଁ ପ୍ରତିଧ୍ୱନି ଫେରାଇ ଆଣିଲା ମତେ ମନ୍ତ୍ରମୁଗ୍ଧ କରି, ପରିଣତା ପତ୍ନୀ ଏବଂ ବୟସ୍କ ପୁତ୍ରଙ୍କ ଚେଁ ଚାଁ, ଶ୍ୱାସରୁଦ୍ଧ ନୀଡ଼ ଓ ବାରୁଦଭର୍ତ୍ତି ଜରିଖୋଳ ଭିତରକୁ ।'' ବିଜୟିନୀ ଦାସ ଗାନ୍ଧାରୀର ଅନ୍ଧପୁଟୁଳି ସେହିଦିନ ଖୋଲିବେ, ଯେଉଁଦିନ ଅମୃତଲଗ୍ନରେ ସାର୍ବଜନୀନ ମାନବୀୟ ଆହ୍ଲାଦ ସେ ଲାଭ କରିବେ । ପ୍ରସନ୍ନ ପାଟଶାଣୀ ଏ ମାଟିର ଭଙ୍ଗା କାଚଖଣ୍ଡର ସମୁଦ୍ର ଉପରେ ଚାଲି ଚାଲି ପାଦର ରୁଧିରରେ ଲେଖନ୍ତି ' କବି ମୁଁ ତୁମକୁ ଭଲ ପାଏ ।'

ଉତ୍ତର ଆଧୁନିକ କାଳରେ ଆନ୍ତର୍ଜାତିକ ନାରୀ ସ୍ୱାଧିକାର ପ୍ରତିଷ୍ଠା ପାଇଁ ସ୍ୱର ଉତ୍ତୋଳନ ଘଟିଛି । ନାରୀର ଅଧିକାର ପ୍ରତି ସଚେତନତା, ନାରୀର ଦୁଃଖ ଓ ଦୈନ୍ୟ ପ୍ରତି ସମ୍ବେଦନା, ନାରୀ ଚେତନାର ଉତ୍ତରଣ ଇତ୍ୟାଦିରେ କେତେକ ନାରୀକବିଙ୍କର ବିଶେଷତ୍ୱ ରହିଛି । ମନୋରମା ମହାପାତ୍ର ଅନ୍ତରଙ୍ଗ ଅନୁଭବ ଭିତରେ ଅଭିଶପ୍ତା ନାରୀଜାତି ପାଇଁ ବିଦ୍ରୋହ କରି କହନ୍ତି - " ମୋ ଭିତରେ ଅଭିଶପ୍ତା ଏକ ନାରୀ ଜାତି, ବିକ୍ଷୋଭ କରୁଛନ୍ତି ବିଦ୍ରୋହ ବି କରୁଛନ୍ତି ।" ପ୍ରତିଭା ଶତପଥୀଙ୍କ କବିତାରେ ଏହାର ବଳିଷ୍ଠ ସ୍ୱର ମଧ୍ୟ ରହିଛି । ସରୋଜିନୀ ଷଡ଼ଙ୍ଗୀଙ୍କର 'ଆତ୍ମଜା', ଅପର୍ଣ୍ଣା ମହାନ୍ତଙ୍କର 'ମେଘପରି' 'ସ୍ୱଷ୍ଟକଥନ' ଏଇ ପର୍ଯ୍ୟାୟର ଅଟେ । ସାଂପ୍ରତିକ ବ୍ୟକ୍ତିମାନସର ନିଃସଙ୍ଗତାବୋଧ, ଅସହାୟତା, ସମାଜ ସଚେତନତା, ମାଟି ଓ ମଣିଷ ପ୍ରତି ସମ୍ବେଦନା ସହିତ ପାରଂପରିକ ମୂଲ୍ୟବୋଧ ପ୍ରତି ସଚେତନତା, ମୃତ୍ୟୁ ଚିନ୍ତା ଆଦି ବହୁ ତରୁଣ କବିଙ୍କର କବିତାରେ ପ୍ରକାଶ ପାଇଛି । ସୀମିତ ପରିସର ମଧ୍ୟରେ ସମସ୍ତ କବିଙ୍କୁ ସ୍ଥାନିତ କରିବା ଏଠାରେ ସମ୍ଭବ ନୁହେଁ, ତଥାପି ଅନେକଙ୍କ ଭିତରେ ସୂର୍ଯ୍ୟ ମିଶ୍ର, ଅମରେନ୍ଦ୍ର ଖଟୁଆ, ମାନସ ମହାପାତ୍ର, ସୁଚେତା ମିଶ୍ର, ନାରାୟଣ ପଣ୍ଡା, ପ୍ରଦ୍ୟୁମ୍ନ ସେନାପତ, ନୀଳମଣି ପରିଡ଼ା ଆଦି ସମାଲୋଚନା ଭିତରକୁ ଆସିପାରି ନାହାନ୍ତି ।

ଆଧୁନିକ କବିତାର ପରବର୍ତ୍ତୀ ପର୍ଯ୍ୟାୟକୁ Frank Kermode, Neo Modernism ବୋଲି କହୁଥିବାବେଳେ କେତେକ ଏହାକୁ Post Modernism ବା ଉତ୍ତର ଆଧୁନିକତା ବୋଲି କହୁଛନ୍ତି । ଜର୍ମାନ କବି Arno Holz କହନ୍ତି - "Let the poet be modern/ Modern from head to toe." ଆଧୁନିକ ହେବାକୁ ହେଲେ ଯେପରି କବିତାର ଆମୂଳଚୂଳ ପରିବର୍ତ୍ତନ ଦରକାର, ଶୈଳୀ ଓ ସୌନ୍ଦର୍ଯ୍ୟ ଶାସ୍ତ୍ର ଅନୁଯାୟୀ ସାହିତ୍ୟର ସ୍ୱାୟତ୍ତତା ମଧ୍ୟ ଆବଶ୍ୟକ । ୧୯୯୧ ମସିହାରେ ଜାଁ ଫ୍ରାସ୍ୱା ଲିୟୋତାର ତାଙ୍କର 'Rewriting Modernity' ପୁସ୍ତକରେ କହନ୍ତି- "ଏକ ନିର୍ଦ୍ଦିଷ୍ଟ ସମୟର କଳାକୃତି ସେହି ସମୟରେ ହିଁ ଆଧୁନିକତାର ମାନ୍ୟତା ପାଇଥାଏ ।" ବର୍ତ୍ତମାନ ସମୟର ସୀମା ଏତେ ସଂକୁଚିତ ହୋଇଯାଇଛି ଯେ, ମଣିଷ ସାହିତ୍ୟକୁ ଆଉ ଏକ ସାଧନାରୂପେ ମୂଲ୍ୟଦେବାରେ ସମର୍ଥ ହୋଇପାରୁନାହିଁ । କବିତାରେ ତେଣୁ ସରଳ ସ୍ୱଚ୍ଛନ୍ଦ ଭାବବିଳାସ ସହିତ ଗୀତିପ୍ରାଣତା ରହିବା ଦରକାର, ଯାହା ମଣିଷକୁ ଆନନ୍ଦ ଦେଇପାରିବ ।

❑❑❑

# ଆଧୁନିକ ଓଡ଼ିଆ କବିତାରେ ସୌନ୍ଦର୍ଯ୍ୟଚେତନା

•

ଡକ୍ଟର ଦାଶରଥି ଦାସ



*ଅବସରପ୍ରାପ୍ତ ପ୍ରଫେସର, ଓଡ଼ିଆ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

ଯଥାର୍ଥ କବି ମାତ୍ରେ ସୌନ୍ଦର୍ଯ୍ୟସାଧକ । ତାଙ୍କ ସୌନ୍ଦର୍ଯ୍ୟବୋଧ ସହିତ ସତ୍ୟ, ଆନନ୍ଦ ଓ କଲ୍ୟାଣର ସହଜ ସମ୍ବନ୍ଧ ସର୍ବତ୍ର ବିଦ୍ୟମାନ । ତେଣୁ କ ବିତା ସୌନ୍ଦର୍ଯ୍ୟ-ଲକ୍ଷ୍ମୀଙ୍କର ମୁଗ୍ଧ ବନ୍ଦାପନା ଭିନ୍ନ ଅନ୍ୟ କିଛି ହୋଇ ପାରେ ନାହିଁ । ଯୁଗ ବଦଳେ । ନୂଆ କାବ୍ୟ ଚେତନା (Sensibility) ନୂଆ ଭାଷାଭଙ୍ଗୀରେ ଅଭିବ୍ୟକ୍ତ ହୁଏ; ମାତ୍ର କବିତା ତା'ର ନିଜସ୍ୱ ଛନ୍ଦ ଓ ଅନ୍ତର୍ନିହିତ ସଂଯମ, ଶୃଙ୍ଖଳା କେବେ ଛାଡ଼େ ନାହିଁ କି ନାନ୍ଦନିକ ସୃଜନଶୀଳତାର ସ୍ୱଭାବଧର୍ମ ଲଂଘନ କରେ ନାହିଁ । ଯୁଗେ ଯୁଗେ କବିତାର ଆଭିମୁଖ୍ୟ ହୁଏ କବିତା, ଯେମିତି ଫୁଲର ଆଭିମୁଖ୍ୟ ଫୁଲ ହୋଇ ଫୁଟିବା । ଆମ ଈଶୋପନିଷଦର 'କବିର୍ମନୀଷୀ ପରିଭୂଃସ୍ୱୟମ୍ଭୂଃ' ଶ୍ଳୋକାଂଶଟିରେ ପରମାତ୍ମାଙ୍କ କବିତ୍ୱ ଓ ପ୍ରଭୁତ୍ୱ ସମ୍ବନ୍ଧରେ ଯାହା କୁହାଯାଇଛି, ତାହା ମଧ୍ୟ ଯେକୌଣସି ଯୁଗର ଭଲ କବିଙ୍କ କବିତ୍ୱ ଓ ପ୍ରଭୁତ୍ୱ ପାଇଁ ସମଭାବେ ସତ୍ୟ ଓ ସାର୍ଥକ ।

କବିଙ୍କ କବିତ୍ୱ ଓ ପ୍ରଭୁତ୍ୱ ବାହାରର କୌଣସି ପରିବର୍ତ୍ତନ ଦ୍ୱାରା ନିୟନ୍ତ୍ରିତ ହୁଏ ନାହିଁ । ତାଙ୍କ ସୌନ୍ଦର୍ଯ୍ୟବୋଧର ଆନନ୍ଦ କବିତାର ନିଜସ୍ୱ ସୁଶୃଙ୍ଖଳ ସୁଷମା ମଧ୍ୟରେ ସଦା ସୁବିହିତ ଛନ୍ଦରେ ନିଜକୁ ପ୍ରକାଶ କରିଦିଏ । କବିଙ୍କ ସୌନ୍ଦର୍ଯ୍ୟବୋଧ କାବ୍ୟ-ସୌନ୍ଦର୍ଯ୍ୟର ଭିତ୍ତିଭୂମି । କବିଙ୍କ ପ୍ରାଣରେ ସ୍ନିଗ୍ଧ ସୁଷମାମୟ ଯେଉଁ ସୌନ୍ଦର୍ଯ୍ୟକଳ୍ପନା ଥାଏ,ସୃଷ୍ଟି ମଧ୍ୟରେ ତାହା ସାର୍ଥକ ହୋଇ ଉଠେ ଓ ସୃଷ୍ଟିକୁ ସାର୍ଥକ କରେ । ତେଣୁ ଯେ କୌଣସି ଅସୁନ୍ଦର ଓ ଅମଙ୍ଗଳ ବିଷୟକୁ ଘେନି ମଧ୍ୟ ସୁନ୍ଦର କବିତାଟିଏ ଲେଖିହୁଏ । ଏହି ସନାତନ କାବ୍ୟତତ୍ତ୍ୱଟି ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ବୈତଥ୍ୟ ହୋଇନାହିଁ। ଆଧୁନିକ କବିଙ୍କ ବିରୋଧରେ ଅଭିଯୋଗ କରାଯାଏ

ଯେ, ସେମାନେ ଆଧିଗ୍ରସ୍ତ. ସେମାନଙ୍କ ସୌନ୍ଦର୍ଯ୍ୟବୋଧ,କଳ୍ପନାଶକ୍ତି ଓ ଅନୁଭବ କ୍ଷମତା ଅପେକ୍ଷାକୃତ କମ୍ । ତେଣୁ କବିତାରେ ଜଗତର ଜୀର୍ଣ୍ଣ, ବିଷଣ୍ଣ, ଅବସନ୍ନ ରୂପଟି ପ୍ରକଟିତ ହୋଇଛି, ଜୀବନର ଅଶୁଭ, କଦର୍ଯ୍ୟ, ବୀଭତ୍ସ ଦିଗଟି ବେଶି ଧରା ପଡ଼ିଛି, ନୀଳନିର୍ଜନ ମୃତ୍ୟୁର ସୌନ୍ଦର୍ଯ୍ୟଗ୍ରାସୀ ଭୟାବହତା ଉତ୍‌କୀର୍ଣ୍ଣ ହୋଇଛି । ପ୍ରକୃତିର ସୌନ୍ଦର୍ଯ୍ୟ କାହିଁ ? କାହିଁ ବା ଜୀବନର ସରସ-ସୁନ୍ଦର କୌତୁକଭରା ରୂପ ରସ ରଙ୍ଗ ? କ୍ଳାନ୍ତି, ନୈରାଶ୍ୟ ଓ ବିଷଣ୍ଣତାର ଛାୟାରେ କବିତାର ସୌନ୍ଦର୍ଯ୍ୟଚେତନା ଅବଲୁପ୍ତ ପ୍ରାୟ ।

ଏପରି ଅଭିଯୋଗ ସର୍ବାଂଶରେ ସତ୍ୟ ହୋଇ ନପାରେ । ସୌନ୍ଦର୍ଯ୍ୟାନୁଭୂତି ଓ ନାନ୍ଦନିକ ସୃଜନଶୀଳତା ଭିନ୍ନ କବିତା ରଚନା ସମ୍ଭବ ହେବ କିପରି ? କୁତ୍ସିତତା ମଧ୍ୟ ସୌନ୍ଦର୍ଯ୍ୟର ଅନ୍ୟ ଏକ ଦିଗ । ଆଧୁନିକ କବିଏ ଜୀବନ୍ତ ସୌନ୍ଦର୍ଯ୍ୟ ପ୍ରତି ସଚେତନ ଥିବାରୁ କୁତ୍ସିତତାର ଯନ୍ତ୍ରଣା ଭୋଗୁଛନ୍ତି । ପ୍ରାଣରେ ଅଖଣ୍ଡ ସୌନ୍ଦର୍ଯ୍ୟାନୁଭୂତି ପୋଷିଥିବାରୁ ଜଗତ ଓ ଜୀବନର ପ୍ରତ୍ୟକ୍ଷ ବୀଭତ୍ସତାକୁ ଭେଟୁଛନ୍ତି । ଆଧୁନିକ କବିତାର ସୌନ୍ଦର୍ଯ୍ୟଚେତନା ସବୁବେଳେ ଅଭାବାତ୍ମକ ନୁହେଁ, ତା'ର ଭାବାତ୍ମକ ପକ୍ଷ ଅଛି । ଚିର ସୌନ୍ଦର୍ଯ୍ୟମୟୀ ବିଚିତ୍ର ବିଶ୍ୱପ୍ରକୃତି ଓ ତା'ର ପ୍ରତିଛବି ବିଚିତ୍ରବର୍ଣ୍ଣା ନାରୀକୁ ମଧ୍ୟ ସେଥିରେ ତୀବ୍ର ଅନୁରାଗ-ଦୃଷ୍ଟିରେ ଲକ୍ଷ୍ୟ କରାଯାଇଛି ।

ସୌନ୍ଦର୍ଯ୍ୟାନୁଭୂତି ମାତ୍ରେ ଆନନ୍ଦମୟ । ଯାହା ଆନନ୍ଦ ଦିଏ, ତାହାକୁ ହିଁ ମନ ସୁନ୍ଦର ବୋଲି କହିଥାଏ । ତେଣୁ ସୌନ୍ଦର୍ଯ୍ୟ ମନରେ ନ ଥାଏ କି ବସ୍ତୁରେ ନ ଥାଏ; ଥାଏ ମନ ଓ ବସ୍ତୁର ସମ୍ମିଳିତ ସତ୍ତାରେ । ସୌନ୍ଦର୍ଯ୍ୟାନୁଭୂତିରେ ବ୍ୟକ୍ତିର ମନ ଯେପରି ବସ୍ତୁଗତ ହୋଇଯାଏ, ଠିକ୍ ସେଇପରି ଦୃଶ୍ୟବସ୍ତୁ ମଧ୍ୟ ମନୋଗତ ହୋଇ ଉଠେ । ସେଥିପାଇଁ କବି କହନ୍ତି , ''ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ, ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ । '' ସୌନ୍ଦର୍ଯ୍ୟ ଏକାଧାରରେ ଯୁଗପତ ବ୍ୟକ୍ତିଗତ । ସାହିତ୍ୟରେ ଯୁଗେଯୁଗେ ବ୍ୟକ୍ତି ଓ ବସ୍ତୁର ସାହିତ୍ୟ-ସାଧନ ଘଟିଥାଏ । କବି-ମନ ବସ୍ତୁ ମାଧ୍ୟମରେ ଯେପରି ନିଜକୁ ପ୍ରକାଶ କରେ, ଠିକ୍ ସେପରି ସେହି ବସ୍ତୁର ପ୍ରାକୃତିକ ରୂପକୁ ନିଜ ପ୍ରାଣର ମାଧୁରୀରେ ନିଷକ୍ତ କରି ତାହା ସହିତ ମନର ମିଳନ ପଥକୁ ସହଜ କରିନିଏ । ତେଣୁ କବିତାରେ ସୌନ୍ଦର୍ଯ୍ୟାନୁଭୂତି ସହିତ ସମାନ୍ତରାଳ ଭାବରେ ସୌନ୍ଦର୍ଯ୍ୟ ସୃଷ୍ଟି ହୋଇଥାଏ । କବି ନିଜର ସୌନ୍ଦର୍ଯ୍ୟବିଧାୟିନୀ କଳ୍ପନା ବଳରେ ଓ ବାସ୍ତବ ସୌନ୍ଦର୍ଯ୍ୟବୋଧର ପଟ୍ଟଭୂମିରେ କାବ୍ୟର ସୌନ୍ଦର୍ଯ୍ୟାଲୋକ ନିର୍ମାଣ କରନ୍ତି । ଆଧୁନିକ କବି ବ୍ୟତିକ୍ରମ ନୁହନ୍ତି; କିନ୍ତୁ ସେ ଗତାନୁଗତିକ ସୁନ୍ଦର ଅସୁନ୍ଦର ଓ ମଙ୍ଗଳ ଅମଙ୍ଗଳ ବିଶ୍ୱର ବିଚାରବୋଧକୁ ମାନନ୍ତି ନାହିଁ, ବରଂ ପୂର୍ବ କବିକୁଳ ପରିତ୍ୟକ୍ତ ଅଶୁଭ, ଅନୁଦାର ଓ ଅସୁନ୍ଦର ପ୍ରାକୃତିକ ତଥା ମାନବିକ ପରିବେଶକୁ ଗ୍ରହଣ କରିବାକୁ ଅଧିକ ଆଗ୍ରହ ପ୍ରକାଶ କରନ୍ତି ।

ଆଧୁନିକ କବିତାର ସୌନ୍ଦର୍ଯ୍ୟବୋଧ ଅମଙ୍ଗଳବୋଧଠାରୁ ଦୂରବର୍ତ୍ତୀ ନୁହେଁ । ଯେଉଁମାନେ ବୋଦେଲେୟାରଙ୍କ 'Hymne a la Beaute' ଓ ରିଲ୍‌କେଙ୍କ " Die Ersle Elegie" ପଢ଼ିଛନ୍ତି, ସେମାନେ ଜାଣନ୍ତି ଯେ ଆଧୁନିକ କବିତାର ସୌନ୍ଦର୍ଯ୍ୟ ଚେତନାରେ କୁଶ୍ରୀତା, ନୃଶଂସତା ଓ ଅଶୁଭ ବିଷୟର ସ୍ଥାନ ଅଛି । ଜର୍ମାନ କବି ରିଲ୍‌କେ ତାଙ୍କର ପୂର୍ବୋକ୍ତ କବିତାରେ କହନ୍ତି, "The beautiful is nothing but the beginning of the terrible, which we are just able to endure, and we admire it so because it serenely disdains to destroy us. Each and every angel is terrible.* ଜଗତ ଓ ଜୀବନର ଅଶୁଭ, କଦର୍ଯ୍ୟ, ବୀଭତ୍ସ ଓ ଅନୁଦାର ଦିଗଟି ପ୍ରତି ଆଧୁନିକ କବିଙ୍କ ଶ୍ରଦ୍ଧା ଓ ଅନୁରାଗ ଦୁର୍ଲକ୍ଷ୍ୟ ନୁହେଁ । ସେଥିପାଇଁ କୁହାଯାଏ, ଆଧୁନିକ କବିତାର ବୈଶିଷ୍ଟ୍ୟ ହେଉଛି, " An overwhelming consciousness of evil" ସକଳ ଅଶୁଭର ସ୍ରଷ୍ଟା ଶୟତାନହିଁ ଆଧୁନିକ କବିଙ୍କର ଉପାସ୍ୟ, ଏଠାରେ କବି ଚିନ୍ତାମଣି ବେହେରାଙ୍କ 'ଶୟତାନ ପାଇଁ ଗୋଟିଏ ସ୍ତୁତି' କବିତା ବିଚାର୍ଯ୍ୟ । ବିଚିତ୍ର କାବ୍ୟସ୍ରଷ୍ଟା ସେହି ଶୟତାନର ଶୁଭ-ଅଶୁଭ, ମଙ୍ଗଳ-ଅମଙ୍ଗଳ, ସତ୍ୟ-ଅସତ୍ୟ ତଥା ରୂପ-ବିରୂପ ଆଦି ସକଳ ସ୍ନାୟୁକୁ ଏକତ୍ର କରି ପ୍ରସ୍ତୁତ କରିଥାଏ ତା'ର ବୀଣାର ତନ୍ତ୍ରୀ । ଏହି ଦୃଷ୍ଟିରୁ କିନ୍ତୁ ଆଧୁନିକ କବିଏ ସତ୍ୟ, ଶୁଭ ଓ ସୌନ୍ଦର୍ଯ୍ୟର ସାମଞ୍ଜସ୍ୟ ଉପଲବ୍ଧି କରନ୍ତି ନାହିଁ ବୋଲି କହିଲେ ଭୁଲ ହେବ । ଶୟତାନ ତାଙ୍କର ଶ୍ମଶାନଚାରୀ ହୋଇ ମଧ୍ୟ ଶିବ । ଅଧିକାଂଶ ଆଧୁନିକ କବିଙ୍କର ସତ୍ୟ, ଶୁଭ ଓ ସୌନ୍ଦର୍ଯ୍ୟ ପ୍ରତି ପରିପୂର୍ଣ୍ଣ ବିଶ୍ୱାସ ଥିବାରୁ ସେମାନେ ଅଶୁଭ ଓ କଦର୍ଯ୍ୟର ନିର୍ଭୀକ ସାଧନା କରି ପାରନ୍ତି । ଅଧିକନ୍ତୁ ପଥର ପରି ତୁଚ୍ଛ ଉପାଦାନରେ ଯେବେ ଅପୂର୍ବ ସୁନ୍ଦର ମୂର୍ତ୍ତି ଗଢ଼ାଯାଇ ପାରୁଛି, ତେବେ ସେମାନେ ନିଜର ନାନ୍ଦନିକ ସୃଜନଶୀଳତା ବଳରେ ଅଶୁଭ ଅସୁନ୍ଦର ବସ୍ତୁକୁ ଘେନି ସୁନ୍ଦର କବିତା ରଚନା କରି ନ ପାରିବେ କାହିଁକି ?

କାଳ ଦିଗରୁ ମୁଖ୍ୟତଃ ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ ଓ ଭାବ ଦିଗରୁ ରୋମାଣ୍ଟିକ ଭାବାଳୁତା ତଥା ଉଗ୍ର ମାର୍କିସ୍‌ଷ୍ଟ ସମାଜମନସ୍କତା ପ୍ରଭାବରୁ ମୁକ୍ତ ଓଡ଼ିଆ କବିତାହିଁ ଆଧୁନିକ କବିତା । ଏହି ଆଧୁନିକ କବିତା ମୁଖ୍ୟତଃ ଗୀତିକବିତା ବା ଲିରିକ୍ । ଏଥିରେ କିନ୍ତୁ ପ୍ରାଚୀନ ଗୀତିକବିତାର ଚରିତ୍ର ଖୋଜିଲେ ଯେ କେହି ନିରାଶ ହେବେ । ସ୍ୱଭାବ-କବିତ୍ୱ ବା ସ୍ୱତସ୍ଫୂର୍ତ୍ତତା ଆଉ ନାହିଁ କହିଲେ ଚଳେ । ଆଧୁନିକ ଗୀତିକବିତା ଆଉ ଉଦଗ୍ର ହୃଦୟାବେଗର ସାମଗ୍ରୀ ହୋଇ ରହିନାହିଁ, ହୋଇଛି ତୀକ୍ଷ୍ଣ ମନନର ଆର୍ଟ । ତା'ର କ୍ଷୁଦ୍ର ପରିସର ମଧ୍ୟରେ ନାଟକ ଓ ମହାକାବ୍ୟର ବୈଚିତ୍ର୍ୟ ଓ ବିଶାଳତା ଆଣିବାକୁ ଚାହିଁଛନ୍ତି ଆଧୁନିକ କବି । ପ୍ରେମ, ଭଗବଦ୍

* (ଅନୁବାଦ-Gregor Sebba, The Poem Itself- Edited by Stanley Burnshaw. )

ଭକ୍ତି ଓ ପ୍ରକୃତି ସମ୍ବନ୍ଧରେ ଉଚ୍ଛ୍ବାସାଦି କେତେକ ଚିରାଗତ ଓ ଚିରନ୍ତନ ହୃଦୟାବେଗ ମଧ୍ୟରେ ତାହା ଆବଦ୍ଧ ହୋଇ ରହି ନାହିଁ, ଜୀବନର ତୁଚ୍ଛାତିତୁଚ୍ଛ ଆନନ୍ଦ ବେଦନାକୁ ତାହା ମଧ୍ୟ ବକ୍ଷରେ ସ୍ଥାନ ଦେଇଛି । ନାଟକର ନାନ୍ଦନିକ ଦୂରତ୍ୱ, ମହାକାବ୍ୟର ବୈଚିତ୍ର୍ୟ ଓ ବିଶାଳତା ତଥା ଉପନ୍ୟାସର ପ୍ରାତ୍ୟହିକତା ସେଥିରେ ଏକାଧାରରେ ବର୍ତ୍ତମାନ । ପ୍ରତ୍ୟକ୍ଷ ସଂଗୀତ ସଂପର୍କ ତାହା ରାଧାନାଥଙ୍କ ଯୁଗରୁ ଛାଡ଼ିଛି । ଏବେ ଗଦ୍ୟରୀତି ପ୍ରଚଳନ କରି ଓ କାବ୍ୟର ବିଶିଷ୍ଟଭାଷାକୁ ବିସର୍ଜନ ଦେଇ ତାହା ଅନେକତ୍ର ନିଜର ଐତିହ୍ୟକୁ ନିଜେ ଭାଙ୍ଗିଛି । ଅଦ୍ଭୁତ ଚିତ୍ରକଳ୍ପ, ବିଚିତ୍ର ଅନୁଷଙ୍ଗ ଓ ଅନଭ୍ୟସ୍ତ ପ୍ରତୀକ ବ୍ୟବହାର କରି ତାହା ମଧ୍ୟ ନିଜର ପୂର୍ବତନ ପ୍ରାଞ୍ଜଳତା ଓ ଅନାୟସ ବୋଧ୍ୟତାକୁ ବିସର୍ଜନ ଦେଇଛି ।

ଏହି ଆଧୁନିକ କବିତା ପ୍ରଥମାବସ୍ଥାରେ ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ଇଂରାଜୀ ତଥା କଣ୍ଟିନେଣ୍ଟାଲ କବିତା ଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଥିଲା । ତେଣୁ ତା'ର କାବ୍ୟଚେତନା ନିଃସଙ୍ଗତା, ମୋହଭଙ୍ଗ, ନୈରାଶ୍ୟବିଷାଦ, ସଂଶୟସଙ୍କଟ, ବିଚ୍ଛିନ୍ନତାବୋଧ, ଆଧ୍ୟାତ୍ମିକ ପଙ୍ଗୁତା ଓ ନାନ୍ଦନିକ ଶୁଷ୍କତା ଦ୍ୱାରା ଚିହ୍ନିତ ହୋଇଛି । ଏହି କାବ୍ୟଚେତନା କିନ୍ତୁ ଆମୂଳାନ୍ତ ସେକେଣ୍ଡ-ହ୍ୟାଣ୍ଡ ନୁହେଁ । ବିଂଶ ଶତାବ୍ଦୀର ସୁଶିକ୍ଷିତ ଅନୁଭୂତିପ୍ରବଣ ଓଡ଼ିଆ କବି ବିଶ୍ୱବ୍ୟାପୀ କ୍ଷୟିଷ୍ଣୁ ସଭ୍ୟତାର ଯନ୍ତ୍ରଣା ସଂପର୍କରେ ସଚେତନ ହେବା ସ୍ୱାଭାବିକ । ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ଇଉରୋପର ମାନସିକ ଅବସ୍ଥା ସହିତ ସ୍ୱାଧୀନତା ପ୍ରାପ୍ତିପରର ଭାରତବର୍ଷର ମାନସିକ ଅବସ୍ଥାର ସାମ୍ୟ ଦେଖିଲେ ଆମ ଆଧୁନିକ କବିଙ୍କ ଜୀବନବୋଧକୁ କୃତ୍ରିମ ବୋଲି ସନ୍ଦେହ କରିହେବ ନାହିଁ । କ୍ଳାନ୍ତି-ନୈରାଶ୍ୟ, ସଂଶୟସଙ୍କଟ, ମୋହଭଙ୍ଗ ଓ ଆଧ୍ୟାତ୍ମିକ ପଙ୍ଗୁତା ଆମ ଜୀବନରେ ମଧ୍ୟ ମିଥ୍ୟା ନୁହେଁ । ଅଧିକନ୍ତୁ ପଶ୍ଚିମ ଇଉରୋପକୁ କେନ୍ଦ୍ରକରି ଆଜିର ଆଧୁନିକ ସଭ୍ୟତା ଗଢ଼ି ଉଠି ନାହିଁକି ? ପାଶ୍ଚାତ୍ୟ କବିତା ସହିତ ହୃଦ୍ୟତା ସ୍ଥାପନ କରିବା ଆଧୁନିକ ଓଡ଼ିଆ କବିତାର ଅପରାଧ ହୋଇ ନ ପାରେ । ବିଶ୍ୱର ନୂଆ ଚିନ୍ତା ଓ ମନ ସହିତ ଯୋଗାଯୋଗ ରକ୍ଷା କରିବା ବରଂ ତାହାର ପ୍ରତ୍ୟାଶିତ କର୍ତ୍ତବ୍ୟ । ଆଧୁନିକ ଓଡ଼ିଆ କବିତା କ୍ଷୟଶୀଳ ସଭ୍ୟତାର ସଙ୍କଟକୁ ଅସ୍ୱୀକାର କରି ନାହିଁ କି କୁତ୍ସିତ ଓ କଦର୍ଯ୍ୟକୁ ଅଗ୍ରାହ୍ୟ କରିନାହିଁ । ଫଳରେ ତା'ର ଯୁଗବୋଧ ଓ ଜୀବନାନୁଭୂତିରେ ସ୍ୱପ୍ନ ଓ ସୌନ୍ଦର୍ଯ୍ୟର ପରିସର ସଙ୍କୁଚିତ ହୋଇ ପଡ଼ିଛି ନିଶ୍ଚୟ । ଆଧୁନିକ ଜୀବନର ନିଃସଙ୍ଗତା, ବିଚ୍ଛିନ୍ନତାବୋଧ ଓ ଅନିବାର୍ଯ୍ୟ ବିଷାଦ ସହିତ ସ୍ୱପ୍ନ ଓ ସୌନ୍ଦର୍ଯ୍ୟର ସହାବସ୍ଥାନ ଅସମ୍ଭବ କଥା ନୁହେଁ କି ? କିନ୍ତୁ ଆମ ଓଡ଼ିଆ କାବ୍ୟଚେତନା ବୌଦ୍ଧିକ ସ୍ତରରେ ଆଧୁନିକ ଜୀବନର ନିଃସଙ୍ଗତା ଓ ବିଚ୍ଛିନ୍ନତାବୋଧକୁ ପ୍ରଶ୍ରୟ ଦେଇଥିଲେ ହେଁ ପ୍ରାଣର ଉପଲବ୍ଧି ସ୍ତରରେ କେବେ ଜୀବନସଂଶକ୍ତି (Involvement) ଓ ପ୍ରତିବଦ୍ଧତା (Commitment) କୁ ଅସ୍ୱୀକାର କରେ ନାହିଁ । ଆମର କୌଣସି କବି ମଧ୍ୟ ଜୀବନ ଓ ଜଗତଠାରୁ ନିଜକୁ ସଂପୂର୍ଣ୍ଣ ଅନନ୍ୱିତ ମନେକରପାରନ୍ତି ନାହିଁ । ଆଜିର ବିଜ୍ଞାନସମୃଦ୍ଧି,

ଗଣତନ୍ତ୍ର,ବିଶ୍ୱାସ ଓ ବିଶ୍ୱବ୍ୟାପୀ ସମବାୟ ସହଯୋଗମୂଳକ ଉଦ୍ୟମଗୁଡ଼ିକ ମଧ୍ୟରେ କେହି ଅନୁଭୂତିପ୍ରବଣ କବି କ'ଣ କେବେ ଜଗତ ଓ ଜୀବନଠାରୁ ନିଜକୁ ବିଚ୍ଛିନ୍ନ କରି ପାରନ୍ତି ? ତେଣୁ ଆଧୁନିକ କବିତାର ବିଶ୍ୱପ୍ରକୃତି ଓ ମଣିଷ ଜୀବନର ସୌନ୍ଦର୍ଯ୍ୟ ପ୍ରବେଶ ପଥ ହରାଇ ନାହିଁ । ସେଥିରେ କବିଙ୍କ ଅଚରିତାର୍ଥ ସୌନ୍ଦର୍ଯ୍ୟବୋଧର କ୍ଷୋଭ ଓ ବେଦନା ଯେ କେହି ଲକ୍ଷ୍ୟ କରି ପାରନ୍ତି ; ମାତ୍ର ସୌନ୍ଦର୍ଯ୍ୟଚେତନା ନାହିଁ ବୋଲି କହି ପାରିବେ ନାହିଁ ।

ଓଡ଼ିଆ କବିତା ଇତିହାସରେ ଆଧୁନିକ କବିତାର ଠିକ୍ ପୂର୍ବବର୍ତ୍ତୀ ଅଧ୍ୟାୟଟି ହେଉଛି ପ୍ରଗତିଚେତନାର ଅଧ୍ୟାୟ । ପ୍ରଗତିଚେତନା ମାର୍କିଷ୍ଟ ପ୍ରେରଣାସମ୍ଭୂତ ସାମାଜିକ ବାସ୍ତବବାଦର ଚେତନା । ତାହା ସମାଜ ଜୀବନକୁ ଘେନି କବିତା ଲେଖିଛି । ମୂଲିଆର ଆଖିନେଇ କେବଳ ପୀଡ଼ିତ ମଣିଷର ଛବି ଦେଖିଛି ଓ ବୁର୍ଜୁଆ ସୌନ୍ଦର୍ଯ୍ୟବୋଧର ସାମାଜିକ ତାତ୍ପର୍ଯ୍ୟ ଖୋଜିଛି । ସୌନ୍ଦର୍ଯ୍ୟ ଯେ ସ୍ୱୟଂ କଲ୍ୟାଣମୟ, ସେ ସମ୍ବାଦ ତାହା ରଖିବାକୁ ଚାହିଁ ନାହିଁ । ତେଣୁ କବିତାରେ ପ୍ରେମ, ଫୁଲ, ଜ୍ୟୋସ୍ନା, ମଳୟ, ଚକୋର ଓ ଚାତକଙ୍କ କଥା ଶୁଣାଯାଇ ନାହିଁ କି କୁଞ୍ଜକୁଟୀର ଓ ଝରଣାକୂଳର ସମ୍ବାଦ ମିଳିନାହିଁ ; ପରିବର୍ତ୍ତେ ଅଛି କଞ୍ଚା ଘା'ପରି ଆଁ କରିଥିବା କାଦୁଅ ମାଟିର ରାସ୍ତା, କ୍ଷୟରୋଗୀ ପରି କାଶୁଥିବା ବତାସ ଓ ଚିମିନି ଧୂଆଁରେ ହାଇମାରୁଥିବା କାରଖାନା କଥା । ଯେଉଁ କୋଣାର୍କ ମନ୍ଦିର ଗାତ୍ରରେ ଆମେ ରମ୍ୟକଳାର ରୂପ ଦେଖି ମୁଗ୍ଧ ହେଉ, ସେଠାରେ ପ୍ରଗତିଚେତନା 'କୋଟିକଙ୍କାଳ ଭଗ୍ନବୁକୁର ସ୍ତୂପ ' ହିଁ ଦେଖିଛି । ତାହା ପ୍ରୟୋଜନାତୀତ ସୌନ୍ଦର୍ଯ୍ୟର ମର୍ଯ୍ୟାଦା ବୁଝେନାହିଁ । ତେବେ ସେଦିନ ସେହି ପ୍ରଗତିଚେତନାର ପଦକ୍ଷେପ ପାଖେ ପାଖେ କବି ମାୟାଧର ମାନସିଂହ ଓ ରାଧାମୋହନ ଗଡ଼ନାୟକ କଳ୍ପନାପ୍ରବଣ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ଘେନି ଶାଶ୍ୱତ ସତ୍ୟପ୍ରତି ଅବିଚଳିତ ବିଶ୍ୱାସ, ବିଶୁଦ୍ଧ ସୌନ୍ଦର୍ଯ୍ୟଚେତନା ଓ ଅତୀନ୍ଦ୍ରିୟ ପ୍ରେମାନୁଭୂତିକୁ ବଡ଼ ଭଦ୍ରଭାବରେ ଲାଳନ କରିଛନ୍ତି । ଆଧୁନିକ କାବ୍ୟଚେତନା ପ୍ରଗତିଚେତନା ପରି କୁତ୍ସିତ କଦର୍ଯ୍ୟକୁ ଜୀବନର ପ୍ରଧାନ ସତ୍ୟ ବୋଲି ମାନି ନେଇ ନଥିଲେ ହେଁ କବି ମାନସିଂହ ଓ ଗଡ଼ନାୟକଙ୍କ ଭଦ୍ର, ଶାଳୀନତା ଓ ସମ୍ଭ୍ରାନ୍ତ ମର୍ଯ୍ୟାଦାବୋଧକୁ ଅତୁଟ ରକ୍ଷା କରି ପାରିନାହିଁ । ତାହା କିଛି କମ୍ ବାସ୍ତବବାଦୀ ନୁହଁ, ରୋମାଣ୍ଟିକ ନହେବା ପାଇଁ ତା'ର ସାଧନା ମଧ୍ୟ କିଛି କମ୍ କଠିନ ନୁହେଁ ।

ଏଠାରେ ସ୍ମରଣ ରଖିବାକୁ ହେବ ଯେ, ଆଧୁନିକ କାବ୍ୟଚେତନା ଯେଉଁଠି ପ୍ରଗତିଚେତନା ପରି ବାସ୍ତବବାଦ ନାମରେ ଶୁଚିବାୟୁ ଗ୍ରସ୍ତ, ସେଠାରେ ତାହା ଜଗତ ଓ ଜୀବନ ବିଷୟରେ ଶ୍ରଦ୍ଧା, ଆଗ୍ରହ, ଆନନ୍ଦ, ବିସ୍ମୟ କି କୌତୂହଳ ପର୍ଯ୍ୟନ୍ତ ପୋଷଣ କରି ପାରେନାହିଁ; ପରିବର୍ତ୍ତେ ପୋଷଣକରେ ବିରକ୍ତି, ବିତୃଷ୍ଣା ଓ ବିବମିଷା । ପ୍ରକୃତିର ଶ୍ୟାମଳ ପତ୍ର, ନୀଳ ଆକାଶ, ଫୁଟିଲା ଫୁଲ, ଅସ୍ତ ଦିଗନ୍ତର ସଂଧ୍ୟାଛାୟା, ଯୁବତୀର ସ୍ୱାସ୍ଥ୍ୟୋଜ୍ଜ୍ୱଳ ଉଦ୍ଧତ ଯୌବନ ଓ

ପ୍ରାଣର ପ୍ରେମାବେଗ କେବେ ଅବାସ୍ତବ ନୁହନ୍ତି; ମାତ୍ର ଏସବୁ ଅନେକତ୍ର ଆଧୁନିକ କାବ୍ୟଚେତନା ପାଇଁ ବଡ଼ ରୋମାଣ୍ଟିକ ବ୍ୟାପାର । ତେଣୁ ତାହା ବର୍ଣ୍ଣନା କରେ ନଗରୀର ଲୁଳିତ ସ୍ନାୟୁରେ ସାଇରେନର ବିଷାକ୍ତ ଚିତ୍କାର, ବିବର୍ଣ୍ଣ ଜହ୍ନ, କୋଇଲା ଚୂଲିର ଧୂଆଁ,ଚଇତ୍ରର ଜୀର୍ଣ୍ଣଦେହ, ଗୋଲ ଗୋଲ ଆଖିର କୋରଡ଼ ଇତ୍ୟାଦି । ଏପରି ବର୍ଣ୍ଣନା କବିଙ୍କ କଳ୍ପନାପ୍ରବଣ ଅନ୍ତର୍ଦୃଷ୍ଟିର ଅଭାବ ସୂଚାଏ ନାହିଁ , ସୂଚାଏ ତାଙ୍କର କାଉଣ୍ଟର-ରୋମାଣ୍ଟିକ ହେବାର ଉଦ୍ୟମକୁ । ରୋମାଣ୍ଟିକ କବି ପ୍ରେମ ଓ ମାଧୁର୍ଯ୍ୟର କବି । ତେଣୁ କାଉଣ୍ଟର-ରୋମାଣ୍ଟିକମାନେ ହେବେ ଘୃଣା ଓ ତିକ୍ତତାର କବି । ରୋମାଣ୍ଟିକ ହେବା ଅମର୍ଯ୍ୟାଦାର କଥା ନୁହେଁ । କବି ୱାଡ଼୍ସ୍ୱାର୍ଥ, କଲେରିଜ ପ୍ରବର୍ତ୍ତିତ ଐତିହାସିକ ରୋମାଣ୍ଟିକ ଆନ୍ଦୋଳନର କାବ୍ୟାଦର୍ଶ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ ହେଁ ବିଶ୍ୱର କୌଣସି ଆଧୁନିକ କବି ସନାତନ ରୋମାଣ୍ଟିକ କଳ୍ପନାକୁ କେବେ ପରିହାର କରି ନାହାନ୍ତି ।

ରୋମାଣ୍ଟିକ କଳ୍ପନା ସବୁକାଳେ ଭଲ କବିଙ୍କର ଅବିଚ୍ଛେଦ୍ୟ ଚିତ୍ତବୃତ୍ତି । ରୋମାଣ୍ଟିକ ନ ହୋଇ କବି ହୋଇ ହୁଏ ନାହିଁ । ଅଥଚ ରୋମାଣ୍ଟିକ ବୋଲି ପରିଚୟ ଦେବାକୁ ଭୟକରି ଆମ ଆଧୁନିକ କବିଏ ଅନେକତ୍ର ବାସ୍ତବାଦର ମୁଖା ପିନ୍ଧିଛନ୍ତି । ଫଳରେ ଆଧୁନିକ କବିତାରେ ଜଗତ ଓ ଜୀବନ ପ୍ରତି ଉଦ୍ଧତ ଅବିଶ୍ୱାସ ଓ କୁତ୍ସା ସମୁଦ୍ୟତ ହୋଇ ଉଠିଛି । ଅଯଥା କୁତ୍ସିତତାର ପରିସର ବଢ଼ିଛି, ମାତ୍ର ଯେଉଁଠି କବି ପ୍ରକୃତିସ୍ଥ, ସେଠାରେ ତାଙ୍କ ବାସ୍ତବବାଦ ଓ ରୋମାଣ୍ଟିକତା ହରିହରାତ୍ମା ହୋଇ ଉଠିଛନ୍ତି, କବିତାରେ ସୌନ୍ଦର୍ଯ୍ୟର ହିଲ୍ଲୋଳିତ ଉଲ୍ଲାସ ଦୁର୍ଲକ୍ଷ ରହିନାହିଁ । ପ୍ରକୃତରେ ରୋମାଣ୍ଟିକ କଳ୍ପନା ବିନା ସୌନ୍ଦର୍ଯ୍ୟ ଉପଲବ୍ଧି ଅସମ୍ଭବ । କାରଣ ସୌନ୍ଦର୍ଯ୍ୟ କେବେ ବାସ୍ତବ ନୁହେଁ । ଗୋଲାପର ବର୍ଣ୍ଣ, ଗନ୍ଧ, ଓଜନ ବାସ୍ତବ ନିଶ୍ଚୟ । ମାତ୍ର ତାର ସୌନ୍ଦର୍ଯ୍ୟ ନାମଧାରୀ ଅଲୌକିକ ଗୁଣଟି କେବେ ବାସ୍ତବ ନୁହେଁ । ବ୍ୟାବହାରିକ ତଥା ବୈଜ୍ଞାନିକ ଦୃଷ୍ଟିରେ ଗୋଲାପର ବାସ୍ତବତା କେହି ଅସ୍ୱୀକାର କରିବେ ନାହିଁ; ମାତ୍ର ରୂପଦ୍ରଷ୍ଟାଙ୍କ ଧ୍ୟାନଦୃଷ୍ଟିରେ ତାର ବାସ୍ତବ ସତ୍ତା କାହିଁ ? ପ୍ରକୃତରେ ଫୁଲଟି ରୂପଦ୍ରଷ୍ଟାଙ୍କ ଧ୍ୟାନ-ଦୃଷ୍ଟିରେ ବାସ୍ତବ ସତ୍ତାର ବୃନ୍ତରୁ ଚ୍ୟୁତ ହୋଇ ଖସି ପଡ଼ିଥାଏ ସୌନ୍ଦର୍ଯ୍ୟବୋଧାତ୍ମକ ଆନନ୍ଦ କୋଳକୁ । ସେଠାରେ ତାହା ବାସ୍ତବ ବନ୍ଧନମୁକ୍ତ ଓ ସ୍ୱୟଂସଂପୂର୍ଣ୍ଣ । ତେଣୁ ସୌନ୍ଦର୍ଯ୍ୟ ବାସ୍ତବ ନ ହୋଇ ମଧ୍ୟ ଅବାସ୍ତବ ନୁହେଁ । ରୋମାଣ୍ଟିକ ନ ହୋଇ କେହି ସୌନ୍ଦର୍ଯ୍ୟସାଧକ ହୋଇ ପାରନ୍ତି ନାହିଁ । ରୋମାଣ୍ଟିକ କଳ୍ପନା ବିଶ୍ୱସାହିତ୍ୟର ଚିରନ୍ତନ ଧାରା । ତାହା ଆମ ବ୍ୟାସ ବାଲ୍ମୀକିଙ୍କ କାବ୍ୟକୁ ଯେପରି ଅଭିଷିକ୍ତ କରିଥିଲା, ଠିକ୍ ସେହିପରି ତାହା ନିଷିକ୍ତ କରିଛି ଆଧୁନିକ କବିଙ୍କ କବିତାକୁ । ସେହି ରୋମାଣ୍ଟିସିଜମ୍‌ର ଦାବୀରୁ ଆଧୁନିକ କବିତା ଜୀବନ୍ତ ସୌନ୍ଦର୍ଯ୍ୟ ପ୍ରତି ଉଦାସୀନ ରହି ପାରିନାହିଁ ।

ଆଧୁନିକ କବିତା ପ୍ରଥମେ କବି ଟି.ଏସ. ଏଲିୟଟଙ୍କ ପୋଡ଼ାଭୂଇଁରୁ ଜଗତ ଓ ଜୀବନ ପ୍ରତି ସଚେତନ ହୋଇ ଉଠିଛି । ଯୁଗର କ୍ଳାନ୍ତି, ନୈରାଶ୍ୟ ଓ ଆଧ୍ୟାତ୍ମିକ ଜୀବନର ବିପର୍ଯ୍ୟୟ ଘେନି ସମଗ୍ର ପୃଥିବୀ ତାହା ପାଇଁ ବିବର୍ଣ୍ଣ ଧୂସର ଏକ ରୁଦ୍ଧଶ୍ୱାସ ମରୁ-ପ୍ରଦେଶରେ ପରିଣତ ହୋଇଛି । କବି ଗୁରୁପ୍ରସାଦଙ୍କ 'କାଳପୁରୁଷ' ଓ କବି ସୀତାକାନ୍ତଙ୍କ 'ମୃତ୍ୟୁନାଚ' କବିତାରେ ସେହି ମରୁ ପ୍ରଦେଶକୁ ଯେ କେହି ଲକ୍ଷ୍ୟ କରି ପାରନ୍ତି । 'କାଳପୁରୁଷ'ର ଅଭିଜ୍ଞତା ସ୍ମର୍ତ୍ତବ୍ୟ :

" ନିଃଶବ୍ଦ ଏ ବାଲିଚର ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥହୀନ ବିବର୍ଣ୍ଣ ପୃଥିବୀ
ଉପରେ ନିସ୍ତେଜ ଖରା ପଥହୀନ ବିବର୍ଣ୍ଣ ଆକାଶ
ବିବର୍ଣ୍ଣ ବାଲି ଓ ଘାସ ଶେଷହୀନ ଶୋଷ ଆଉ ଶୋଷ
ନିସ୍ତବ୍ଧ ଧୂସର ସ୍ତବ୍ଧ ବାଲି ପୁଣି ବାଲି ଓ ଆକାଶ " ।

ଶୂନ୍ୟତା, ନୈରାଶ୍ୟ ଓ ଅବସନ୍ନତାର ନିଶ୍ଚଳ ସର୍ବବ୍ୟାପକତାକୁ କଠିନ ଓ ଘନୀଭୂତ ରୂପ ଦେଇଛି ଜୀବନ ଓ ଜଗତର ଏହି ନିଚ୍ଛିଦ୍ର ମରୁ ପ୍ରଦେଶ । ଏଥିରେ ଅବଶ୍ୟମ୍ଭାବୀ ଭାବରେ ଅପମୃତ୍ୟୁ ଘଟିଛି ବିଶୁଦ୍ଧ ସୌନ୍ଦର୍ଯ୍ୟଚେତନାର ଓ ଅନାବିଳ ପ୍ରେମସ୍ପୃହାର । କବିଏ ଆଉ କେଉଁଠି ପ୍ରେମ,ସୌନ୍ଦର୍ଯ୍ୟ କି ପୂର୍ଣ୍ଣତାକୁ ଭେଟୁ ନାହାନ୍ତି । ଯନ୍ତ୍ରଯୁଗର କୁଶ୍ରୀତା ଓ ଅସଙ୍ଗତି ଯୋଗୁ ତାଙ୍କ ଚିତ୍ତ ଅସୁସ୍ଥ, ଅସୁଖୀ ଓ ଅବ୍ୟବସ୍ଥିତ ହୋଇ ପଡ଼ିଛି । ଆଧୁନିକ ଓଡ଼ିଆ କବିତାରେ ଏଣେ ଏଲିୟଟୀୟ ପୋଡ଼ାଭୂଇଁର ସୌନ୍ଦର୍ଯ୍ୟଗ୍ରାସୀ ଭୟାବହତା ସହିତ ଅସ୍ତିତ୍ୱବାଦ ଦର୍ଶନର ଦୁଃସହ ବିଚ୍ଛିନ୍ନତାବୋଧ, ଅର୍ଥହୀନତା ଓ ଜୀବନ ବିତୃଷ୍ଣା ହାତ ମିଳାଇଛି । ଅହରହ ବଜ୍ର ନିର୍ଘୋଷରେ କବିଙ୍କ କାନରେ ବାଜୁଛି, ' You cannot go home again" । ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନ ପାଖକୁ ଅଛି ପୁଣି ବିଜ୍ଞାନ ଓ ମନୋବିଜ୍ଞାନର ଯୁଗାନ୍ତକାରୀ ଆବିଷ୍କାର ସବୁ । ତେଣୁ ସୂକ୍ଷ୍ମ ଅନୁଭୂତିପ୍ରବଣ ଓ ସୌନ୍ଦର୍ଯ୍ୟଚୈତନ୍ୟମୟ କବିଚିତ୍ତ ବିଶ୍ୱ ସହିତ ପୂର୍ବର ପବିତ୍ର ସମ୍ପର୍କ ଅତୁଟ ରଖି ପାରିନାହିଁ । କବିଏ ନିଃସଙ୍ଗ ଅସ୍ତିତ୍ୱର ନିର୍ମମ ଯନ୍ତ୍ରଣା ଭୋଗୁଛନ୍ତି ପୁଣି ଜୀବନରେ ଶୂନ୍ୟତା, ବିରକ୍ତି, ବିତୃଷ୍ଣା ଓ ଅର୍ଥହୀନତାକୁ ଭେଟିଛନ୍ତି । ତେବେ ସୁଖର କଥା ଯେ ସେମାନେ ବର୍ତ୍ତମାନ ଜୀବନର ଦୁଃସ୍ଥିତିକୁ ସ୍ୱୀକାର କଲେ ହେଁ, ତାହା ନିକଟରେ ଆନୁଗତ୍ୟ ପ୍ରକାଶ କରନ୍ତିନାହିଁ । ଉତ୍ତରଣର ଅବିରତ ଅପରାଜେୟ ଚେଷ୍ଟା ମଧ୍ୟରେ ବରଂ ଶ୍ରେୟବୋଧକୁ ଯଥାସମ୍ଭବ ସମୁଦ୍ୟତ ରଖନ୍ତି । ତେଣୁ ଆମ ଆଧୁନିକ କବିତାରେ କ୍ଳାନ୍ତି ଓ ମୃତ୍ୟୁ ଚେତନା ଯେପରି ସତ୍ୟ, ଠିକ୍ ସେହିପରି ତହିଁରୁ ଉତ୍ତରଣର ଆସ୍ପୃହା ମଧ୍ୟ ସତ୍ୟ । ଆମ କବିଗଣ ଏହି ଶ୍ୱାସରୁଦ୍ଧକର ଯୁଗର ଦୁରତିକ୍ରମ୍ୟ କ୍ଳାନ୍ତି, ବିତୃଷ୍ଣା ଓ ବିଚ୍ଛିନ୍ନତାବୋଧ ହାତରୁ ରକ୍ଷା ପାଇବାକୁ ସମାଜ, ସଂସାର ଓ ପ୍ରକୃତି କୋଳକୁ ଫେରିବାକୁ ଚାହିଁଛନ୍ତି । ପ୍ରେମ, ସୌନ୍ଦର୍ଯ୍ୟ ଓ ଆତ୍ମୀୟତା

ମଧ୍ୟରେ ନିଃସଙ୍ଗ ଅସ୍ତିତ୍ୱର ଅବସାଦ ଭୁଲିବାକୁ ଉଦ୍ୟମ କରିଛନ୍ତି । ସେମାନେ ଅସ୍ତିତ୍ୱବାଦ ଦର୍ଶନକୁ ସ୍ୱୀକାର କରନ୍ତି, ମାତ୍ର ତା'ର କଠିନ ନୈରାଶ୍ୟକୁ ମାନନ୍ତି ନାହିଁ । ତେଣୁ ପୋଡ଼ା ଭୂଇଁରେ ମଧ୍ୟ ଆଧୁନିକ ଓଡ଼ିଆ କବିତା ପ୍ରେମ, ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣତା ଅନୁସନ୍ଧାନ ଅବ୍ୟାହତ ରଖି ପାରୁଛି ।

କବିତାରେ ନାରୀ, ପ୍ରକୃତି ଓ ମାନବହୃଦୟ ହେଉଛନ୍ତି ସୌନ୍ଦର୍ଯ୍ୟଚେତନାର ପ୍ରଧାନ ଉପାଦାନ । ଆଧୁନିକ କବିତାର ଧେୟ କିନ୍ତୁ ନାରୀ ନୁହେଁ କି ପ୍ରକୃତି ନୁହେଁ , ଧେୟ ତା'ର ଆଧୁନିକ ମଣିଷ ଜୀବନର ଶୂନ୍ୟତା, ବିତୃଷ୍ଣା, ଅନ୍ତର୍ଦ୍ୱନ୍ଦ୍ୱ, ମୋହଭଙ୍ଗ ଓ ଆତ୍ମଜିଜ୍ଞାସା । ସ୍ୱାଭାବିକ ଭାବରେ ତେଣୁ ସେଥିରେ ନାରୀ ଓ ପ୍ରକୃତିର ପରିସୀମା ସଙ୍କୁଚିତ ହୋଇ ପଡ଼ିଛି । ମାନବହୃଦୟର ସୌନ୍ଦର୍ଯ୍ୟରୁ କବି ଅନିବାର୍ଯ୍ୟ ବିଷାଦବେଦନା ( emotional sadness) ଭିନ୍ନ ଆଉ ବିଶେଷ କିଛି ଦେଖି ନାହିଁ । ପ୍ରେମ ଭକ୍ତି, ସ୍ନେହଶ୍ରଦ୍ଧା, ବାତ୍ସଲ୍ୟ, ବଂଧୁତା ଓ ଶୋକସମ୍ବେଦନାର ରୋମାଣ୍ଟିକ ମାଧୁର୍ଯ୍ୟ ପ୍ରକୃତରେ ବଡ଼ ପ୍ରବିରଳ ବିଷୟ । ଆଜି ମାନବହୃଦୟର ଆଦର୍ଶାୟନ ଦୁର୍ଲଭ ବିଷୟ ନୁହେଁ କି ? ଧନ- ମାନ-ସାଫଲ୍ୟ-ସାର୍ଥକତାଭରା ହୃଦୟ ଆଜି ପ୍ରେମ ଓ ବଂଧୁତାର ମର୍ଯ୍ୟାଦା ବୁଝେ କି ? ବେଦନାକୁ ଜୀବନର ବଡ଼ ସୌନ୍ଦର୍ଯ୍ୟ ବୋଲି ସ୍ୱୀକାର କରେ କି ? କବିଙ୍କୁ ତେଣୁ ମାନବବିଦ୍ୱେଷୀ ହେବାକୁ ପଡ଼ିଥାଏ । ବିଶ୍ୱର ପ୍ରଥମ ଆଧୁନିକ କବି ବୋଦଲେୟାର ତେଣୁ କହିଛନ୍ତି -"most of the humanity was created for the whip ' - ଅଧିକାଂଶ ମଣିଷ କେବଳ କଷାଘାତଯୋଗ୍ୟ । ମଣିଷର ହୃଦୟ କାହିଁ ଯେ ଆଧୁନିକ କବିଏ ହୃଦୟର ସୌନ୍ଦର୍ଯ୍ୟ ଘେନି କବିତା ଲେଖିବେ ? ଆମକୁ ତେଣୁ ନାରୀ ଓ ପ୍ରକୃତିର ସଙ୍କୁଚିତ ସୀମା ମଧ୍ୟରେ ଆଧୁନିକ କବିତାର ସୌନ୍ଦର୍ଯ୍ୟଚେତନା ଅନୁସଂଧାନ କରିବାକୁ ହେବ । ନାରୀ ଓ ପ୍ରକୃତି ପୁଣି ଅନେକତ୍ର ଆଧୁନିକ କବିତାରେ ଲକ୍ଷ୍ୟ ନୁହନ୍ତି, ଉପଲକ୍ଷ୍ୟ ମାତ୍ର । ସେଥିରେ ଜହ୍ନରାତି, ଚଂପାଫୁଲ, ନଦୀ, ସମୁଦ୍ର, ସାପ, ବେଙ୍ଗ, ପେଚା, ହଂସ, ସାରସ ଅଛନ୍ତି, କିନ୍ତୁ ସେଗୁଡ଼ିକ ସାଧ୍ୟ ନୁହନ୍ତି, ସାଧନମାତ୍ର ; ପ୍ରତୀକରୂପେ ବ୍ୟବହୃତ ।

ଦିନେ ନାରୀ ଥିଲା ଓଡ଼ିଆ କବିତାର ପ୍ରଧାନ ଉପାଦାନ । ନବଯୁବତୀର ସ୍ତନଜଘନ ସୁଷମା ବର୍ଣ୍ଣନାରେ ପ୍ରାଚୀନ ଓଡ଼ିଆ କବିତା ବେଶ୍ ରସାଳ । ଏପିରିକି କବି ମାନସିଂହଙ୍କ କବିତାରେ ରୂପସୀ ନାରୀର ଭୂମିକା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ନାରୀ ଓ ପ୍ରେମ ପୁଣି ନିତ୍ୟ ଯୁକ୍ତ । ଅଧିକାଂଶ ଓଡ଼ିଆ ଗୀତିକବିତା ପ୍ରେୟସୀ ଓ ମାନସୀଙ୍କ ଉଦ୍ଦେଶ୍ୟରେ ହିଁ ଉତ୍ସର୍ଗିତ ରହିଛି । ଆଧୁନିକ କବିତା କିନ୍ତୁ ନାରୀରୂପର ସ୍ତୁତିଗାନ କରେ ନାହିଁ କି ନାରୀପ୍ରେମ ଘେନି ଉଚ୍ଛ୍ୱସିତ ହୋଇ ଉଠେ ନାହିଁ । ଶସ୍ତା ଗଳ୍ପ ଉପନ୍ୟାସରୁ ଭିନ୍ନ ଆଜି ସାହିତ୍ୟରେ ଅନ୍ୟତ୍ର ପ୍ରେମ

ଓ ଯୌବନ ନାହିଁ କହିଲେ ଚଳେ । ଜୀବିକାର୍ଜ୍ଜନର ଚାଞ୍ଚଲ୍ୟ ଘେନି ନାରୀ ଆଜି ରାସ୍ତାରେ। ତା'ର ରହସ୍ୟ ନାହିଁ କି ବିସ୍ମୟ ନାହିଁ, ନାହିଁ ମଧ ଆନନ୍ଦ, ନାହିଁ ବି ଚରିତ୍ରସୁଷମା କି ପ୍ରେମମହିମା । ଶରୀରବିଦ୍ୟା ଓ ମନୋବିଜ୍ଞାନ ପ୍ରସାଦରୁ ଆଧୁନିକ କବି ଏ ନାରୀର ଦେହମନର ନଗ୍ନ ନିରାବରଣ ନିରାଭରଣ ରୂପ ଜାଣନ୍ତି । ତାଙ୍କର ଦୁର୍ଭାଗ୍ୟ ଯେ ସେ ସବୁ ଜାଣନ୍ତି । ପ୍ରେମ ଛଳନା ଓ କପଟତା ପର୍ଯ୍ୟନ୍ତ ସବୁ ସେ ଜାଣନ୍ତି । ଆଧୁନିକ କବିତାରେ ନାରୀ ତେଣୁ ପ୍ରେମର ପ୍ରତିମା ରାଧା ନୁହେଁ କି ପବିତ୍ର ମ୍ୟାଡ଼ୋନା ନୁହେଁ, ସେ ବଡ଼ ରୁଗ୍‌ଣା ଓ ଅସତୀ । ଆଧୁନିକ କବିତା ନାରୀକୁ କାହିଁ ବିଶେଷ ମର୍ଯ୍ୟାଦାର ଆସନ ଦେଇନାହିଁ । ଯୁଗେ ଯୁଗେ କବି ଏ ଅତୁଳନୀୟ ସୌନ୍ଦର୍ଯ୍ୟ ଓ ଚାରିତ୍ର୍ୟ-ମହିମାରେ ରୋମାଣ୍ଟିକ ପ୍ରେମାଦର୍ଶ ଘେନି ପ୍ରେୟସୀ ପ୍ରତିମା ରଚନା କରିଥାନ୍ତି ଓ ଶିଳ୍ପୀସୁଲଭ ତୃପ୍ତିବୋଧ କରିଥାନ୍ତି । ପ୍ରେମ ନିଜେ ନିଜର ପ୍ରାଣରସରେ ରଚନା କରିଥାଏ ନିଜ ପାତ୍ରକୁ । ଆଜିର ସାମାଜିକ ଅବକ୍ଷୟ, ବେକାର ସମସ୍ୟା, ଦାରିଦ୍ର୍ୟ ଓ ସହରର ସଂକୀର୍ଣ୍ଣ ପରିସର ପ୍ରେମର ତୀବ୍ରତା ଓ ଉଚ୍ଛ୍ୱାସକୁ ଅର୍ଥହୀନ କରି ଦେଇଛି । ଆଧୁନିକ କବିଙ୍କ ପାଇଁ ନବାନୁରାଗର ଉତ୍କଣ୍ଠା, ଉଦ୍‌ବେଗ ଓ ଉଦ୍‌ବେଳତା କାହିଁ ଯେ ସେ ପ୍ରେମର ପ୍ରତିମା ଗଢ଼ିବେ ! ଶରୀରସର୍ବସ୍ୱ ନାରୀ ଆଜି କାମ-କୂପଟିଏ ମାତ୍ର ।

ଆଧୁନିକ କବିତାର ପ୍ରାଣପ୍ରତିଷ୍ଠାତା ପିତୃପୁରୁଷ ବୋଦ୍‌ଲେୟାରଙ୍କଠାରୁ ଆଧୁନିକ କବି ଉତ୍ତରାଧିକାରୀ ସୂତ୍ରରେ ନାରୀପ୍ରତି ଏହି ମନୋଭାବ ଲାଭ କରିଛନ୍ତି । ନାରୀ କ୍ଷୁଧାର ଅନ୍ନ, ତୃଷ୍ଣାର ଜଳ ଓ ଯୌନକାମନାର ତୃପ୍ତି ଭିନ୍ନ ଅନ୍ୟକିଛି ତାହେଁ ନାହିଁ । ଯେଉଁ ନାରୀ ଥିଲା ଦିନେ କାବ୍ୟର ଚିରନ୍ତନ ବିସ୍ମୟ ଓ ରହସ୍ୟ ସେ ଆଜି ଘୃଣ୍ୟ । ବୋଦ୍‌ଲେଆର କହି ରଖିଛନ୍ତି, " Woman, that vile slave, proud and stupid, seriously adoring herself and loving herself without disgust " ( The Voyage) । ତା'ର ପ୍ରେମ ଦେହଜ ଓ କ୍ଷଣିକ । ପ୍ରେମକୁ ଏଠି 'ସେକ୍‌ସ' ଅର୍ଥରେ ବୁଝିବାକୁ ହେବ । ତେଣୁ ବାସ୍ତବବାଦୀ ଆଧୁନିକ କାବ୍ୟନାୟକ ପ୍ରେମକୁ କ୍ଷଣିକ ବୋଲି ଜାଣିଥିବାରୁ ନିର୍ମୋହ ଭାବରେ ନାରୀକୁ ଉପଭୋଗ କରିବା ଭିନ୍ନ ଅନ୍ୟ କିଛି ଭାବି ପାରେ ନାହିଁ । ଏହି ନାରୀପ୍ରେମ ଉତ୍ତେଜିତ କରେ ଅବଶ୍ୟ, କିନ୍ତୁ ତାହାକୁ ଉଦ୍‌ପ୍ରାଣିତ କରିପାରେ ନାହିଁ । କବି ଉପେନ୍ଦ୍ରଙ୍କ ନାରୀ ଥିଲା ପଦ୍ମିନୀ, ପଦ୍ମଗଂଧା । କବି ସଚ୍ଚିଦାନଂଦ ମଧ ନାରୀକୁ ପଦ୍ମିନୀ ବୋଲି ଜାଣନ୍ତି; ମାତ୍ର ତାଙ୍କ ପଦ୍ମିନୀ ସ୍ୱର୍ଯ୍ୟସତ୍ତ୍ୱା ନୁହେଁ କି ଢ଼ଳ ଢ଼ଳ ପ୍ରେମର ପ୍ରତିମା ନୁହେଁ; ସେ ପଙ୍କରୁ ଜାତ ବୋଲି ପଦ୍ମିନୀ ।

କବି ରବୀନ୍ଦ୍ରନାଥ ନାରୀ ସୌନ୍ଦର୍ଯ୍ୟର ଧାରଣାକୁ ତାଙ୍କର ମୂର୍ତ୍ତି କରିଥିଲେ ଉର୍ବଶୀରେ, ଯାହାର ନୃତ୍ୟ ଛନ୍ଦରେ ପୁରୁଷର ରକ୍ତ ଆତ୍ମହରା ହୋଇ ନାଚି ଉଠିଥାଏ । ଭିକ୍ଟର ହ୍ୟୁଗୋଙ୍କ ରୂପସୀ ନାରୀ ମଧ ଇନ୍ଦ୍ରିୟରେ ନିଆଁ ଲଗାଏ, ଆଧାତ୍ମ ଉପଲବ୍‌ଧିରେ ଉପନୀତ କରାଏ ।

ତାଙ୍କ କାବ୍ୟ-ନାୟକ ନାରୀସୌନ୍ଦର୍ଯ୍ୟକୁ ବାହୁ ବନ୍ଧନରେ ଭିଡ଼ି ଧରି ଭଗବାନଙ୍କୁ ହିଁ ଆଲିଙ୍ଗନ କରିଥାଏ, ମାତ୍ର ଆଧୁନିକ କବିତାରେ ନାରୀର ଚୁମ୍ବନ ଆଲିଙ୍ଗନଠାରୁ ଆରମ୍ଭ କରି ଯୌନ କ୍ରିୟା ପର୍ଯ୍ୟନ୍ତ ସବୁ ବିରକ୍ତିକର ଓ ଗତାନୁଗତିକ । ଆଜିର ପ୍ରେମ ଏକ ଅଭ୍ୟାସ ମାତ୍ର । ତା' ପଛରେ ହୃଦୟାବେଗର ତୀବ୍ରତା ନାହିଁ । କବି ରମାକାନ୍ତ ରଥଙ୍କ 'ସୂର୍ଯ୍ୟାସ୍ତରେ ଖରା ଶେଷ ନୁହେଁ ' କବିତାର କାବ୍ୟନାୟକ ପ୍ରେମର ସେହି ମାଧୁର୍ଯ୍ୟହୀନ ଅବସାଦକର ଚିତ୍ର ଦେଖିଛି, ତାଙ୍କ 'କନକ ପ୍ରତିମା ଗୋରୀ ଈଷତ୍ ଚଞ୍ଚଳ !' '' ଆଲିଙ୍ଗନ ଲକ୍ଷ ଲକ୍ଷ ବିରକ୍ତିମାନଙ୍କ /ଠଣ ଠଣ ଶବ୍ଦ ସାତପୁରୁଷି ଥାଳିଙ୍କ । '' ସେକ୍ସରେ ତା'ର ଆନନ୍ଦ ନାହିଁ କି ଆମୋଦ ନାହିଁ , ନାହିଁ ମଧ୍ୟ ସୁନ୍ଦର ଓ କଲ୍ୟାଣର ସ୍ପର୍ଶ । ନାରୀ ଆଉ 'ଯୁବା ବୈକୁଣ୍ଠପୁର' ହୋଇ ରହିନାହିଁ । ତେବେ ସେ କୁରୂପା ନୁହେଁ, ଯଦିଓ ରୁଗ୍‌ଣା, ତନୁ ତା'ର ରୋଗଜୀର୍ଣ୍ଣ, ମୁଖ ବ୍ରଣଦୁଷ୍ଟ, ଆଖି ଗାଡ଼ ଗାଡ଼, ଯୌବନ ଦୋଦୋପାଞ୍ଚ । ଛାତି ଗୋଲ ଅବଶ୍ୟ, କିନ୍ତୁ କେବେ ଯାମଳ ଭୂଧର ନୁହେଁ । କବି ଗୁରୁପ୍ରସାଦଙ୍କ କାବ୍ୟନାୟକ ତା' ଦେହରେ ସିନେମାର ହାଣ୍ଡ୍‌ବିଲ୍ ଦେଖନ୍ତି । କବି ସଚ୍ଚିଦାନନ୍ଦଙ୍କ କାବ୍ୟନାୟକ ତା'ର ଚରିତ୍ରକୁ ନଦୀ ଚିତ୍ରକଳ୍ପଟିରେ ଅଭିବ୍ୟଞ୍ଜିତ କରିଛନ୍ତି : '' ସେ ଏକ ବିବସ୍ତ୍ରା ନଦୀ, ଖୋଜିବୁଲେ କ୍ଷଣେ କ୍ଷଣେ ନୂତନ ପରିଧି । '' (ନଦୀ) ପ୍ରେମ ଅପେକ୍ଷା ତା'ର ଅସ୍ତିତ୍ୱ ତା'ପାଖରେ ଅଧିକ ମୂଲ୍ୟବାନ । ତେଣୁ ଶାଢ଼ୀ ପାଲଟିଲା ପରି ସେ ନିର୍ଦ୍ୱନ୍ଦ୍ୱରେ ପ୍ରେମିକ ବଦଳାଏ । 'କାଳ ପୁରୁଷ'ର କବି ଗୁରୁପ୍ରସାଦ ତା' ପ୍ରେମର ଶ୍ରୀହୀନ, କରୁଣ ଅଥଚ ହାସ୍ୟକର ଦିଗଟିକୁ ସ୍ପଷ୍ଟ କରି ଦେଇଛନ୍ତି । ନାରୀତ୍ୱ କିମ୍ବା ମାତୃତ୍ୱ ପାଇଁ ସେ ସତୀତ୍ୱ ବିସର୍ଜନ ଦିଏ ନାହିଁ, ସତୀତ୍ୱ ବିସର୍ଜନ ଦିଏ କେବଳ ବଞ୍ଚିବା ପାଇଁ । ବହୁ ବର୍ଷ ପରେ ଯେବେ ସେ ପୁରୁଣା ପ୍ରେମିକକୁ ଦେଖେ '' ସଫଳ ମାତୃତ୍ୱ ଓ ଗୃହିଣୀର ରଙ୍ଗେ ସୁସଜ୍ଜିତା ସମ୍ଭ୍ରାନ୍ତ ମହିଳା ବାଆଁରେଇ ହୋଇ ନ ଦେଖିଲା ପରି ନ ଚିହ୍ନିଲା ପରି ମୁହଁକୁ ବୁଲାଇ ନିଏ ।'' (ଦ୍ରୌପଦୀର ଶାଢ଼ୀ -କବି ସଚ୍ଚିଦାନନ୍ଦ ) ତେଣୁ କବି ଚିନ୍ତାମଣିଙ୍କ କାବ୍ୟନାୟକ ଘୋଷଣା କରେ '' ପ୍ରିୟାଠାରୁ ପଶୁ ଏକ ବଡ଼ ।'' ( ପଶୁ ଓ ପ୍ରିୟା ) ପଶୁ ଚିହ୍ନେ, ପ୍ରିୟା ଚିହ୍ନେ ନାହିଁ । ତେବେ ଗୃହିଣୀ ହେବାର ସୁଯୋଗ ଆଜିର ନାରୀକୁ ସବୁବେଳେ ମିଳେ ନାହିଁ, ସେ ହୁଏ ନର୍ସ, ନହେଲେ ମାଷ୍ଟ୍ରାଣୀ କି କ୍ଲର୍କ ।

ଆଧୁନିକ କବିତାର କାବ୍ୟନାୟକ ବିଚ୍ଛିନ୍ନତାବୋଧପୀଡ଼ିତ, ନିଃସଙ୍ଗ । ପ୍ରେମ ତା'ର ଅଚରିତାର୍ଥ ହେବାକୁ ବାଧ୍ୟ । କବି ରମାକାନ୍ତଙ୍କ 'ଅନନ୍ତ ଶୟନ' ଓ 'ରାଜାଙ୍କ ରୋମାନ୍‌ସ'ରେ ସେହି ଅଚରିତାର୍ଥ ପ୍ରେମର ମାଧୁର୍ଯ୍ୟହୀନ ଚିତ୍ର ଦୁର୍ଲକ୍ଷ୍ୟ ନୁହେଁ , ତଥାପି ଆଧୁନିକ କବିତାରେ ପ୍ରେମ ନାହିଁ କହିଲେ ଭୁଲ ହେବ । ଆଧୁନିକ କବି ଯେଉଁଠି ବାସ୍ତବବାଦ ନାମରେ ଶୁଚିବାୟୁଗ୍ରସ୍ତ ନୁହନ୍ତି, ସେଠାରେ ରୋମାଣ୍ଟିକ ପ୍ରେମ ଓ ଜୀବନ୍ତ ସୌନ୍ଦର୍ଯ୍ୟ ଝରିଝରି ପଡ଼ିଛି । ନାରୀପ୍ରତି ସମୁଦ୍ୟତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ଅପସରି ଯାଇଛି, ପରିବର୍ତ୍ତେ ଦେଖା ଦେଇଛି ପୂର୍ବର ବିମୁଗ୍ଧ

କୌତୂହଳ । ନାରୀ ପୁଣି ଭାବଲୋକବାସିନୀ ମାନସୀ ସୁନ୍ଦରୀ ଭାବରେ ପୂର୍ବ ପ୍ରତିଷ୍ଠା ଫେରି ପାଇଛି । କବି ଏ ସୁନାର ଚିତ୍ରକଳ୍ପରେ ପୁଣି ତା'ର ପ୍ରସାଧନ ବସ୍ତ୍ର ବୟନ କରିଛନ୍ତି । ଦୁଇଟି କଳା ଆଖି ତଳେ ତା'ର 'ନୀଳ ସୁରା, ନୀଳ ଢେଉ ତାରକାର ଚାଲି ' ଆଉ ଦୁର୍ଲକ୍ଷ୍ୟ ରହି ନାହିଁ । (ଦୁଇଟି କଳା ଆଖି - ଚିନ୍ତାମଣି ବେହେରା ) ଯଥାର୍ଥ ନାରୀପ୍ରେମ ଓ ସୌନ୍ଦର୍ଯ୍ୟ ଆଧୁନିକ କବିତାରେ ବଡ଼ ବିରଳ ବିଷୟ ହେଲେ ହେଁ ତା'ର ଅସ୍ତିତ୍ୱକୁ ଅସ୍ୱୀକାର କରି ହେବ ନାହିଁ । କବି ସଚ୍ଚିଦାନନ୍ଦଙ୍କ କାବ୍ୟନାୟକ ବଡ଼ ଶ୍ରଦ୍ଧାରେ ନାରୀର ସର୍ବତ୍ର ଆଖି ଓ ରେଶମୀ ଶ୍ୱାସ ଲକ୍ଷ୍ୟ କରିଛି । କବି ବେଣୁଧରଙ୍କ କାବ୍ୟନାୟକ ' ଗୋଟିଏ ଘରୋଇ ମୁହଁ ସନ୍ଧାନରେ ' ଘରୁ ବାହାରି ପଡ଼ିଛି । କବିଏ ବୁଝିଛନ୍ତି, ବାସ୍ତବତା ଛଡ଼ା ସାହିତ୍ୟ ସୃଷ୍ଟି ହୁଏ ନାହିଁ ସତ୍ୟ, ମାତ୍ର ସେହି ବାସ୍ତବକୁ ଅତି ବାସ୍ତବରେ ନ ପହଞ୍ଚାଇ ପାରିଲେ ଗତ୍ୟନ୍ତର କାହିଁ ? ଅର୍ଦ୍ଧେକ ବାସ୍ତବକୁ ଅର୍ଦ୍ଧେକ କଳ୍ପନା ଆସି ପୂର୍ଣ୍ଣତା ଦିଏ । ପରିପୂର୍ଣ୍ଣ ନାରୀ ସୌନ୍ଦର୍ଯ୍ୟର ଇନ୍ଦ୍ରିୟ-ଦାହ୍ୟ ରୂପ ଆଙ୍କିବାକୁ ଆଧୁନିକ କବିତା ଆଉ ଅକ୍ଷମ ହୋଇ ନାହିଁ । କବି ସଚ୍ଚିଦାନନ୍ଦଙ୍କ 'ବନ୍ଧନୀ', କବି ଦୀପକ ମିଶ୍ରଙ୍କ ' ଡ଼ାକ ବଙ୍ଗଳା' ଓ କବି ରାଜେନ୍ଦ୍ର କିଶୋରଙ୍କ 'କ୍ୟାଂପସରେ କବି ଓ ଲାଜକୁଳୀ ଫୁଲ' ଆମ ସପକ୍ଷରେ ସାକ୍ଷ୍ୟ ଦେବେ । ଆମେ ଦୁଇଟି ମାତ୍ର ଉଦାହରଣ ସଂଗ୍ରହ କରୁଛୁ ।

(କ) ''ତାଙ୍କ ରେଶମୀ ଚମରେ ଏକ କଅଁଳ ପତ୍ରର ବଗିଚା / ନୂଆ ପୁଆର କଞ୍ଚାଳିଆ ତ୍ୱକ / ଯାହା ଉପରେ ସେହି ଏକୁଟିଆ ଜୁଳୁଜୁଳିଆ ପୋକଟି / କାଲି ରାତିରେ ଜଳି ଉଠିଥିଲା / ଆଉ ତାଙ୍କ କଦଳିପତ୍ର ଶାଢ଼ୀରେ / କି ତନ୍ମୟତା ?/ କାଞ୍ଚୁଲିର ବୋତାମ ସବୁ କେମିତି ନଖପରି ଶୁଭ୍ର, ସତେଜ ଓ ଚକ୍‌ଚକ୍ ''...... ( ବଂଧନୀ, ସଚ୍ଚିଦାନନ୍ଦ)

(ଖ) '' ବାଇଶି ବର୍ଷର ଯୌବନ ତୁମର ଟଳମଟଳ/ ସବୁଠି ଅଦୃଶ୍ୟ ବର୍ଷାର ବାସ୍ନା / ପାଣି ନ ଥାଇ ପାଣି ହାନ୍ଦୋଳିବାର ଅନୁଭବ ......./ ଅଭୁକ୍ତ ଦରପାଚିଲା ଫଳର ସ୍ୱାଦ..../ ଅସଂଖ୍ୟ କଦମ୍ବ ମଲ୍ଲୀ ବଉଳ  ଚମ୍ପାର ମହକରେ / ସବୁ ଋତୁର ଭଲ ଗୁଣ ସବୁ ମୁହୁ ମୁହୁ ଚହଟି ଯାଏ / ଚାରିଆଡ଼େ ........ ।'' (କ୍ୟାଂପସରେ କବି ଓ ଲାଜକୁଳୀ ଫୁଲ )

ପ୍ରାଚୀନ କବିତାରେ ପ୍ରେମ ଓ ପ୍ରାକୃତିକ ପରିବେଶ ବଡ଼ ଅନ୍ତରଙ୍ଗ ଥିଲେ । ଆଜି ସମ୍ପର୍କ ଛିନ୍ନ ହୋଇ ନ ଥିଲେହେଁ  ସମ୍ପର୍କ-ସୂତ୍ର ବଦଳିଛି । ଆଧୁନିକ କବିତାର ପ୍ରେମ ସରସ ବସନ୍ତ ଋତୁ ଓ ମଧୁର ଜ୍ୟୋତ୍ସ୍ନା ରାତ୍ରିକୁ ବଡ଼ ଅବାନ୍ତର ମନେକରେ । ତା'ର ପ୍ରିୟ ଋତୁ ଗ୍ରୀଷ୍ମ ଓ ଯଥୋଚିତ କାଳ ମଧ୍ୟାହ୍ନ । ନାୟକ ନାୟିକାକୁ ' ମଧୁର ଜ୍ୟୋତ୍ସ୍ନା ରାତ୍ରି ' ସମ୍ପର୍କରେ ସଚେତନ କରାଏ ନାହିଁ, ବଡ଼ ଶ୍ରଦ୍ଧାରେ ଡ଼ାକି କହେ ''ଦେଖ ଦେଖ ଏ ମଧ୍ୟାହ୍ନ କେଡ଼େ ମନୋହର ।'' (ରାଣୀ -ରମାକାନ୍ତ ରଥ ) ସେମାନଙ୍କ ମିଳନରେ ପୁଷ୍ପରଜ ବିକୀର୍ଣ୍ଣ ହୁଏ ନାହିଁ, ''ଦ୍ୱିପ୍ରହର ଧୂଳି ଉଡ଼େ ଖାକି ଆଉ ଫିଲ୍‌ଡ଼ ଗ୍ରେ ଧୂଳି ।'' (ଅଳକା ସାନ୍ୟାଲ -ଗୁରୁପ୍ରସାଦ ମହାନ୍ତି ) ଏହି

ସୂତ୍ରରେ ବୁଝିବାକୁ ହୁଏ ଯେ ଆଧୁନିକ କବିତା ପ୍ରକୃତିର ଚିରାନନ୍ଦଲୋକ ରୁ ନିର୍ବାସିତ ହୋଇପଡ଼ିଛି । ତା'ର ନାରୀ ଯେପରି ସର୍ବତ୍ର କଳ୍ପନାମୟୀ ନୁହେଁ, ସେପରି ପ୍ରକୃତି ମଧ୍ୟ ସବୁବେଳେ ଚୈତନ୍ୟମୟୀ ନୁହେଁ । ପ୍ରକୃତିର ସମ୍ବେଦନଶୀଳ ଆତ୍ମୀୟତାପୂର୍ଣ୍ଣ ଜୀବନ୍ତ ଚିତ୍ର ଆଧୁନିକ କବିତାରେ ନାହିଁ କହିଲେ ଚଳେ । ଏଲିୟଟଙ୍କ 'ପ୍ରୁଫକଙ୍କ ପ୍ରେମଗୀତି 'ରେ ସେହି ଯେ ରୋଗୀଟିଏ ପରି ବିବର୍ଣ୍ଣ ପାଣ୍ଡୁର ନିଷ୍ପଳ ସନ୍ଧ୍ୟା ନଇଁ ଆସିଥିଲା, ତାହାରି ମାଳିନ୍ୟ ଓଡ଼ିଆ କବିତାରୁ ସହଜରେ ଘୁଞ୍ଚି ନାହିଁ । ଋତୁଏ ତା'ର ଜୀର୍ଣ୍ଣ ଓ ବିବର୍ଣ୍ଣ, ଜହ୍ନ ମଳିନ, ଗୋଧୂଳି ନିହତ । ସବୁକିଛି ରିକ୍ତ ଓ ନିଷ୍ପ୍ରାଣ । ସହରରେ ପ୍ରକୃତି-ସୌନ୍ଦର୍ଯ୍ୟ ପ୍ରତି ସହଜ ଆନନ୍ଦ ଉଲ୍ଲାସର ଭାବନା ବା କାହୁଁ ମିଳିବ ?

ଆଧୁନିକ କବିତାର ଜୀବନ ନଗରକୈନ୍ଦ୍ରିକ, ଶିଳ୍ପନିର୍ଭର ଓ ପ୍ରକୃତିବିଚ୍ଛିନ୍ନ । ନଗରର କର୍ମ ବ୍ୟସ୍ତ, ସମୟନିଷ୍ଠ, ଓ ଅତ୍ୟନ୍ତ ହିସାବୀ ମଣିଷ ଭଲ ଖାଦ୍ୟପେୟ ପୋଷାକ ଆୟୋଜନରେ ବ୍ୟସ୍ତ ରହି ପ୍ରକୃତିଠାରୁ ବିଚ୍ଛିନ୍ନ ହୋଇପଡ଼ିଛି । ତେବେ ବ୍ୟବଧାନ ଯେତେ ବଢ଼ିଛି, ପ୍ରକୃତିକୁ ପାଖରେ ପାଇବାକୁ ବ୍ୟାକୁଳତା ସେତିକି ବଢୁଛି । ଘରେ ଘରେ ଫୁଲକୁଣ୍ଡ ଓ କାଗଜ କି ପ୍ଲାଷ୍ଟିକ ଫୁଲ-ପତ୍ର-ସଜ୍ଜା ଦେଖିଲେ ଏହି ବ୍ୟାକୁଳତାର ତୀବ୍ରତା ବୁଝି ହୁଏ । ନଗର ସଭ୍ୟତାର ଗତିରୋଧ କରି ହେଉ ନାହିଁ କି ମଣିଷ ଓ ପ୍ରକୃତି ମଧ୍ୟରେ ମିଳନ ତୀର୍ଥଟିଏ ଆଉ ଗଢ଼ିହେଉ ନାହିଁ । ତେଣୁ ସଭ୍ୟ ମଣିଷର ପ୍ରକୃତି-ପ୍ରେମ ଅଚରିତାର୍ଥ ରହୁଛି । ଆଧୁନିକ କବିତାର ଅନ୍ୟତମ ମୁଖ୍ୟ ସ୍ୱର ହେଉଛି ଏହି ଅଚରିତାର୍ଥ ପ୍ରକୃତି ପ୍ରେମ । ତାହା ନଗର-ଚେତନା ସହିତ ନିତ୍ୟ ବର୍ତ୍ତମାନ, ଜୀବନକୁ ଅସ୍ୱୀକାର କରିପାରେ ନାହିଁ । ଆଧୁନିକ ଓଡ଼ିଆଙ୍କ ଜୀବନ ପରିସ୍ପନ୍ଦିତ ହୋଇଥାଏ କଟକ ସହରରେ । ତେଣୁ କବିତା ଆକୃଷ୍ଟ ହୋଇପଡ଼ିଛି କଟକ ପ୍ରତି, ଠିକ୍ ଯେପରି ବୋଦ୍‌ଲେଆର ଆକୃଷ୍ଟ ହୋଇ ପଡ଼ିଛନ୍ତି ପ୍ୟାରିସ୍ ପ୍ରତି । କଟକ କୋଳରେ କୌଣସି କବି ଅବଶ୍ୟ ଜୀବନପୂର୍ଣ୍ଣ ଆଦରପୂର୍ଣ୍ଣ ମୃଦୁ ଉତ୍ତାପର ସ୍ପର୍ଶ ପାଇଥିବାର ଜଣାନାହିଁ , '' ବରଂ ଚଉଧୁରୀ ବଜାରର ଆଲୁଅ ଓ ଠେଲାଠେଲି ଗହଳି ଭିତରେ / ଏ ପୃଥିବୀ ଜଣାଯାଏ ବନ୍ଧୁହୀନ ଜ୍ଞାତିହୀନ କେଉଁ ଏକ ଅନ୍ୟ ଦେଶ ପରି ।'' ('ହରେକୃଷ୍ଣ ଦାସ' - ଗୁରୁପ୍ରସାଦ ମହାନ୍ତି ) ।

ବଡ଼ ଅନାତ୍ମୀୟ ସହର, ବଡ଼ କୁତ୍ସିତ ମଧ୍ୟ । ଉଷା ତା'ର ଆଶାକୁ ପୁଷ୍ପିତ କରେ ନାହିଁ କି ସନ୍ଧ୍ୟା ପ୍ରୀତି ଉପୁଜାଏ ନାହିଁ । ତେବେ ସହରଟା ଯେ ଭଲ ନ ଲାଗେ ତାହା ନୁହେଁ, 'ଭଲ ଲାଗେ, ମାୟା ଜାଗେ ' ('ଏ ସହରଟା '-କବି ସଚ୍ଚିଦାନନ୍ଦ ) ସହରରେ କିନ୍ତୁ ମନର ଅବକାଶ ନାହିଁ । ମନର ଅବକାଶ ପ୍ରକୃତିରେ । ତେଣୁ ସହର-ସନ୍ତାନ ସଭ୍ୟ ମଣିଷ ବେଳେବେଳେ ଆନନ୍ଦମୟୀ ପଲ୍ଲୀ ଓ ପ୍ରାଣମୟୀ ପ୍ରକୃତି ଉଦ୍ଦେଶ୍ୟରେ ବାହାରି ପଡ଼େ; କିନ୍ତୁ ପଲ୍ଲୀ ଓ ପ୍ରକୃତି ସହିତ ତାଙ୍କର ସମ୍ବନ୍ଧ ହୁଏ ଶେଷ ପର୍ଯ୍ୟନ୍ତ ପିକ୍‌ନିକ୍‌ର ସମ୍ବନ୍ଧ । ଯଥା ସମ୍ଭବ ସ୍ୱଳ୍ପସ୍ଥାୟୀ । ସହର

ପ୍ରକୋପରେ ନାଗରିକ ମଣିଷ କୌଣସି ପ୍ରକାରେ ପ୍ରକୃତି ସହିତ ଘନିଷ୍ଠ ହୋଇପାରେ ନାହିଁ। ସହର-ସଭ୍ୟତା ସାଙ୍ଗ ଛାଡ଼ିବ କିପରି ? କବି ଗୁରୁପ୍ରସାଦଙ୍କ 'ପିକ୍‌ନିକ୍' ତଥା କବି ଜାନକୀବଲ୍ଲଭଙ୍କ 'ବଣଭୋଜି' ର କାବ୍ୟନାୟକ ଅଚରିତାର୍ଥ ପ୍ରକୃତିପ୍ରେମର ଯନ୍ତ୍ରଣା ବୁଝିଛନ୍ତି; ମାତ୍ର ଗତ୍ୟନ୍ତର ଦେଖିନାହାନ୍ତି। ଟିଣ-ଦୁଧ, ଚା, ଷ୍ଟୋଭ,ସିଗାରେଟ, ଦିଆସିଲି,କ୍ୟାମେରା, ଗ୍ରାମୋନ ଶେଷ ପର୍ଯ୍ୟନ୍ତ ପ୍ରକୃତି ସହିତ ସହରୀ ମଣିଷର ସମ୍ପର୍କକୁ ଅନ୍ତରଙ୍ଗ ହେବାକୁ ସୁଯୋଗ ଦିଅନ୍ତି ନାହିଁ । କାବ୍ୟନାୟକ ପ୍ରକୃତି କୋଳକୁ ଯାଏ କେବଳ ଫେରି ଆସିବାକୁ । ପ୍ରକୃତି-ରାଣୀର ଈର୍ଷା ମଧ କିଛି କମ୍ ନୁହେଁ। ସହରାଭିମୁଖୀ ମଣିଷ ପାଖରେ ସେହି ଅଭିମାନିନୀର ଅବଗୁଣ୍ଠନ କେବେ ଖୋଲେ ନାହିଁ । ପ୍ରକୃତି-ସୌନ୍ଦର୍ଯ୍ୟ ଅନୁପଲଭ୍ୟ ରହିଯାଏ । କେବଳ ପ୍ରକୃତିକୁ ଘେନି ନିମଜ୍ଜି ଗଲେ ତା'ର ସର୍ବବିଧ ଆନନ୍ଦ ଓ ସୌନ୍ଦର୍ଯ୍ୟ କେବେ ଅଜସ୍ର ଧାରାରେ ଅଜାଡ଼ି ହୋଇ ପଡ଼େ ନାହିଁ। ସହରବାସୀର ପ୍ରକୃତିଗତ ଚିତ୍ତତା କାହିଁ ? ତେବେ ଆଧୁନିକ କବିତାରେ ପ୍ରକୃତି-ସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ ଅନୁପସ୍ଥିତ ବୋଲି କହିଲେ ଭୁଲ ହେବ। ପ୍ରକୃତିର ସୂକ୍ଷ୍ମ କବିତ୍ୱପୂର୍ଣ୍ଣ ଅନୁଭୂତି ବଡ଼ ବିରଳ ହେଲେ ହେଁ ଦୁର୍ଲଭ ନୁହେଁ। ଆଧୁନିକ କବିତାର 'ଚମ୍ପକ ଜ୍ୟୋତ୍ସ୍ନା', ' ସକାଳର ଜିକି ଜିକି ଶୁଆପକ୍ଷୀ ପୋଖରାଜ ଖରା' ( ସଚ୍ଚିଦାନନ୍ଦ ) ଓ 'ଆକାଶରେ କାନ ଦୁଲ୍ ପରି ଝୁଲୁଥିବା ଗୋରା ଦ୍ୱିପ୍ରହର' (ସୌଭାଗ୍ୟ କୁମାର ମିଶ୍ର ) ଆଦି ଚିତ୍ରକଳ୍ପରେ ପ୍ରକୃତିପ୍ରେମ ଶୁଦ୍ଧ ସୌନ୍ଦର୍ଯ୍ୟ ଚେତନାରେ ପରିଣତ ହୋଇ ଯୁଗର କ୍ଳାନ୍ତି ଓ ମୃତ୍ୟୁବିଷଣ୍ଣତାକୁ ଅଭିଭୂତ କରିଦେଉଛି । କବି ସଚ୍ଚିଦାନନ୍ଦଙ୍କ 'ଏକ ଉତ୍ତୀର୍ଣ୍ଣ ଶ୍ରାବଣ' ଓ ଭାନୁଜୀ ରାଓଙ୍କ 'କାଠଯୋଡ଼ୀ' କବିତାରେ ପ୍ରକୃତି ସୌନ୍ଦର୍ଯ୍ୟ ପିପାସୁ କଳ୍ପନା ପ୍ରଦୀପ୍ତ ଦୃଷ୍ଟିର ସ୍ନିଗ୍ଧ ଆଲୋକରେ କିଛି କମ୍ ରମଣୀୟ ହୋଇ ଉଠିନାହିଁ।

କାଶଫୁଲ, ଘାସ,
କୁମାରୀର ମୁହଁ ପରି
ମସୃଣ ଆକାଶ ।
ଧୋବଲା ବାଲିର ଚରା
ପାଣି ନୀଳକଇଁ
ମୁଠା ମୁଠା ବାଲି ବିଞ୍ଚି
ଶୋଇରହେ କାଠଯୋଡ଼ୀ ନଈ ।
କାଠଯୋଡ଼ୀ ସ୍ୱପ୍ନ ଦେଖେ
ଦୂର କେଉଁ ସମୁଦ୍ରର କଥା
ଆଜି ସବୁ ଚୁପ୍‌ଚାପ୍
ବାଲି ଆଉ ବାଲି
ଖାଲି ନୀରବତା ।

କବି ୱାଡ଼ସୱାର୍ଥଙ୍କ ପ୍ରକୃତି-ପ୍ରେମ ସମ୍ପର୍କରେ ଆଲଡ଼ସ୍ ହକ୍ସଲି ମନ୍ତବ୍ୟ କରିଛନ୍ତି , ''କେବଳ ପ୍ରକୃତିର ମନୋହର ରୂପ ଦେଖିଥିଲେ ବୋଲି ସେ ପ୍ରକୃତିକୁ ଭଲପାଇ ପାରିଛନ୍ତି'' । ମନ୍ତବ୍ୟଟି ମିଥ୍ୟା ନୁହେଁ । ଆମ ଉଷ୍ଣମଣ୍ଡଳରେ ଆଧୁନିକ କବି ପ୍ରକୃତିର ଯେଉଁ ଉଗ୍ରରୂପ ଦେଖନ୍ତି, ତାହା ଦେଖିଥିଲେ ୱାର୍ଡ଼ସ୍‌ୱାର୍ଥଙ୍କ ପ୍ରକୃତିପ୍ରେମ ଅନ୍ତର୍ହିତ ହୋଇ ନ ଥାନ୍ତା କି ? ଦୁରନ୍ତ ବାତ୍ୟା ଓ କ୍ରୁର ବନ୍ୟାର ଭୟଙ୍କର ପ୍ରକୋପ ଅଙ୍ଗେ ନିଭାଇ କେଉଁ କବି ପୁଣି ପ୍ରକୃତିକୁ ନିବିଡ଼ ଭାବରେ ଭଲପାଇ ପାରିବ ? ଏଇଥିପାଇଁ ହୁଏତ ଆଧୁନିକ କବିତାରେ ପ୍ରକୃତି-ସୌନ୍ଦର୍ଯ୍ୟ ପ୍ରତି ସହଜ ଆନନ୍ଦ ଉଲ୍ଲାସ ଭାବନା କମିଛି । ସେଥିରେ ତେଣୁ ' ଏକ ଉତ୍ତୀର୍ଣ୍ଣ ଶ୍ରାବଣ' ଓ ' କାଠଯୋଡ଼ୀ' ବଡ଼ ବିରଳ ମୁହୂର୍ତ୍ତର କଥା ।

ଆଧୁନିକ କବିତା ପଲ୍ଲୀଶ୍ରୀ ପ୍ରତି ବିମୁଖ ନୁହେଁ, ତେବେ କବି ନନ୍ଦକିଶୋରଙ୍କ 'ପଲ୍ଲୀଚିତ୍ର' ଓ କବି ସଚ୍ଚିଦାନନ୍ଦଙ୍କ 'ପଲ୍ଲୀଶ୍ରୀ'ରେ ପଲ୍ଲୀର ଅନାଡ଼ମ୍ବର ଅକୃତ୍ରିମ ସାରଲ୍ୟ ଓ ଶୁଚିତା ପ୍ରତି ଯେଉଁ ଆକର୍ଷଣ ଥିଲା, ତାହା ଆଜି ପ୍ରାୟ ନାହିଁ । କବି ଗୁରୁପ୍ରସାଦଙ୍କ 'ସିତୁଆ' ଓ କବି ବିନୋଦ ଚନ୍ଦ୍ର ନାୟକଙ୍କ ' ଗ୍ରାମପଥ' ପଲ୍ଲୀ ପ୍ରକୃତି ଦର୍ଶନରେ ସତ୍ୟତା ଓ ଋଜୁତା ଘେନି ସେହି ବିରଳତା ମଧ୍ୟରେ ଦୁଇଟି ଚମତ୍କାର କବିତା । ଉଭୟେ ପ୍ରକୃତି ଆଶ୍ଳିଷ୍ଟ ଗ୍ରାମୀଣ ମାଟିର ସ୍ତନ୍ୟରସରେ ବେଶ୍ ପରିପୁଷ୍ଟ । ଦୁହେଁ ପଲ୍ଲୀଜୀବନର ପ୍ରାତ୍ୟହିକ ଅଭିଜ୍ଞତା ସହିତ ମୁଗ୍ଧ ସୌନ୍ଦର୍ଯ୍ୟାନୁଭୂତିକୁ ଏକତ୍ର କରିଦେଇ ସହରାଭିମୁଖୀ ମଣିଷର ପଲ୍ଲୀବିଚ୍ଛେଦ ବେଦନାରେ କରୁଣ ଓ କୋମଳାର୍ଦ୍ର ହୋଇ ଉଠିଛନ୍ତି ।

ଏଠି ସ୍ମରଣ ରଖିବାକୁ ହୁଏ ଯେ, କବି ବିନୋଦଚନ୍ଦ୍ର ନାୟକ ଦୂର ବିସ୍ମୟ ସଞ୍ଚାର କରିବାକୁ ପ୍ରକୃତି ଅନୁସନ୍ଧାନରେ ସୁମେରୁର ସନ୍ଧ୍ୟା, ମାଡ଼ାଗାସ୍କରର ଲବଙ୍ଗ କ୍ଷେତ ଓ ଚନ୍ଦ୍ରଲୋକର ସନ୍ଧ୍ୟା ପର୍ଯ୍ୟନ୍ତ ଘୂରି ଆସିଛନ୍ତି । ଦୂରତ୍ୱ କିନ୍ତୁ ସୌନ୍ଦର୍ଯ୍ୟ ସୃଷ୍ଟିକରି ପାରିନାହିଁ, ସବୁଠି ଅସଂପୂର୍ଣ୍ଣ ଅଭିଜ୍ଞତାର ଅବସାଦ ଆଣିଛି ମାତ୍ର । 'ଗ୍ରାମପଥ'ରେ କବି ବରଂ ଆଶ୍ୱସ୍ତ ହୋଇଛନ୍ତି, ଚିନ୍ମୟୀ ପଲ୍ଲୀପ୍ରକୃତିକୁ ଜୀବନ୍ତ କରି ଦେଇଛନ୍ତି, '' ଶ୍ୟାମ ପ୍ରାନ୍ତରେ ଉଲଙ୍ଗ ଶିଶୁ ସମ/ ଏ ପଥ ଘୁମାଏ ନୀଳନଭେ ଯଥା ଛାୟାପଥ ମନୋରମ ।''

ଆଧୁନିକ କବିତାର ସୌନ୍ଦର୍ଯ୍ୟଚେତନା ଇନ୍ଦ୍ରିୟବୋଧରୁ ପ୍ରାୟ ଭିନ୍ନ ନୁହେଁ । କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିରେ ଆଧ୍ୟାତ୍ମ ପ୍ରେରଣା ନାହିଁ କହିଲେ ଚଳେ । ତେବେ ବ୍ୟତିକ୍ରମ ଭାବରେ ଆମେ କବି ସଚ୍ଚିଦାନନ୍ଦଙ୍କ 'ଏକ ସନ୍ଧ୍ୟା ଶେଷେ' ଓ କବି ବିବେକ ଜେନାଙ୍କ 'ରାକା' କବିତାକୁ ସ୍ମରଣ କରି ପାରିବା । ଉଭୟତ୍ର କବିଏ ରୂପପଦ୍ମରୁ ଅରୂପ ମଧୁ ପାନ କରିଛନ୍ତି, ଭୌମଚେତନାର ହ୍ରଦରେ ସତ୍ତା ହଜାଇ ଦେଇଛନ୍ତି । ଅନ୍ୟତ୍ର କିନ୍ତୁ କବିଙ୍କ ସୌନ୍ଦର୍ଯ୍ୟ-ମୁଗ୍ଧତା ଆଧ୍ୟାତ୍ମିକ

ଅକୃତ-ରୂପ ଗ୍ରହଣ କରିନାହିଁ । ତଥାପି ସେମାନେ ମଧୁ ପାନ କରିଛନ୍ତି ନିଶ୍ଚୟ, ଯଦିଓ ତାହା ଅରୂପ-ମଧୁ ନୁହେଁ । ସୌନ୍ଦର୍ଯ୍ୟ ସ୍ୱୟଂ କିଛି କମ୍ ଆଧ୍ୟାତ୍ମିକ ନୁହେଁ । ତେଣୁ ଆଧୁନିକ କବିତାର ସୌନ୍ଦର୍ଯ୍ୟଚେତନା ପଛରେ ଆଧ୍ୟାତ୍ମ୍ୟ ପ୍ରେରଣା ନ ଥିଲେ ହେଁ ଦିବ୍ୟ ଆନନ୍ଦର ଅଭାବ ଘଟି ନାହିଁ । କବି ସୀତାକାନ୍ତଙ୍କ 'ଘାସଫୁଲ' କବିତାଟି ସ୍ମର୍ତ୍ତବ୍ୟ । ଜୀବନମରୁରେ ଅଘଟଣ ଘଟାଇ ଫୁଲଟିଏ ଫୁଟିଛି । ବିନା ସମ୍ବାଦରେ ଫୁଲ ପୁଣିଫୁଟି ପାରେ ? ଲୋକ ସନ୍ଦେହ କରିବା ଅସ୍ୱାଭାବିକ ନୁହେଁ ।

> ''ପହଞ୍ଚି ଦେଖିଲେ କିନ୍ତୁ
> ସତରେ ଘାସଗଛରେ ନଙ୍ଗଳା ନେଳି ଫୁଲଟି
> ଥରୁଅଛି କୁହୁଡ଼ିଆ ସକାଳର ଥଣ୍ଡାପବନରେ
> ଧୂଳି ଓ କୋଇଲାଗୁଣ୍ଡି ଭରପୂର ବଗିଚାର ଏକୁଡ଼ିଶାଳରେ । ''

ଜୀବନର ସବୁ ଦୈନ୍ୟ, ମାଳିନ୍ୟ ଓ ଗ୍ଲାନି ପରାଭବକୁ ଅଭିଭୂତ କରି ମଣିଷପାଇଁ ଫୁଲଟିଏ ଫୁଟିଛି, ବିଶ୍ୱବ୍ରହ୍ମାଣ୍ଡ ଦିବ୍ୟ-ଆନନ୍ଦରେ ପରିସ୍ପନ୍ଦମାନ । ପ୍ରକୃତରେ ଫୁଲ ମାତ୍ରେ ସୌନ୍ଦର୍ଯ୍ୟର ଦୂତ । ଆଧୁନିକ ମଣିଷ ସଭ୍ୟତାର ସ୍ୱର୍ଣ୍ଣଲଙ୍କାରେ ରାଜଭୋଗ ମଧ୍ୟରେ ଆଜି ନିର୍ବାସିତ ହୋଇଛି । ସୌନ୍ଦର୍ଯ୍ୟର ଦୂତଟିକୁ ଅବମାନନା କଲେ ରାକ୍ଷସକୁ ଭଜିବାକୁ ପଡ଼ିବ ହିଁ ପଡ଼ିବ । ତେଣୁ ଆଧୁନିକ କବିତାର ସୌନ୍ଦର୍ଯ୍ୟଚେତନା ସେହି ସନାତନ କଥାଟି ସମ୍ବନ୍ଧରେ ପୁଣି ଥରେ ଆମକୁ ସଚେତନ କରାଇ ଦେଉଛି ଯେ-

"Beauty can save the world." ।

କବିତା ଚିରକାଳ ହିଁ କବିତା ।

❑❑❑

# ଆଧୁନିକ ଓଡ଼ିଆ କବିତାରେ ଆଧ୍ୟାତ୍ମିକତା

•

ଚନ୍ଦ୍ରଶେଖର ମହାପାତ୍ର



*ଅବସରପ୍ରାପ୍ତ ଉପାଧ୍ୟକ୍ଷ,*

*ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ*

ନିଂଖିଳ ଜଗତର ହେତୁରୂପେ ଯେଉଁ ଶକ୍ତି ଚିର କଳ୍ପନୀୟ ହୋଇ ରହିଛି, ସେହି ରହସ୍ୟମୟ ଅନନ୍ତ ଶକ୍ତିର ମହିମା ଉପଲବ୍ଧ ହୁଏ ଅନ୍ତର୍ଦୃଷ୍ଟି ଯୋଗେ। ନଶ୍ୱର ଅବିନଶ୍ୱରର ସଂଧାନୀ ହୁଏ, ସାନ୍ତ ଅନନ୍ତର ସମ୍ପର୍କ ବୁଝେ, ସୁଦୂର ହୁଏ ନିକଟତମ, ବହୁଦୃଷ୍ଟି ହୁଏ ଏକୀଭୂତ। ସେହି ସଂଧାନ ବୃତ୍ତି ଓ ଚେତନା ହିଁ ଆଧ୍ୟାତ୍ମିକତା। ଭକ୍ତିବାଦ, ଜ୍ଞାନଯଜ୍ଞ ଓ କର୍ମଯୋଗ ଇତ୍ୟାଦି ତାର ନାମାନ୍ତର ମାତ୍ର।

ଭାରତର ଜାତୀୟ ଜୀବନର ମେରୁଦଣ୍ଡ ହେଉଛି ଆଧ୍ୟାତ୍ମିକତା। ସେଇଥିରେ ହିଁ ଏ ଦେଶର ସମାଜ ଓ ସଂସ୍କୃତି ଗଠିତ। ସାହିତ୍ୟ, ସମାଜ ଓ ସଂସ୍କୃତିର ଦର୍ପଣ। ତେଣୁ ଭାରତୀୟ ସାହିତ୍ୟରେ ଆଧ୍ୟାତ୍ମିକ ଭାବର ବାହୁଲ୍ୟ ରହିବା ଅତ୍ୟନ୍ତ ସ୍ୱାଭାବିକ। ସେହି ଭାବଧାରା ଉଚ୍ଛଳ ଭଙ୍ଗୀରେ ପୁରାତନ ଓଡ଼ିଆ ସାହିତ୍ୟରେ ପ୍ରବାହିତ ହୋଇଥିଲା।

ଆଜି ଜଡ଼ବାଦରେ ଯେତେ ପିହିତ ହେଲେ ମଧ ଆଧୁନିକ କବିଗୋଷ୍ଠୀ ଆଧ୍ୟାତ୍ମିକ ଚିନ୍ତନ ଓ ବିଭୁସ୍ମରଣକୁ ବାଣୀରାଜ୍ୟରୁ ନିର୍ବାସିତ କରିନାହାନ୍ତି। ପ୍ରାଚୀନ ଯୁଗୀୟ ଚିତ୍ତ-ସାରଲ୍ୟ ଓ ଉଜ୍ଜ୍ୱଳ ବିଶ୍ୱାସ ଆଜି ନାହିଁ। ନୈତିକତାର ମୂଲ୍ୟବୋଧ ଏବେ ପରିବର୍ତ୍ତିତ। ଜୀବନ କ୍ଷେତ୍ରରେ ପ୍ରତ୍ୟୟର ଆଲୋକ ଅପେକ୍ଷା ସଂଶୟର ତମସା ଅଧିକ। ମଣିଷ ତା'ର ଅନ୍ତର୍ଜଗତକୁ ମରୁଭୂମି କରି ବହିର୍ଜଗତ ପ୍ରତି ଅନୁରକ୍ତ, ଯାହା ସାମାନ୍ୟ ଭିନ୍ନଭଙ୍ଗୀରେ ଡ଼କ୍ଟର ରାଧାକୃଷ୍ଣଙ୍କ ଉକ୍ତିରେ ପ୍ରତିଫଳିତ ହୋଇଛି - "The inadequacy of religion is evident from the disparity between outward allegiance and inward betrayal".

(Recovery of Faith ) । ସର୍ବୋପରି ରହିଛି ବିଜ୍ଞାନର ପ୍ରାଶ୍ନିକ ଚକ୍ଷୁ । ତଥାପି ଆଧୁନିକ କବି ଜୀବନର ଅଳୀକତା, ବିଖଣ୍ଡତା ଓ ନିରାଶା ମଧ୍ୟରେ ସଚେତ ରହି ତା'ର ରଚନାରେ କେବେ ଆଂଶିକ ଭାବେ, କେବେ ପୁଣି ସାମଗ୍ରିକ ଭାବେ ସ୍ୱଭାବ ସୁଲଭ ବୁଦ୍ଧିଦୀପ୍ତ ଭଙ୍ଗୀରେ ଆଧ୍ୟାତ୍ମିକତାର ସ୍ପର୍ଶ ରଖିଛି ।

ଓଡ଼ିଆ ସାହିତ୍ୟରେ ସବୁଜଯୁଗର 'ଯାତ୍ରା-ସଙ୍ଗୀତ'ର ମୂର୍ଚ୍ଛନା ଶୁଣିବା ପରେ ସାଂପ୍ରତିକ ଜୀବନ କୋଳାହଳର ଅନ୍ତରାଳରେ ପ୍ରଥମେ ଆମେ ସଚ୍ଚି ରାଉତରାଙ୍କ ସ୍ୱର ଶୁଣିଛୁ-

''ମୋ ନାରୀ ପୁରୁଷ ସତ୍ତା ମୋର ଦ୍ୱୈତ ଖେଳା
ମୋର ନିତ୍ୟ ପୁଣି ମୋର ଲୀଳା
ସେ କି ପାଏ ସମନ୍ୱୟେ ଅଥବା ବିରୋଧେ
ମୋର ପୂର୍ଣ୍ଣେ ମୋର ଅଧେ,-
ପାଏ କି ସଂଧାନେ ସେ ମୋ ଭିତରର ଇଳା ?''(ଅନ୍ତରାଳ)

ପ୍ରକୃତି-ପୁରୁଷ କିମ୍ବା ଜୀବ-ପରମର ସତ୍ତା ଓ ନିତ୍ୟାନିତ୍ୟର ସଂଦର୍ଶନ ସମ୍ଭବ ହୁଏନାହିଁ ଯୁକ୍ତିର ଖଣ୍ଡନ-ମଣ୍ଡନ ମାର୍ଗରେ; ସମ୍ଭବ ହୁଏ ଅନୁଭୂତିରେ । ଗଭୀର ନିଦ୍ରାରେ କବି ଶୁଣିଛନ୍ତି 'ନିଜର ଗୋପନ ବାଣୀ ମର୍ମିତ ଓଁ କାର' ଏବଂ ଅନୁଭବ କରିଛନ୍ତି-

''ମୋ ଭିତରେ ମୁଁଇ ହଜେ, ମୁଁଇ ଖେଳେ
ମୋର ଅନ୍ତରାଳେ ''

ସଚ୍ଚି ରାଉତରାଙ୍କ ଏହି ଅନୁଭୂତି ଏ ଯୁଗର ଭାରତର ଜଣେ ଶ୍ରେଷ୍ଠ ସନ୍ନ୍ୟାସୀ ଅତ୍ୟାଶ୍ରମୀ ବିଶ୍ୱପ୍ରଣବଙ୍କ "I the Order" ରେ ଧ୍ୱନିତ ହୋଇଥିବା ଭାବର ନିକଟବର୍ତ୍ତୀ:

"One 'I' is working as the witness of the other "I" who feels himself as the master of all his own actions and reactions."

ବିନୋଦ ନାୟକଙ୍କ 'ଗ୍ରାମପଥ'ରେ ଯଦି ବା ଆଧ୍ୟାତ୍ମିକତାର ତତ୍ତ୍ୱ ନାହିଁ, ତଥାପି ଆଧ୍ୟାତ୍ମିକ ରାଜ୍ୟର ସେଇ ବିଶ୍ୱାସୀ ମନଟି ଆବେଗରେ ଗ୍ରାମପଥକୁ ନିବେଦନ କରିଛି-

''ଭିକ୍ଷାଶୀ ପ୍ରାଣ ପୀଡ଼େ ମତେ ଅହରହ
ପାଥେୟ ବିହୀନ ପଥିକ ମୁଁ ଜଣେ
ଯାତ୍ରା ଏ ଦୁରୁବହ ।
ଖାଇ ଓ ଢୂଳାରେ ଶୁଭ୍ରକରି ତୋ ତନୁ
ରାମ ନାମ ସତ ମନ୍ତ୍ରେ ଚଳିବି

ତୋ ତୀର ଶଶାନେ
କେବେ କହ କେବେ କହ,''। (ଗ୍ରାମପଥ)

ଚେତନ୍ୟ ବିନା ଉପଲବ୍ଧି ନାହିଁ । ଭୀମଭୋଇଙ୍କ ଭାଷାରେ - ''ଚିଆଁଇ ଚୈତନ୍ୟ ଜୀବ ପରମକୁ ଭେଟାଭେଟି କର ହରି''। ଜୀବନ ପଥରେ ମାୟାଲୁବ୍ଧ ପ୍ରାଣୀର ଥରେ ଥରେ ଚେତନା ଜାଗରିତ ହୁଏ । ତାହା ଚକିତ-ଦର୍ଶନ ରୂପେ ଗୃହୀତ । ଏହାର ସ୍ପଷ୍ଟ ସୂଚନା ବହନ କରିଛି ଗୁରୁପ୍ରସାଦ ମହାନ୍ତିଙ୍କ ଏକ ସାର୍ଥକ ସୃଷ୍ଟି 'କାଳ ପୁରୁଷ' । ଜୀବନ ଓ ସମାଜର ସବୁ ରିକ୍ତତା, ଗ୍ଲାନି, ହତାଶ ଓ ବିରୋଧାଭାସର ଅଭିଜ୍ଞତା ପରେ ତାଙ୍କ ଚେତନା ଫେରିଛି -

''ଚେତନା ଯଦିବା ଫେରେ କୁରୁବକ କଦମ୍ବରେ
ହୋମ ଅଗ୍ନି ପରେ
ସକାଳର ଆକାଶରେ ବୀଣା ଅବା ଧ୍ୱନିତ ଝଂକାର ।''

ସେତେବେଳେ ତାଙ୍କ ଅନ୍ତଶ୍ଚକ୍ଷୁରେ ପୁଣି ଭାସି ଉଠେ-

''କାହାର ରଥର ଚକ୍ର ସମବେତ ଅଶ୍ୱହସ୍ତୀ ଅବା ପଦାତିକ
ସଂଧ୍ୟାର ଶୋଣିତ ମଛି ଆକାଶର ଦେହରେ ଦେହରେ
ହଠାତ୍ ବା ଫୁଟିଉଠେ ଚକ୍ରଘଟ ତ୍ରିଶୂଳ ନିଶାଣ
ଅକସ୍ମାତ ସ୍ତବ୍ଧ ହୁଏ ଅଭିଭୂତ ଅବାକ୍ ପୃଥିବୀ ''
× × ×
''ଜୀବନର ଯେତେ ଗୀତ ଭାସିଯାଏ ବାଲିକୁଦ ଉପରେ ଉପରେ
ଦୀପ ଓ ମଶାଲ କେତେ, କେତେ ଯୁଦ୍ଧ, ଧର୍ମଘଟ,
ପ୍ରୟାଗ ଓ ରାମେଶ୍ୱର ପରେ
କେତେ ଯୁଗ ଜନ୍ମ, କେତେ ଫୁଟ୍‌ଲାଇଟ, ପଦକ ଓ
ଏନକୋର ପରେ
ପ୍ରାଚୀର ବିବର୍ଣ୍ଣ ବାଲି କୁଢ଼ କୁଢ଼ ଜମିଯାଏ
ଭଗ୍ନ କେତେ ମୁଖଶାଳା
ଭଗ୍ନ କେତେ ବିଗ୍ରହର ସ୍ତୂପ ।''

ସଚେତ ମନ ତଥା ଜାଗରିତ ମନ ଏସବୁ ଘେନିବା ପରେ ସେହି ଋଷିକଣ୍ଠର ଅଭୟ ପ୍ରଦାୟିନୀ ପିୟୂଷମୟୀ ବାଣୀରେ ଭରସା ରଖିଛି -

" ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ଅନ୍ଧାରରୁ
ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ମରଣରୁ
ଏ ଗ୍ରହର ନଷ୍ଟଯାତ୍ରା ଆଜି ଯଦି ଅସତ୍‌ରୁ
ମୃତ୍ୟୁ ର୍ମାଂ
ଅସତୋ ମା
ତମ ସୋ ମା
ମୃତ୍ୟୁର୍ମାଂ.......ମୃତ୍ୟୁର୍ମାଂ.......ମୃତ୍ୟୁର୍ମାଂ
ଅମୃତ ଗମୟ ।"- (କାଳପୁରୁଷ )

ସେହିପରି ତାଙ୍କ ନିଷ୍କୃତି ସୂଚକ ଆକାଂକ୍ଷା ପ୍ରକାଶିତ ହୋଇଛି 'ଅକ୍ରୂର ଉବାଚ' କବିତାରେ ; କିନ୍ତୁ ଏ ନିଷ୍କୃତି-ଅଭିଳାଷ ପଳାୟନ ପନ୍ଥା ନୁହେଁ -

"ମହାପ୍ରଭୁ ମୁକ୍ତି ଦିଅ-
ଏହି ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ
ତୁମର ସଂହାର ଡ଼େଇଁ
ବହୁତ ବହୁତ କ୍ଳାନ୍ତି, ପୁନରୁକ୍ତି ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ ।"

ଆଧୁନିକ କବିତା ସାରଣୀରେ ଆଉ କିଛି ଦୂର ଅଗ୍ରସର ହେଲେ ଆମେ ଶୁଣୁ କ୍ଳାନ୍ତ-ଶ୍ରାନ୍ତ-ଜଡ଼ବାଦୀ ମନ ପ୍ରତି କବି ରମାକାନ୍ତ ରଥଙ୍କ ଆହ୍ୱାନ । ଏ ଆହ୍ୱାନ ଚେତନାର ଅନନ୍ତ ସମୁଦ୍ର-କୂଳକୁ ଏବଂ ସେଥିରେ ନିର୍ଦ୍ଦେଶ ଅଛି ଯେ କୌଣସି ଏକ ବିଶ୍ୱାସ ରୂପକ ନୌକାରେ ବସିବାକୁ-

"କୌଣସି ଡ଼ଙ୍ଗାରେ ବସ
ସମୁଦ୍ର ତା ଆପଣା ଇଚ୍ଛାରେ
ଡ଼ଙ୍ଗାକୁ ଚଳାଇ ନେବ ।"

ରମାକାନ୍ତଙ୍କ ଦୀର୍ଘ କବିତା 'ବାଘ ଶିକାର' ଜୀବନ-ବିଦ୍ରୂପର ଏକ ଅଭିବ୍ୟକ୍ତି । ତା'ର ପୃଷ୍ଠଭୂମି, ମର୍ମସ୍ଥଳ ଓ ପରିଣାମରେ ରହିଛି ଆଧ୍ୟାତ୍ମିକତାର ବିଦଗ୍ଧ ବ୍ୟଞ୍ଜନା । ଏ ଦୃଷ୍ଟିକୋଣର ପରିଚୟ ମିଳେ ଭାଗବତର ଏକାଦଶ ସ୍କନ୍ଧରୁ ଉଦ୍ଧୃତି ସମ୍ବଳିତ ପ୍ରସ୍ତାବନାରୁ ଏବଂ ଉପନିଷଦୀୟ ବହୁଭାବର ଅବଲମ୍ବନରୁ -

"ଦେଖ ଏ ବିଷ୍ଣୁ ମାୟା କରି । ଜଗତେ ଖେଳଇ ମୁରାରି ।।
ପୁଣି ସଂହାରି କାଳ ରୂପେ । ନିଶ୍ଚିନ୍ତେ ରହେ ଆତ୍ମା ସୁଖେ ।।

ଯେସନେ କୀଟ ଉର୍ଣ୍ଣନାଭି । ନିଜ ବଦନୁ ସୂତ୍ର ଭାବି ।।
ଜାଲ ନିର୍ମାଣି ରାତ୍ର ମୁଖେ । ମଧ୍ୟେ ବିହରେ ନାନା ସୁଖେ ।।
ଏକାନ୍ତେ ରାତ୍ରେ କ୍ରୀଡ଼ା କରେ । ସୂର୍ଯ୍ୟ ଉଦୟେ ତା ସଂହାରେ ।।''

ସଂସାର ମାୟାର ସୂଚନାରୁ ଆରମ୍ଭ କରି, ବହୁ ଦୃଷ୍ଟାନ୍ତ ଘେନି ଆମେ ଯେତେବେଳେ କବିତାର ପରିଣାମରେ ଉପନୀତ ହେଉ, ସେତେବେଳେ ଉପଲବ୍ଧି କରୁ ଯେ ମାୟାମୁକ୍ତ ଜୀବନ ହିଁ ବାଘଶିକାରର ପରିଣତି ।

''ବାଘ ମଧ୍ୟ ଦେଖିବନି ମତେ,
ଯେଣୁ କେଉଁ ଏକ ଧୂସର ଗ୍ରୀଷ୍ମର
ଲୋକାରଣ୍ୟ ହାସ୍ପାତାଳେ
ଶୋଇଥିବି ଅସମର୍ଥ ହୋଇ
ଆଉ ଥରେ ପଶିବାକୁ ସେ ଦେହରେ, ଯାହାକୁ ମୁଁ,
ହେ ଯୁବତୀମାନେ,
ତମରି ସାଙ୍ଗରେ ଆଜି ଜଙ୍ଗଲରେ
ଦେଇଛି ପକାଇ ।''
(ବାଘ ଶିକାର )

କ୍ଷୁଦ୍ର ହେଲେ ମଧ୍ୟ ରମାକାନ୍ତଙ୍କ 'ଚିତ୍ର ପ୍ରତିମା' ଆଧ୍ୟାତ୍ମିକ ଦୃଷ୍ଟିରୁ ତାଙ୍କ ଶ୍ରେଷ୍ଠ କୃତିର ନିଦର୍ଶନ । 'ଚିତ୍ର ପ୍ରତିମା' ଅବକ୍ଷୟରେ ଜର୍ଜରିତ ଆଧୁନିକ ଯାନ୍ତ୍ରିକ ଯୁଗର ଅନ୍ଧକାର ଓ ଅବିଶ୍ୱାସକୁ ଅତିକ୍ରମ କରି ମନର ଆଲୋକିତ ଦିଗରେ ଉପନୀତ ହୋଇଛି ।

ପ୍ରକୋଷ୍ଠର କାନ୍ଥରେ ଦେବତାର ଚିତ୍ର ପ୍ରତିମା । ଦେବତା ହେଉଛନ୍ତି ଚିରନ୍ତନ ଉଜ୍ଜ୍ୱଳତାର ପ୍ରତୀକ । 'ମୁଁ' ନାମଧେୟ ବ୍ୟକ୍ତି ବା କବି ସେହି ପ୍ରକୋଷ୍ଠରେ ଏକ କୃଷ୍ଣକାୟ ସ୍ତମ୍ଭ ସଦୃଶ ପ୍ରବେଶ କରିଛନ୍ତି । କୃଷ୍ଣକାୟ ସ୍ତମ୍ଭ ଆଧୁନିକ ମନର ସଂଶୟ ଜର୍ଜରିତ ଭାବର ସଙ୍କେତ । ସେହି ପ୍ରତିମା-କକ୍ଷର ପ୍ରତି କୋଣରେ ବହୁ ବକ୍ତବ୍ୟ ଓ ସ୍ମୃତିର ଧ୍ୱଂସାବଶେଷ ପରିଲକ୍ଷିତ । ସଂସ୍କୃତି ଓ ଜୀବନର ମୂଲ୍ୟବୋଧ, ଆଶା ଓ ବିଶ୍ୱାସ ଇତ୍ୟାଦି ଆଜିର ପୃଥିବୀରେ ଭଗ୍ନୀଭୂତ ଓ ଛିନ୍ନବିଚ୍ଛିନ୍ନ । କକ୍ଷର ଧ୍ୱଂସାବଶେଷ ଏହା ହିଁ ଅଭିବ୍ୟକ୍ତ କରେ । ଧୀରେ ଧୀରେ କବିଙ୍କ ବିଶ୍ୱାସ ଫେରିଛି । ତାଙ୍କ ଭାଷାରେ -

''ତାହା ଦିଶେ ବହୁ ଦୂରେ
ପୁଣି ଦିଶେ ନିକଟରେ ।''

ଏହି ଉପନିଷଦୀୟ ତତ୍ତ୍ୱର ପ୍ରଭାବ- ''ତଦ୍ଦୂରେ ତଦନ୍ତିକେ'' ।

ଦିବ୍ୟଭାବ ଓ ପୁରାତନ ବିଶ୍ୱାସର ସୁରଭି, ଯାହାକୁ କବି ''ଝରକାର ସେପାଖରୁ ମଲ୍ଲୀଫୁଲର ବାସ୍ନା'' ରୂପେ ଗ୍ରହଣ କରିଛନ୍ତି, ତାହା ମୁହୂର୍ତ୍ତେ ମୁହୂର୍ତ୍ତେ ଅବକ୍ଷୟଜର୍ଜ୍ଜରିତ ବାତାବରଣ ମଧ୍ୟକୁ ସଞ୍ଚରିତ ହେଉଛି ଏବଂ-

''ବହୁଦିନୁ ହଜିଥିବା ଅନ୍ତରଙ୍ଗତାର
ଫେରିବାର ପାଦଚହ୍ନ
ଓଦା ବାଲି ଉପରେ ଦିଶେ ।''

ପୁଣି ପ୍ରାଚୀନ ଋଷିକଣ୍ଠର ଗୁରୁଗମ୍ଭୀର ଆଶ୍ୱସ୍ତିପୂର୍ଣ୍ଣ ବାଣୀ କବିଙ୍କ କର୍ଣ୍ଣରେ କୁହରିତ ହୋଇଯାଇଛି । ପରିଶେଷରେ 'ମୁଁ' ରୂପୀ କବି ଅଭିଭୂତ ଅବସ୍ଥାରୁ ଦୃଶ୍ୟମାନ ବାସ୍ତବ ଜଗତ୍କୁ ଫେରି ଅଦ୍ୱୈତବାଦୀର ନିରାକାର ଭାବ ପରିବର୍ତ୍ତେ ଦ୍ୱୈତବାଦୀର ଭକ୍ତି ଓ ଭଗବାନଙ୍କ ସମ୍ପର୍କବୋଧ ପାଇଁ ପ୍ରୟାସୀ । ଚିତ୍ର ପ୍ରତିମାରେ ତେଣୁ ସେ ଅରୂପ ଦେଖିପାରିଛନ୍ତି ।

କବି ରମାକାନ୍ତଙ୍କ ପରେ ମଧ୍ୟ କିଛି ଆଧ୍ୟାତ୍ମିକ ଚେତନା ସୁସ୍ପଷ୍ଟଭାବେ ଧରି ଆସିଛନ୍ତି ସୀତାକାନ୍ତ ମହାପାତ୍ର । 'ଜରାଶବର ସଙ୍ଗୀତ'ରେ ତା'ର ହୁଏତ ଆଦ୍ୟ ମୂର୍ଚ୍ଛନା ଶୁଭିଛି । ଭଗବାନଙ୍କ ମାୟା ଓ ଛଳନା ଦୂରେଇ ରଖିବା ପାଇଁ ତାଙ୍କର ଆକୁଳ ନିବେଦନ -

''ମାଗୁନି ମୁଁ ଜ୍ଞାନ ତୋର, ମାଗୁନି ମୁଁ
ଅସୀମ ତୋ ସ୍ମୃତି
ହେ ମାୟାବୀ, ବିଶ୍ୱରୂପ ଖାଲି ମୋର ଏତିକି ମିନତି
ଯୁଗେ ଯୁଗେ ତୀର ମୋର ଦେଉ ତୋତେ
ତୋ ଦେହରୁ, ତୋ ଆପଣା ଛଳନାରୁ ଦେଉ
ତୋତେଇ ମୁକତି
ଯୁଗେ ଯୁଗେ କାନ୍ଦେ ମୁଁଇଁ କଇଁ କଇଁ, କଂଥଡ଼ା ମୋ
ବକ୍ଷେ ଯାପି, କଅଁଳ ଏ ଛନ୍ନ ଛନ୍ନ
ଜାମୁକୋଳି ରଙ୍ଗଲିପା ତୋ ପାଦ ଦିଓଟି ।''

ତେବେ କବି ସୀତାକାନ୍ତଙ୍କ ବହୁ ଭାବରେ ବିଭକ୍ତ 'ମାଟି ଓ ମଣିଷ' ଉନ୍ନତ ଆଧ୍ୟାତ୍ମିକ ଚେତନା ଓ ଦ୍ୟୋତନାରେ ଋଦ୍ଧିମନ୍ତ । ସବୁ ଆଧୁନିକ କବିଙ୍କ ପରି ଅନେକ ଚିତ୍ରକଳ୍ପ ଓ ରୂପକଳ୍ପ ସେ ଏଥିରେ ଗ୍ରହଣ କରିଛନ୍ତି । 'କାରାଗାର'ରୁ ଆରମ୍ଭ କରି 'ମହାକାଳର ରାତ୍ରି' ଓ

'ଦୁଃସ୍ୱପ୍ନର ରାତ୍ରି' ପାର ହୋଇ ସେ ଶୁଣିଛନ୍ତି ପ୍ରତିଧ୍ୱନି -

"ପ୍ରତିଧ୍ୱନି କୁହରାଏ ପ୍ରେତାତ୍ମାର ପ୍ରତି ତନ୍ତୁ
ଡ଼ାକେ ତାକୁ ଏ ମାଟିକୁ
ପ୍ରତିଧ୍ୱନି- ଉଭାନ୍ ସେ ସୌମ୍ୟ ରୂପ
ସେ ଆଶ୍ଚର୍ଯ୍ୟ ପରିଚିତ ସ୍ୱର ।"

ତାଙ୍କର 'କୋଠରୀ' କବିତାଟି ମଧ୍ୟ ଅନୁରୂପ ଦ୍ୟୋତନାରେ ଆଲୋକିତ -

"ତମେ କି ପାରିବ ଜାଣି, ପ୍ରିୟବନ୍ଧୁ, କିଏ ଥିଲା
କୋଠରୀରେ ମୁଣ୍ଡ ଗୁଞ୍ଜି ଦିନା କେତେ
ସେ ରଇତ ଦେହୀ ନା ବିଦେହୀ ?"

ଭିନ୍ନ ଆବେଦନର ବିଭବ ଧରି ଜଗନ୍ନାଥପ୍ରସାଦ ଦାସ ତାଙ୍କର 'ପ୍ରଥମ ପୁରୁଷ', 'ଅନ୍ୟ ସ୍ୱର' ଓ 'ଅନ୍ୟସବୁ ମୃତ୍ୟୁ' କବିତା ସଂଚୟନରେ ସ୍ଥାନେ ସ୍ଥାନେ ଆଧ୍ୟାତ୍ମିକ ରହସ୍ୟବାଦୀ ଭାବ ଓ ବିଭୁସ୍ମରଣ ପ୍ରତିଫଳିତ କରିଛନ୍ତି । ସିଏ କହିଛନ୍ତି,

"ମୁଁ ଯିବି ଅନେକ ତୀର୍ଥ
ଦଶାଶ୍ୱମେଧରୁ ପୁଣି ମଣିକର୍ଣ୍ଣିକାକୁ
ମୁଁ ରହିବି ଧ୍ୟାନମଗ୍ନ
ନାଭିପଦ୍ମ କୁଣ୍ଡଳିନୀ ବ୍ରହ୍ମ ସଂପର୍କରେ
ବିସର୍ଜନ କରିବି ମୁଁ ତ୍ରିବେଣୀରେ
ବଞ୍ଚିବାର ଅବଶିଷ୍ଟ ଅବଲମ୍ବନକୁ" । (ନିଜକୁ ଖୋଜି ଖୋଜି)

ସାଂପ୍ରତିକ ପରିବେଶରେ ଏତିକି ମାତ୍ରାରେ ଆଧ୍ୟାତ୍ମିକତାର ଅଭିବ୍ୟକ୍ତି ସୀମିତ ହେବ କିମ୍ବା କବିତାବଲ୍ଲୀରେ ତାହା ଅଧିକତର ପୁଷ୍ପିତ ହେବ, ତାହା ସମୟ ହିଁ କହିବ । 'ଋଷିପ୍ରାଣେ ଦେବାବତରଣ' ପରି ସଂପୂର୍ଣ୍ଣତଃ ଆଧ୍ୟାତ୍ମିକ ଭାବବ୍ୟଞ୍ଜିତ କୃତି ହୁଏତ ଏ ଯୁଗରେ ନ ମିଳିପାରେ କିମ୍ବା ସାଧନା ଓ ସିଦ୍ଧି ସୂଚିତ ରହସ୍ୟମୟୀ ସୃଷ୍ଟି ସମ୍ଭବ ନ ହୋଇପାରେ; କିନ୍ତୁ କବି ମାନସରେ ଯେ କୌଣସି ରୂପରେ ହେଉନା କାହିଁକି ଆଧ୍ୟାତ୍ମିକ ଭାବ ସମ୍ବର୍ଦ୍ଧନା ଓ ପରିଚର୍ଯ୍ୟା ଅବଶ୍ୟ ପାଉଥିବ ।

❑❑❑

# ଆଧୁନିକତାବାଦ ଓ ଆଧୁନିକ କବିତା



ଡକ୍ଟର ବୈଷ୍ଣବ ଚରଣ ସାମଲ



*ପ୍ରଫେସର, ଓଡ଼ିଆ ବିଭାଗ,*
*ବିଶ୍ୱଭାରତୀ, ଶାନ୍ତିନିକେତନ*

ଆଧୁନିକକବିତା ଆଧୁନିକ ମଣିଷର ମାନସିକ ସଂକଟର କବିତା । ଏହା ବୁଦ୍ଧିଦୀପ୍ତ ; ହୃଦୟ-ସଂବେଦ୍ୟ ନୁହେଁ । ଏଥିରେ ଅଛି ମାନସିକ ସଂକଟ, ହୃଦୟର ସଂକଟ; ଅଛି ମଧ୍ୟ ପ୍ରମୁଖ ଭାବରେ ବୁଦ୍ଧିର ସଂକଟ । ଏହି ବୁଦ୍ଧି ଛଳ ବୁଦ୍ଧି (Pseudo-Intellectualism) । ଏହା ଫଳରେ ଆଧୁନିକ କବିତା ଭୂଇଁ ଧରି ପାରିନାହିଁ, ସମଗ୍ରତାକୁ ସ୍ପର୍ଶ କରିପାରି ନାହିଁ। ଏହା ସମଗ୍ରର ନ ହୋଇ, ହୋଇଯାଇଛି ବ୍ୟକ୍ତିର, ଏକାନ୍ତ ବ୍ୟକ୍ତିଗତତାର; ପ୍ରାଚ୍ୟ ଚେତନାର ନ ହୋଇ ହୋଇଯାଇଛି ପ୍ରତୀଚ୍ୟର । ଅନ୍ୟ ଅର୍ଥରେ ଇଉରୋ-ମାର୍କିନ-କେନ୍ଦ୍ରିକତାର ବୌଦ୍ଧିକ ଉଚ୍ଚାରଣ ।

'ଆଧୁନିକ' ଏକ ରୈଖିକ ଶବ୍ଦ ମାତ୍ର ନୁହେଁ ; ମାନବିକ ମୂଲ୍ୟାୟନ, ଶ୍ରେୟୋ ଚେତନା ଓ ସୌନ୍ଦର୍ଯ୍ୟବୋଧର ମର୍ମଧ୍ୱନି । ଆଧୁନିକତାର ପ୍ରଶ୍ନାତୀତ ଅଭୀଷ୍ଟ ନୁହେଁ ଇତିହାସ-ନିର୍ଦ୍ଦେଶିତ ତାତ୍ପର୍ଯ୍ୟକୁ ଉପେକ୍ଷା କରିବା । ଆଧୁନିକତା ସମୟକୁ ନେଇ ନୁହେଁ ; ସମୟର ମର୍ଜିକୁ ନେଇ । ଅଥଚ ସମୟ-ନିରପେକ୍ଷ ମର୍ଜି ଏକ ଅଳୀକ କଳ୍ପନା । ସମୟବୋଧକୁ ବାଦ ଦେଇଦେଲେ ଆଧୁନିକତା ପାଲଟିଯାଏ ଶଶଶୃଙ୍ଗ ପରି । ସାମାଜିକ ଇତିହାସକୁ ଛାଡ଼ି ଯେଉଁ ଆଧୁନିକତା ପ୍ରକାଶ ପାଏ, ତାହା ଠିକ୍ ଏକଚକ୍ଷୁ ହରିଣ ସଦୃଶ । ଆଧୁନିକ 'ସାଂପ୍ରତିକ' ନୁହେଁ ବା 'ନୂତନ' ମଧ୍ୟ ନୁହେଁ । 'ସାଂପ୍ରତିକ' କାଳବାଚୀ ଓ ଏଥିରେ ମୂଲ୍ୟଭାର ନ ଥାଏ । ଆଧୁନିକ ଏକ ତତ୍ତ୍ୱ, ଏକ ଦର୍ଶନ, ଏକ ଜୀବନ-ଚର୍ଯ୍ୟା; ଅଥଚ ଆଧୁନିକତା ଏକ ଫେସନରେ ପରିଣତ ହୋଇଯାଇଛି । ଏହା ମଧ୍ୟ ହୋଇଛି ପଣ୍ୟାୟିତ । ତେଣୁ କେହି କେହି ଆଧୁନିକତାର

ମତାଦର୍ଶକୁ ଅବକ୍ଷୟୀ ଓ ସାମ୍ରାଜ୍ୟବାଦର ଆୟୁଧ ବୋଲି ଅଭିଯୋଗ କରୁଥିଲାବେଳେ ଅନ୍ୟ କେହି କେହି ପୋଷ୍ଟ-ମଡ଼ର୍ଣ୍ଣିଜିମ୍ ତତ୍ତ୍ୱର ଉପଯୋଗିତାକୁ ପରୀକ୍ଷା କରୁଛନ୍ତି । ଆଉ କେହି କେହି ଦେଶଜ ଐତିହ୍ୟପୁଷ୍ଟ ଉତ୍ତର-ଆଧୁନିକତା କଥା କହୁଛନ୍ତି । ଏସବୁ ବିଚାର-ବିମର୍ଶର ମୂଳ ଉତ୍ସ ସମୟ । ସମୟ-ଚେତନାର ଦର୍ପଣରେ ବ୍ୟକ୍ତି ଓ ସମଷ୍ଟି ପ୍ରତିଫଳିତ । ସମୟ ଅନତିକ୍ରମ୍ୟ । କେହି ସମୟ ବାହାରେ ନାହିଁ । ଏହି ସମୟ ଭିତରେ ହିଁ ସ୍ୱପ୍ନଭଙ୍ଗର ଚମତ୍କାର ସହାବସ୍ଥାନ; ଅଥଚ ଏହି ସହାବସ୍ଥାନ ହୋଇଯାଇଛି ଯାନ୍ତ୍ରିକ ଓ ନିରର୍ଥକ । ଏଥିରେ ପ୍ରକାଶ ପାଏ ଆପାତ କାଳ ମନୋଭାବ । ଏହାଦ୍ୱାରା ବ୍ୟକ୍ତି ଗଠନକରେ ଆତ୍ମମ୍ଭରୀ ଦୁର୍ଗ, ଧାରଣକରେ ରୂପାତୁର ଛଦ୍ମବେଶ, ସାଜେ ସରଳୀକୃତ ସତ୍ୟଭ୍ରମର ଉପାସକ । ଏହି କାରଣରୁ କ୍ଷଣକାଳର ମୁଠା ଭିତରେ ଜୀବନକୁ ଭରିବା ଓ ପ୍ରସାଧନର ଚାକଚକ୍ୟରେ ନିଜକୁ ଭୁଲାଇ ରଖିବା ହୋଇଛି ଆଧୁନିକର ଦର୍ଶନ । ତେଣୁ ସବୁ କିଛି ହୋଇଯାଇଛି ପଣ୍ୟସର୍ବସ୍ୱ । ଐତିହ୍ୟ, ମୂଲ୍ୟବୋଧ ଓ ସୃଷ୍ଟି ସବୁ ମଧ୍ୟ ପଣ୍ୟାୟିତ । ପଣ୍ୟାୟିତ ସଂସ୍କୃତିରେ ନଥାଏ ଖାଣ୍ଟି ଜୀବନାନୁଭବ । ତେଣୁ ଏଥିରେ ଆତ୍ମରତି ପ୍ରାଧାନ୍ୟ ଲାଭ କରେ । ବିଶୁଦ୍ଧ ବା ଖାଣ୍ଟି ଜୀବନାନୁଭବ ଆତ୍ମରତିକୁ ପ୍ରଶ୍ରୟ ଦିଏ ନାହିଁ । ରହସ୍ୟମୁଗ୍ଧତାର ଛଳନା କରି ଅନ୍ଧକାର ସ୍ୱପକ୍ଷରେ କୁତର୍କ କରେ ନାହିଁ ; ଅଥଚ ଆଧୁନିକ କବିତା ଆତ୍ମରତିର କବିତା ହୋଇଯାଇଛି । ନିଜ ସପକ୍ଷରେ ବଳୟିତ କରିଛି ଅନେକ କୁତର୍କାୟିତ ଇସ୍ତାହାର । ସେହି ବଳୟକୁ ଭେଦ କରି କବି-ସତ୍ତା ସହିତ ସମଗ୍ରର ସେତୁ ବନ୍ଧନ ହୋଇ ପାରେ ନାହିଁ ।

ନବଜାଗରଣ ପର୍ବରେ ମାନବକେନ୍ଦ୍ରିକ ଆଧୁନିକ ଜୀବନର ଭାବନାମୟ ଫସଲର ଘଟିଥିଲା ଆଦ୍ୟ ଉନ୍ମେଷ । ପରେ ପରେ ସେହି ଆଧୁନିକତାର ହେଲା ରୂପାନ୍ତର । ଭାରତବର୍ଷକୁ ଆଧୁନିକତାର ଶୁଭାଗମନ ହୋଇଛି ଊନବିଂଶ ଶତାବ୍ଦୀର ପ୍ରତୀଚ୍ୟ ଶିକ୍ଷା ପ୍ରସୂତ ଚିନ୍ତାଧାରାର ସାର୍ବିକ ନିର୍ଭରତା ହେତୁ । ଏହା ଫଳରେ ପ୍ରାଧାନ୍ୟ ଲାଭ କଲା ପରଗମନ ବୃତ୍ତି ବା ଇଉରୋ-କେନ୍ଦ୍ରିକ ଭାବନାବୃତ୍ତ । ଔପନିବେଶିକ ଶକ୍ତିର ପ୍ରସାଦପୁଷ୍ଟ ବୁଦ୍ଧିଜୀବୀଗଣ ମାଟି ସହିତ ସଂପର୍କ ଛିନ୍ନ କରି ନବଲବ୍ଧ ବୁଦ୍ଧିର ଅହଂକାର ଦ୍ୱାରା ସହଜାତ ଆବେଗ ଓ ଅନୁଭୂତିର ସତ୍ୟକୁ ଅସ୍ୱୀକାର କଲେ ଓ ସମଗ୍ରତାକୁ ଖଣ୍ଡନ କରି ବ୍ୟକ୍ତି-କେନ୍ଦ୍ରିକତାକୁ ଆପଣେଇଁ ନେଲେ । ତେଣୁ ଯେଉଁ ଆଧୁନିକତା ସୃଷ୍ଟି ହେଲା, ସେଥିରେ ଅତୀତ ଅପସାରିତ, ନୂତନ ନିରାଳମ୍ବ ଓ ଭବିଷ୍ୟତ ନିରାଶ୍ରୟ ।

ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧି ମଧ୍ୟରେ ମହାଯୁଦ୍ଧକୁ କେନ୍ଦ୍ର କରି ଯେଉଁ ବିଶ୍ୱବ୍ୟାପୀ ଅବସାଦଗ୍ରସ୍ତ ପରିବେଶ ସୃଷ୍ଟିହେଲା, ସେଥିରେ ମଣିଷ ଐତିହ୍ୟର ଆୟତନରୁ ନିଜକୁ ଉଚ୍ଛେଦ କରି, ଆତ୍ମ ଅବମାନନା ମଧ୍ୟ ଦେଇ ଆତ୍ମବିନାଶର କବର ମଧ୍ୟକୁ ଗତି କରିଗଲା । ପୁନଶ୍ଚ

କରି, ଆତ୍ମ ଅବମାନନା ମଧ୍ୟ ଦେଇ ଆତ୍ମବିନାଶର କବର ମଧ୍ୟକୁ ଗତି କରିଗଲା । ପୁନଶ୍ଚ ବହୁଧା ବିଭକ୍ତ ପରସ୍ପର ବିଚ୍ଛିନ୍ନ ସମାଜ ପକ୍ଷରେ ସ୍ୱାଭାବିକ ଅସ୍ଥିର ସାଂସ୍କୃତିକ ଆୟତନରେ ଧାରାବାହିକତା କ୍ରମଶଃ ଝାପ୍‌ସା ହେବାକୁ ଲାଗିଲା । ନବଜାଗରିତ ଆଧୁନିକତାରୁ ଔପନିବେଶିକ ଆଧୁନିକତାକୁ ଗତି କଲାବେଳେ ସାର୍ବିକ ବିଚ୍ଛିନ୍ନତା ଆଧୁନିକ ବିଶ୍ୱ ବୀକ୍ଷାରେ ପ୍ରାଧାନ୍ୟ ଲାଭ କଲା । ଏଥିରୁ ସାମାଜିକ ଆଧୁନିକତା ଓ ନାନ୍ଦନିକ ଆଧୁନିକତାର ଉନ୍ମେଷ ଘଟି ପ୍ରତ୍ନ- ଆଧୁନିକତା ଓ ତାହାର ଦ୍ୱାନ୍ଦ୍ୱିକ ପ୍ରକ୍ରିୟାରୁ ଧ୍ରୁପଦୀ ଆଧୁନିକତାର ଘଟିଲା ଉତ୍ତରଣ । ପୁଞ୍ଜିବାଦୀ ସହଗାମୀ ଆଧୁନିକତା ଅବକ୍ଷୟୀ ପ୍ରବଣତା ସପକ୍ଷରେ ବିସ୍ତାରକଲା ଯୁକ୍ତି ଜାଲ । ଆରୋହୀ ଆଧୁନିକତା, ଶୀର୍ଷ ଆଧୁନିକତା, ନଗର କେନ୍ଦ୍ରିକ ଆଧୁନିକତା ଇତ୍ୟାଦି ମଧ୍ୟ ଦେଇ ଅଷ୍ଟାବକ୍ର ଆଧୁନିକତା କାୟା ବିସ୍ତାରକଲା । ଏପରି ଆଧୁନିକତାର ଲକ୍ଷ୍ୟ ଅନ୍ଧକାର ବଳୟକୁ ସ୍ଥିତିଶୀଳ କରିବା ।

ଶୀର୍ଷ ଆଧୁନିକତା ପରେ ଆଧୁନିକତାବାଦର ହେଲା ଅବରୋହରଣ । ଏହି ଅବରୋହୀ ଆଧୁନିକତା ପୂର୍ବ ପରି ନାଗରିକ ବୈଦଗ୍ଧ୍ୟ ଓ ପରିଶୀଳିତ ବୈଦଗ୍ଧ୍ୟକୁ ଅବଲମ୍ବନ କରି ଆତ୍ମରତିର ଜୟଗାନ କଲା । ଏଥିରେ ପ୍ରାଧାନ୍ୟ ଲାଭକଲା ବିଶ୍ୱବୀକ୍ଷା ପ୍ରତି ନିଃସର୍ତ୍ତ ସମର୍ପଣ, ଇଉରୋପୀୟ ବୁଦ୍ଧିବାଦରେ ଆକଣ୍ଠ ଅନ୍ୱେଷଣ, ଜୀର୍ଣ୍ଣ ପୁରାତନର ଅସ୍ଥିକଂକାଳରେ ଜୀବନ୍ୟାସ ପ୍ରଦାନ ଓ ବ୍ୟକ୍ତି-ଚୈତନ୍ୟର ନିଷ୍କର୍ଷ ଉଦ୍‌ଘାଟନ । ବ୍ୟକ୍ତି ସର୍ବସ୍ୱତାର କ୍ଷୁଦ୍ରଜଗତ ପ୍ରତି ନବ୍ୟ ଔପନିବେଶିକ ମାନସିକତା ସମର୍ପିତ ହୋଇଯିବାରୁ ଆତ୍ମମଗ୍ନତା, ପଳାୟନୀ ମନସ୍କତା ଓ ଆତ୍ମଗୋପନ ହେଲା ପ୍ରମୁଖ ଓ ରଚିତ ହେଲା ପ୍ରାତିଷ୍ଠାନିକ ଚକ୍ରବ୍ୟୂହ । କବିତାରେ ନେତିବାଦ ଓ ନୈରାଶ୍ୟର ହେଲା ସାର୍ବଭୌମ ରାଜତ୍ୱ । ବିନଷ୍ଟିର ସମର୍ଥକ ହେଲା ଆଧୁନିକତା । ସର୍ବାତ୍ମକ ପଣ୍ୟୀକରଣ ପ୍ରକ୍ରିୟା ବୃଦ୍ଧିଲାଭ କଲା । ନବ୍ୟ ଆଧୁନିକତା ଓ ପ୍ରତି-ଆଧୁନିକତାରେ ଜୀବନ ଯାପନ କେନ୍ଦ୍ରହୀନ ହୋଇ ପଡ଼ିଲା । ଅବକ୍ଷୟୀ ଆଧୁନିକତା କେନ୍ଦ୍ରରୁ ବଳୟକୁ, କେନ୍ଦ୍ରହୀନ ଅନୁଭୂତି ପରଂପରାରୁ ସ୍ୱପ୍ନ ଓ ବିଭ୍ରମକୁ ଗତି କରି ଆସକ୍ତି ଓ ହିଂସ୍ରତା, ଶ୍ଳେଷ ଓ ଉଦ୍‌ବେଗର ଛଳ ଛବି ଅଙ୍କନ କଲା, ଫଳରେ ସାଂପ୍ରତିକ ନବ୍ୟ ଔପନିବେଶିକତାବାଦରେ ଆଧୁନିକତା କୃତ୍ରିମ ସ୍ଫୂର୍ତ୍ତି ଓ ଆତ୍ମ ସନ୍ତୁଷ୍ଟିର ଜୟଗାନ କରୁଛି ।

ଏହି ଅବକ୍ଷୟୀ ଆଧୁନିକତା ପଥର ଚାପା ଦେଇ ରଖିଦେଉଛି ପ୍ରାଣର ଉଚ୍ଛ୍ୱାସକୁ । ଆଧିପତ୍ୟବାଦୀ ବର୍ଗ ଏଥିରେ ମଞ୍ଚଶୋଭନ କଲେ ଓ ଆଧୁନିକତା ନାମରେ ଐତିହ୍ୟ-ଅସ୍ୱୀକୃତି ଓ ଅଭିନବତ୍ୱର ଆସ୍ଫାଳନ କଲେ । ଏପରି ଚିନ୍ତାଧାରାରେ ସମଗ୍ରତାର ସ୍ପର୍ଶ ନାହିଁ ; ଅଛି ବ୍ୟକ୍ତିଗତତାର ସ୍ପର୍ଶ । ଏଥିରେ 'ମୁଁ' ସହିତ 'ମୁଁ'ର, ସମାଜ ସହିତ ସମାଜର, ଭାବାଦର୍ଶ ସହିତ ମତାଦର୍ଶର ମିଳନ ନାହିଁ ; ଅଛି ବିଚ୍ଛିନ୍ନ ବ୍ୟକ୍ତିସତ୍ତାର ଅସହାୟ ଉଚ୍ଚାରଣ । ତେଣୁ ମଣିଷ

ପ୍ରକୃତି ଭିତରେ କେବଳ ଭେଦ ନୁହେଁ ; ବିରୋଧିତା ମଧ୍ୟ ବଢ଼ି ଚାଲିଛି । ଫଳରେ ଆଧୁନିକତା ହୋଇ ଯାଉଛି ଗନ୍ତବ୍ୟହୀନ ଯାତ୍ରାର ଆକଳ୍ପ ।

'ଆଧୁନିକ' ଅଭିଯାନ କୌଣସି ମୋହଜାଲ ନୁହେଁ । ଆଧୁନିକତାବାଦ ଇତିହାସର ପ୍ରାସଙ୍ଗିକତାକୁ ପ୍ରତ୍ୟାଖ୍ୟାନ କରିଥିଲା; ମାତ୍ର ଇତିହାସର ଅମୋଘତା ଆଧୁନିକତାର ଔଦ୍ଧତ୍ୟକୁ କରିଛି ପରାଭୂତ । ତେଣୁ ଉତ୍ତର-ଆଧୁନିକତାବାଦ (Post-Modernism) ର ହୋଇଛି ଉନ୍ମେଷ । ଆମର ଆଧୁନିକତା ଓ ପ୍ରତୀଚ୍ୟ ଆଧୁନିକତା ଏକ ନୁହେଁ । ଆଧୁନିକତାବାଦରେ ବ୍ୟକ୍ତି କେନ୍ଦ୍ରିକତା ମୁଖ୍ୟ । ଆଧୁନିକତୋତ୍ତରତାବାଦରେ ବ୍ୟକ୍ତିର ହତାଶା, ନୈରାଶ୍ୟ,ବିଚ୍ଛିନ୍ନତା ଓ ମୃତ୍ୟୁଚେତନା ଇତ୍ୟାଦି ଥିଲେ ମଧ୍ୟ ଏସବୁକୁ ନେତିବାଚକ ଦୃଷ୍ଟିରେ ନ ଦେଖି ଇତିବାଚକ ଦୃଷ୍ଟିରେ ବିଚାର କରିବା ପାଇଁ ମାର୍କିନ ସମାଲୋଚକ ଲେସ୍‌ଲି ଫିଡ଼ଲେର ଜୋର ଦିଅନ୍ତି । ଆଧୁନିକତୋତ୍ତରବାଦର ଅଭୀଷ୍ଟ ଆଧୁନିକତାବାଦୀ ଲେଖକଙ୍କ ପ୍ରବଳ ବୌଦ୍ଧିକତାର ଉଚ୍ଛେଦ । ଏଥିରେ ମୂଳ ବୈଶିଷ୍ଟ୍ୟ ଭବିଷ୍ୟତ କେନ୍ଦ୍ରିକତା । ସମାଲୋଚକ ସୁସାନ ସୋମଟାଗ ଏହି ପ୍ରବଣତାରେ ଲକ୍ଷ୍ୟ କରନ୍ତି ଏକ ନୂତନ ସଂବେଦନା ଓ ସ୍ୱତଃସ୍ଫୂର୍ତ୍ତ ନୂତନତ୍ୱ । ଏହାକୁ ସେ କହନ୍ତି,'New Posthumanist Consciousness'। ଆଧୁନିକତାବାଦ ଭାଷାକୁ ଧ୍ୱସ୍ତ କରି ଆଗେଇଯିବାକୁ ଚାହେଁ, ବୃହତ୍ତର ସମାଜ ସହିତ ଯୋଗାଯୋଗର ସେତୁକୁ ଭସ୍ମ କରିଦେବାକୁ ଚାହେଁ । ଆରୋପିତ ନୈଃଶବ୍ଦ୍ୟକୁ ଏହା ମର୍ଯ୍ୟାଦା ଦିଏ । ଆଧୁନିକତୋତ୍ତରତାବାଦ ଭାଷା ଭିତ୍ତିରେ ଖୋଜି ଖୋଜି ଦିଏ ନୂତନ ନିର୍ମାଣର ସଂଧାନ । ଏଥିରେ କବିତାର ଶବ୍ଦ ଓ ନୈଃଶବ୍ଦ୍ୟ ପରସ୍ପର ପରିପୂରକ । ଭାଷା ଏଠାରେ ଆକ୍ରାନ୍ତ ନୁହେଁ ; ପୁନର୍ଗଠିତ । ହେରାମ ମ୍ୟାଙ୍କାରୋ କହନ୍ତି -

" In conceiving of language as a fall from unity, modernism seeks to restore the original state often by proposing silence on the destruction of language, post modernism accepts the division and uses languages and self-definition as the basis of identity. Modernism tends, as a consequence, to be more mystical in the traditional senses of that word where as post-modernism, for all its seeming mysticism, is irrevocably wordly and social" .

ଐତିହାନୁରାଗ ବାସ୍ତବବାଦ ବିରୋଧରେ ଆଧୁନିକତାବାଦ ଯେଉଁ ବିଦ୍ରୋହ ଘୋଷଣା କରିଥିଲା ସେହି ବିରୋଧକୁ ଆଧୁନିକତୋତ୍ତରତାବାଦ ସମାପ୍ତ କଲା ନାହିଁ ବରଂ ପୂର୍ଣ୍ଣ କଲା ।

ଆଧୁନିକତୋତ୍ତରତାବାଦର ଉତ୍ସ ମାର୍କିନ ପ୍ରତି-ସଂସ୍କୃତି ଓ ପଣ୍ୟସର୍ବସ୍ୱତା । ଏଥିରେ ଏହି କାରଣରୁ ନୈତିକତା ବା ବୌଦ୍ଧିକତାର ସ୍ଥାନ ନାହିଁ । ଭଲ ମନ୍ଦ, ଆଲୋକ ଅନ୍ଧାର, ଶୁଦ୍ଧତା ଅଶୁଦ୍ଧତା, ଅର୍ଥବହତ୍ୱ ଅନର୍ଥବହତ୍ୱ, ଯନ୍ତ୍ର ପ୍ରଯୁକ୍ତି, ଅତୀନ୍ଦ୍ରିୟ ଭାବଦ୍ୟୋତନା - ଏ ଜାତୀୟ ସମସ୍ତ ଦ୍ୱୈତତା ଓ ବୈପରୀତ୍ୟକୁ ପରିତ୍ୟାଗ କରି ଜଗତକୁ ପରିପୂର୍ଣ୍ଣ ଗ୍ରହଣ ଦିଗରେ ଆଗେଇ ନେବାକୁ ଚାହେଁ । ବିଟେନ୍‌ସ କହନ୍ତି -

"××× It emphasises performance and form over meaning and content, it seeks to liberate the erotic potential of art and to erase the barriers between high art and low art," (1984)

୧୯୯୬ ସାଲରେ ରିଚାର୍ଡ୍ ଓୟାସନ କହିଥିଲେ ଯେ ଆଧୁନିକୋତ୍ତର ପ୍ରବଣତା ଆଧୁନିକତାବାଦ ବିରୋଧରେ ବିଦ୍ରୋହ କରି ଥକିଯାଇ ନାହିଁ । ମାର୍କିନ ପ୍ରତି-ସଂସ୍କୃତି ବିରୋଧରେ ପ୍ରତିବାଦ କରିବା ମଧ୍ୟ ତାହାର ଏକମାତ୍ର ଲକ୍ଷଣ ନୁହେଁ । ଏହା ବୌଦ୍ଧିକତାର ଚିହ୍ନା ଲକ୍ଷଣକୁ ପ୍ରତ୍ୟାଖ୍ୟାନ କରି ଏକ ଆନ୍ତର୍ଜାତିକ ସୃଜନୀ ପ୍ରୟାସରେ ପରିଣତ ହୋଇଅଛି । ଆଧୁନିକତାବାଦୀ ବୀକ୍ଷଣରେ ସମାନ୍ତରାଳ ଅସ୍ତିତ୍ୱ ଅସ୍ୱୀକୃତ, ସର୍ବଗ୍ରାସୀ ବ୍ୟକ୍ତି-ଚୈତନ୍ୟ ଅଙ୍ଗୀଭୂତ । ବସ୍ତୁତର ବସ୍ତୁତ୍ୱ ମଧ୍ୟ ଏଥିରେ ଖର୍ବୀକୃତ । ଆତ୍ମଚୈତନ୍ୟର ପ୍ରଚ୍ଛାୟାରେ ବସ୍ତୁରୂପ ଅସ୍ପଷ୍ଟ । ତେଣୁ ବସ୍ତୁକୁ ତାର ନିଜସ୍ୱ ଚରିତ୍ରରେ ଦେଖିବାକୁ ଓ ଦେଖାଇବାକୁ ଚାହେଁ ଆଧୁନିକତୋତ୍ତରତାବାଦ । ଏହି ନୂତନ ଦୃଷ୍ଟିରେ ବିଷୟ ଓ ବିଷୟୀର ପାର୍ଥକ୍ୟ ଓ ଦୂରତ୍ୱକୁ ମାନିନେବାକୁ ହୁଏ । ଆତ୍ମଚୈତନ୍ୟ ଓ ଜଗତ ମଧ୍ୟରେ ଐକ ସମ୍ଭବ । ଆଧୁନିକତୋତ୍ତରତାବାଦରେ ସତ୍ତାଗତ ସଂଶୟ ପ୍ରତି ତେଣୁ ଦୃଷ୍ଟି ଆକର୍ଷଣ କରାଯାଉଅଛି । ଏହି ଭାବ ବିଶ୍ୱରେ ଆକରଣବାଦୀ (Structuralist) ଓ ଆକରଣୋତ୍ତରବାଦୀ (Post-structuralist) ଚିନ୍ତା ଅନ୍ତର୍ଭୁକ୍ତ । ଲକ୍ଷ୍ୟ କରାଯାଉଛି ଯେ ଆଧୁନିକତୋତ୍ତରବାଦ ନିଜ ତିଆରି ଯୁକ୍ତିବାଦର ଫାଶରେ ଧୀରେ ଧୀରେ ହୋଇଯାଉଛି ଶ୍ୱାସରୁଦ୍ଧ । ଏହା ଫଳରେ ପ୍ରକାଶ ପାଉଛି ଏକ ନୂତନ ଚେତନା, ଯାହା ମନୁଷ୍ୟର ବହୁଧା ବିଭାଜିତ ଅସ୍ତିତ୍ୱ ମଧ୍ୟରେ ବିଷଣ୍ଣତା ଓ ଆର୍ତି ଖୋଜୁ ନାହିଁ ; ଖୋଜୁଛି ମାନବିକ ସମଗ୍ରତା ସହିତ ଯୁକ୍ତ ହେବାର ସୂତ୍ର ।

ଆଧୁନିକତାର ଜନ୍ମ ସାମାଜିକ ଇତିହାସର ନିର୍ଦ୍ଦିଷ୍ଟ ପର୍ଯ୍ୟାୟର ପୁଞ୍ଜିତନ୍ତ୍ର ଭିତରୁ । ଆଧୁନିକତୋତ୍ତରତାବାଦର ଜନ୍ମ ବିଶ୍ୱ ପୁଞ୍ଜିବାଦର ବିକାଶ ଓ ବିକାଶପର୍ବରେ । ଉତ୍ତର-ଆଧୁନିକତାର ଜନ୍ମ ଅନ୍ତହୀନ ଜିଜ୍ଞାସାରୁ ଓ ଏହାର ପ୍ରତିକ୍ରିୟା ପ୍ରକାଶ ପାଇଛି ଜାଡ୍ୟ ଓ ନିଶ୍ଚଳତା ବିରୋଧରେ । ଆଧୁନିକତାକୁ ଉତ୍ତରଣ ହିଁ ଏହାର ଅର୍ଥ ଓ ତାତ୍ପର୍ଯ୍ୟ । ତେଣୁ ଏହା କାଳପର୍ଯ୍ୟାୟବାଚୀ ନୁହେଁ ; ଏକ ନୂତନ ଓ ଉତ୍କର୍ଷ ସୂଚକ ମୂଲ୍ୟବୋଧର ଇଙ୍ଗିତ । ଏହା ମଧ୍ୟ

ଏକ ପୁନର୍ନିର୍ମାଣର ଆର୍ତି ଓ ଜୀବନ ସହିତ ନିବିଡ଼ ସଂଯୋଗର ପୁନଃ ସ୍ଥାପନ । ଏହା ମଧ୍ୟ ଏକ ନୂତନ ଯୁଗର ସଂକେତ, ଏକ ପ୍ରତିଜ୍ଞାର ଅଗ୍ନି । ଏହା ଗଣ ମନୁଷ୍ୟର ଚେତନାରୁ ବିଚ୍ୟୁତ ନୁହେଁ । ଐକ୍ୟ ସ୍ଥାପନ ଏହାର ଲକ୍ଷ୍ୟ । ଏହା ମଧ୍ୟ ପ୍ରତିଷ୍ଠାନପୁଷ୍ଟ ପଣ୍ୟ ସାହିତ୍ୟର ଆବିଳ ସ୍ରୋତର ପ୍ରତିଦ୍ୱନ୍ଦ୍ୱୀ ସମାନ୍ତରାଳ ଏକ ଜୀବନନିଷ୍ଠ ଅନେକାନ୍ତିକତାର ଧାରା । ଐତିହ୍ୟର ପୁନଃ ସୃଜନ, ଅସ୍ତିତ୍ୱମୂଳକ ଅନୁସନ୍ଧାନ, ଅଭିଜ୍ଞତାର ଅତୀନ୍ଦ୍ରିୟ ସଂପ୍ରସାରଣ ଓ ସମଗ୍ରତାବାଦୀ ଅନ୍ୱେଷଣ, ବ୍ୟକ୍ତିସତ୍ତା ଭିତରେ ସାମୂହିକ ଉଚ୍ଚାରଣ, ବ୍ୟକ୍ତିକେନ୍ଦ୍ରିକତାର 'ମୁଁ' ର ଅହଂକୁ ସାମଷ୍ଟିକ 'ଆମେ' ରେ ରୂପାନ୍ତର, ବହୁସ୍ୱର ସଂଗତି ଓ ଅନେକାନ୍ତିକତା, ଆଧୁନିକତାବାଦୀ ବିକାଶର ଉନ୍ମୂଳନ ଉତ୍ତର-ଆଧୁନିକତାବାଦର ମୌଳ ଆଭିମୁଖ୍ୟ । ପ୍ରତୀଚ୍ୟାୟନରୁ ମୁକ୍ତି ଏହାର ଲକ୍ଷ୍ୟ ।

ଏହି ଦୃଷ୍ଟିରୁ ଆଧୁନିକ ଓଡ଼ିଆ କବିତାର ଗତି ଓ ପ୍ରବୃତ୍ତିକୁ ବିଚାର କରିବାର କଥା । ଔପନିବେଶିକ ମାନସିକତାରୁ ଯେଉଁ ଆଧୁନିକ କବିତାର ଉନ୍ମେଷ ଘଟିଥିଲା ତାହା କ୍ରମେ ବ୍ୟକ୍ତି କେନ୍ଦ୍ରିକତାରେ ଭାରାକ୍ରାନ୍ତ ହୋଇ ସମଗ୍ରକୁ ଅବହେଳା କରି ଦେଇଥିଲା । ଯାହା ଫଳରେ ଆଧୁନିକ କବିତା କେତେକ ମୁଷ୍ଟିମେୟ ଅଭିଜାତବର୍ଗଙ୍କ ନିକଟରେ ଆବଦ୍ଧ ହୋଇରହିଥିଲା । ଆଧୁନିକତୋତ୍ତରବାଦରେ ତାହା ଏପରି ନିଃସଙ୍ଗତା, ଏକାକୀତ୍ୱ, ମୃତ୍ୟୁବୋଧ, ନୈରାଶ୍ୟ ଉପରେ ଗୁରୁତ୍ୱ ଦେଲା ଯେ ସମଷ୍ଟି ଭାବନା ସେଥିରେ ରହିଲା ନାହିଁ । ଉତ୍ତର-ଆଧୁନିକତା-ପର୍ବରେ କବିତା ପୁନଶ୍ଚ ଭୂଇଁ ଧରିବାକୁ ଉଦ୍ୟମ କରିଛି । ଲୋକତତ୍ତ୍ୱକୁ ଗୁରୁତ୍ୱ ଦେଇଛି । ଐତିହ୍ୟର ପୁନର୍ନିର୍ମାଣ ପାଇଁ ଉଦ୍ୟମ କରିଛି । ସମଗ୍ରକୁ ଧରିବାକୁ ଚେଷ୍ଟା କରିଛି ।

ଆଧୁନିକ ଓଡ଼ିଆ କବିତାର ଦୀର୍ଘ ଏକଶହ ବର୍ଷର ଇତିହାସକୁ ପର୍ଯ୍ୟାଲୋଚନା କଲେ ଆମେ ଏହି ଭାବକୁ ଉପଲବ୍‌ଧି କରିଥାଉଁ ।

❑❑❑

# ସାଂପ୍ରତିକ ଓଡ଼ିଆ କବିତା କାହା ପାଇଁ ?

•

ଡକ୍ଟର ବାଉରୀବନ୍ଧୁ କର



*ପ୍ରଫେସର, ଓଡ଼ିଆ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

ସାଂପ୍ରତିକ ଓଡ଼ିଆ କବିତା କହିଲେ ଅନେକ ଖାଲି ଜୀବନର ନିଃସଙ୍ଗତାକୁ ବୁଝନ୍ତି, ମୃତ୍ୟୁଚେତନାକୁ ବୁଝନ୍ତି, ଜୀବନର ମୋହଭଙ୍ଗକୁ ବୁଝନ୍ତି ଓ ଭାବର ଅବାଧ ପରିପ୍ରକାଶକୁ ବୁଝନ୍ତି। ପୁଣି କହନ୍ତି, ଏଥିରେ ଯୁଗଯନ୍ତ୍ରଣାର ସ୍ୱର ସ୍ପଷ୍ଟ । ସେମାନେ କଥାକଥାକେ ଆନ୍ତର୍ଜାତିକ ପରିପ୍ରେକ୍ଷୀରୁ ଜୀବନର ବିଚାର କରନ୍ତି । ପୁଣି, କବି ଇଲିୟଟଙ୍କର 'ଚେତନା ସମନ୍ୱୟ' ଏବଂ 'ଚେତନାର ବିଚ୍ଛେଦ' କାବ୍ୟତତ୍ତ୍ୱ ଉପରେ ବି ସେମାନେ ଭାରି ନିର୍ଭର କରନ୍ତି । ସେମାନେ କହନ୍ତି, ମାର୍କସ୍ ଧ୍ୱଂସ କରିଛନ୍ତି ରାଷ୍ଟ୍ରର ନିରୀହତା, ଫ୍ରଏଡ୍ ଅସ୍ୱୀକାର କରିଛନ୍ତି ଆମର ସରଳ ମାନସିକ ଅବସ୍ଥା, କାମ୍ୟୁ ଧ୍ୱଂସ କରିଛନ୍ତି ମଣିଷର ସରଳତା, ସାର୍ତ୍ରେ ନଷ୍ଟ କରିଛନ୍ତି ମଣିଷର ସ୍ଥିରତା, ଉଇଟଗେନ ଷ୍ଟାଇନ ବିନାଶ କରିଛନ୍ତି ମଣିଷର କଥା କହିବାର ସ୍ୱାଧୀନତା, ଡାରଉଇନ ଧ୍ୱଂସ କରିଛନ୍ତି ପ୍ରକୃତିର ସ୍ୱାଭାବିକତା, ଆଉ ଆଇନଷ୍ଟାଇନ୍ ନଷ୍ଟ କରିଛନ୍ତି ଆମର ସ୍ଥାନ କାଳ ସମ୍ପର୍କିତ ଯାବତୀୟ ଧାରଣା । ବିଜ୍ଞାନ ଓ ବୈଷୟିକ ସଭ୍ୟତାର ବିକାଶ ସହିତ ମଣିଷକୁ ବୈଜ୍ଞାନିକ, ଦାର୍ଶନିକ ଓ ଚିନ୍ତାନାୟକମାନେ ତା'ର ପାରିପାର୍ଶ୍ୱିକ ସମାଜ, ଆଧାର ବିଶ୍ୱ ଓ ସରଳ ସ୍ୱାଭାବିକ ଜୀବନଠାରୁ କୁଆଡ଼େ ଦୂରେଇ ନେଇ ଯାଉଛନ୍ତି ବୋଲି ସେମାନେ କହନ୍ତି । ସେଥିପାଇଁ ସଂପ୍ରତି କବିତାରେ ଆବେଗର ସଂହତି, ଚିତ୍ର ଓ ଅନୁଷଙ୍ଗର ସଠିକ ପ୍ରୟୋଗ ଏବଂ କାବ୍ୟିକ ଅପରିହାର୍ଯ୍ୟତାର ଅଭାବ ପରିଲକ୍ଷିତ ହେଉଛି ।

ସାଂପ୍ରତି କବିତା ହୋଇଛି ବୁଦ୍ଧି ସର୍ବସ୍ୱ ମଣିଷର ବିଚରଣ ପାଇଁ ପ୍ରଶସ୍ତ କ୍ଷେତ୍ର । ଏଥିରେ କବିତ୍ୱ ଅପେକ୍ଷା ପାଣ୍ଡିତ୍ୟ, ଜୀବନର ଅନୁଭୂତି ଅପେକ୍ଷା ପାଶ୍ଚାତ୍ୟ-ଆମଦାନୀ-ଅନୁଭୂତି ଓ ଆପଣା ଭୂମି ପ୍ରତି ଅନ୍ତରଙ୍ଗତା ଅପେକ୍ଷା ଉଗ୍ର ଆନ୍ତର୍ଜାତିକ ହେବାର ବିକଳ ବାସନା ବେଶ୍ ସୁଲଭ । ପୁଣି ସମାଜବିମୁଖ ହୋଇ ଆତ୍ମକେନ୍ଦ୍ରିକ ଭାବରେ ବଞ୍ଚିବାକୁ ସାଂପ୍ରତିକ କବି ଗର୍ବ ଅନୁଭବ କରେ । ସେ ନିଜେ କବିତା ଲେଖି ନିଜେ ପଢ଼େ । ତା'ର କବିତା ପାଇଁ ପାଠକ ସଂଖ୍ୟା 'ଜଣେ' ହେଲେ ଚଳିଯିବ କିମ୍ବା ମୋଟେ ନହେଲେ ବିଚଳିଯିବ ବୋଲି କହିବାକୁ ସେ ସଂକୋଚବୋଧ କରେ ନାହିଁ । ସେ କେବେହେଲେ 'ବିବେକୀ ଗ୍ରାହକ କୋଟି କବି ଆୟୁ ଘେନି ' ବଞ୍ଚୁ ବୋଲି ଚାହେଁ ନାହିଁ ।

ପ୍ରତି ଯୁଗରେ ସାଂପ୍ରତିକ ବା ସମକାଳୀନ ହେବାକୁ ସବୁ କବିଙ୍କର ଊଣା ଅଧିକେ ଆଗ୍ରହ ଥାଏ । ସମକାଳୀନ ଜୀବନବୋଧକୁ ନେଇ କବିତା ଲେଖିବାରେ ତା'ର ଏକ ଅହେତୁକ ଆନ୍ତରିକତା ଥାଏ । କବିତାରେ ସାଂପ୍ରତିକ ଜୀବନର କଥା କହିବାବେଳେ ସେ ତାକୁ ଅନେକତ୍ର ଅତିକ୍ରମ କରି ଏକ ଭିନ୍ନ ଇଲାକାରେ ପହଞ୍ଚିଥାଏ । ସେତେବେଳେ ଏକ କାଳରେ ରଚିତ କବିତା ହୁଏ କାଳ କାଳ ପାଇଁ ଅବିସ୍ମରଣୀୟ । ଏପରି କବିତା ତା'ର ନୂଆ ଭାବ, ନୂଆ ଧାରଣା ଓ ନୂଆ ମହକରେ ପାଠକକୁ ଆମୋଦିତ କରେ । ଏପରି କବିତା ପ୍ରତି ପାଠକର ସ୍ୱତଃ ଶ୍ରଦ୍ଧା ଜାତ ହୁଏ । ନିଜଠାରେ, ନିଜର ବିବେକ ପାଖରେ ଓ ଜୀବନର ସତ୍ୟକୁ ସମ୍ମୁଖୀନ ହେବାରେ ଏ କବିତା ଅତି ବିଶ୍ୱସ୍ତ । ଏଥିରେ ସାଂପ୍ରତିକତାର ତଥାକଥିତ ଚେତନା, ଶବ୍ଦ ମୈଥୁନ, ବାଧ ବାଧକ ଧୂସରିମା, ଆବେଗଶୂନ୍ୟ ନୈରାଶ୍ୟ କିମ୍ବା ଜଟିଳ ଜୀବନ ଜିଜ୍ଞାସା ନଥାଏ । ନଥାଏ ବି କୌଣସି ଧରାବନ୍ଧା ଅନୁଶାସନ । ଏପରିକି କେତେକ କବି ସର୍ବହରା, ଦଳିତ, ପତିତ, ପୁଞ୍ଜିବାଦ, ନୂତନ ସୂର୍ଯ୍ୟ, ଲାଲ, ଧ୍ୱଂସ, ରକ୍ତ, ଝଡ଼, ନିର୍ଯାତିତ ପ୍ରଭୃତି ପ୍ରଥାସିଦ୍ଧ ବାମପନ୍ଥୀ ଶବ୍ଦକୁ ନେଇ ଯେଉଁ ବିପ୍ଳବୀ କବିତା ଲେଖନ୍ତି ତା'ର ସ୍ୱର ମଧ୍ୟ ଶୁଣିବାକୁ ମିଳେ ନାହିଁ । ଏଥିରେ ଥାଏ କୋମଳ ମଧୁର ଅନୁଭବ, ମିତ୍ରଦୃଷ୍ଟି, ଉଦାର ମାନବିକ ଭାବନା, ସୌନ୍ଦର୍ଯ୍ୟବୋଧ, ଆତ୍ମାର ଅନାହତ ସ୍ୱର ଏବଂ ଜୀବନ ଓ ଜଗତକୁ ଜାଣିବାର ଅନନ୍ତ ଆକାଂକ୍ଷା । ପୃଥିବୀର ସବୁ ମଣିଷ ଜାତି, ମୋ ସମାଜ, ମୋ ଦେଶର ଉଜ୍ଜ୍ୱଳ ମୁହଁ, ଆଗାମୀ ସମାଜର ନୂତନ ଖସଡ଼ା, ସମାଜ ଓ ସଂସ୍କାରକୁ ଉନ୍ନତତର କରିବା ଭାବ, ମଣିଷ ଭିତରେ ଆହୁରି ଆହୁରି ମାନବିକତା ଭରି ଦେବାର ବ୍ୟାକୁଳତା ସହିତ କଳ୍ପଲୋକର ଭାବନାକୁ ପ୍ରକାଶ କରିବାରେ ଏ କବିର ନିଷ୍ଠା କିଛି କମ୍ ନ ଥାଏ । ଏମିତି କବି ସବୁ ଯୁଗରେ ସବୁ ସାହିତ୍ୟରେ ନଗଣ୍ୟ । ଏଇ ସୂତ୍ରରେ ସାଂପ୍ରତିକ ଓଡ଼ିଆ କବିତାକୁ ବିଚାର କଲେ ଖୁବ୍ କମ୍ କବିଙ୍କୁ କବି ଆଖ୍ୟା ଦିଆଯାଇ ପାରିବ । ଓଡ଼ିଆ ସାହିତ୍ୟରେ ସାଂପ୍ରତିକ କାଳରେ ସ୍ୱଳ୍ପ ସଂଖ୍ୟକ ଏ

ଧରଣର ସତ୍‌କବି ଅଛନ୍ତି । ସେମାନଙ୍କୁ ସାଂପ୍ରତିକ ଓଡ଼ିଆ କବିତାର ବିମୁଗ୍ଧ ପାଠକମାନେ ଅବଶ୍ୟ ଚିହ୍ନିଛନ୍ତି । ଆଉ ଯେଉଁ କବିଗଣ ରହିଲେ ସେମାନଙ୍କ ସଂପର୍କରେ ବିଶିଷ୍ଟ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଉକ୍ତି ଉଦ୍ଧାର କଲେ ସହଜରେ ବୁଝିହେବ । ତାହା ହେଲା,

‘‘ରାଜନୀତି କ୍ଷେତ୍ରରେ ଭାରତର ନବ ଲବ୍‌ଧ ସ୍ୱାଧୀନତାର ଅଯଥା ଫାଇଦା ଉଠାଇ କେତେକ ପଙ୍ଗପାଳ ଓ ଟାଉଟର ଶ୍ରେଣୀର ଲୋକ ଯେପରି ନାନା ହଟଚମଟ ବିଦ୍ୟା ଦେଖାଉଛନ୍ତି, ଇଆଡ଼େ ସାହିତ୍ୟ କ୍ଷେତ୍ରରେ ସେପରି ଦଳେ, ‘ମଂଦ କବି ଯଶଃ ପ୍ରାର୍ଥୀ’ ଏଇ ସୁଯୋଗରେ ହଠାତ୍ ରାତାରାତି କବି ପାଲଟି ଯିବା ପାଇଁ ଲଂପଝଂପ ଦେବା ଆରଂଭ କରି ଦେଇଛଂତି । ତେଣୁ ଆଧୁନିକ କବିତାର ଯାତ୍ରାପଥ ଆଜି ଯେପରି ଉନ୍ମୁକ୍ତ ଓ ବାଧାହୀନ, ସେଇପରି ବିପଦସଂକୁଳ ମଧ୍ୟ ।

(‘କବିତା-୧୯୬୨’ : ଦ୍ୱିତୀୟ ମୁଦ୍ରଣ - ୧୯୭୧, ପୃଷ୍ଠା : ୨୭୭-୨୭୮ )

ସଂପ୍ରତି ଓଡ଼ିଆ ସାହିତ୍ୟରେ କବି ବହୁତ । ପ୍ରଚୁର କବିତା ଲେଖାଯାଉଛି । ସହରଠାରୁ ଆରମ୍ଭ କରି ଓଡ଼ିଶାର ଗଳିକନ୍ଦି ପର୍ଯ୍ୟନ୍ତ ସବୁଠି କବିତା ପାଠୋତ୍ସବ ଅନୁଷ୍ଠିତ ହେଉଛି । ଏପରିକି ଅସହ୍ୟ ଶୀତ ସମୟରେ ନୂଆ ବର୍ଷକୁ ସ୍ୱାଗତ ଜଣାଇବା ପାଇଁ ରାତି ଅନିଦ୍ରା ରହି ଆଖି ଲାଲ କରି କବିମାନେ ମଧ୍ୟରାତ୍ରି-କବିତା-ପାଠୋତ୍ସବରେ ଯୋଗଦେବା ସାଂପ୍ରତିକ କବିତା ପ୍ରତି ସେମାନଙ୍କ ନିଷ୍ଠା ସୂଚିତ କରେ ଆଉ ସାହିତ୍ୟ ସଭା ସହିତ ପ୍ରାୟ କବିତା ପାଠୋତ୍ସବ ହେଉଅଛି ଓ ଯେତେ କବି ସେଥିରେ ଯୋଗ ଦେଉଛନ୍ତି, ସେ ସମସ୍ତଙ୍କୁ କବି ଭାବରେ ଗଣନା କରାଗଲେ ଏ ସଂଖ୍ୟା ଦୁଇହଜାରକୁ ଟପିଁଯିବ ନିଶ୍ଚୟ । ସାଂପ୍ରତିକ କାଳର କବିସଂଖ୍ୟା ଦେଖିଲେ ମନେହୁଏ ଓଡ଼ିଆ ସାହିତ୍ୟର ଆରମ୍ଭରୁ ଏଯାବତ୍ ଆମ ସାହିତ୍ୟରେ ଯେତିକି ଲେଖକ ଅଛନ୍ତି, ସାଂପ୍ରତିକ କାଳରେ କେବଳ ତାଠାରୁ ଅଧିକ ‘କବି’ ରହିଛନ୍ତି । ଏତେ କବିତା ଲେଖା ହେବା ସତ୍ତ୍ୱେ ବି କବିତା ପ୍ରତି ପାଠକ ମହଲରେ ସେମିତି ଶ୍ରଦ୍ଧା ପରିଲକ୍ଷିତ ହେଉନାହିଁ । ବରଂ, କବିତାର ପାଠକ ସଂଖ୍ୟା କମି କମି ଯାଉଛି । ଯେଉଁ ପତ୍ରିକାରେ କବିତା ଯେତେ ଅଳ୍ପ ବାହାରୁଛି, ସେ ପତ୍ରିକାର କାଟତି ସେତେ ଅଧିକ । ଏଥିରୁ ପାଠକେ କେତେଦୂର କବିତା ପ୍ରତି ବିମୁଖ ତାହା ସହଜରେ ଅନୁମାନ କରାଯାଇପାରେ । ପୂର୍ବରୁ କବି ପ୍ରତି ଓ କବିତା ପ୍ରତି ପାଠକର ଯେଉଁ ସ୍ୱତଃ ଶ୍ରଦ୍ଧା ଝରି ପଡୁଥିଲା, ଆଜି ତାହା ଅନେକ ପରିମାଣରେ କମି ଯାଇଛି । ଏଭଳି ଅବସ୍ଥା ପାଇଁ ଦ୍ରୁତ ଶିଳ୍ପ ବିକାଶ, ବୈଷୟିକ ଶିକ୍ଷା ଓ ବିଜ୍ଞାନର ଅଗ୍ରଗତିକୁ କିଛି ମାତ୍ରାରେ ଦାୟୀ କରାଯାଇପାରେ । ଏପରି ଅବସ୍ଥା ବିଂଶ ଶତକର ମାର୍କିନ୍ ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ । ଏ ସଂପର୍କରେ ମାର୍କିନ୍ କବି ସମାଲୋଚକ ଜାରେଲ (Randall Jarell)

ତାଙ୍କର Modern Poets ଗ୍ରନ୍ଥରେ ଅବତାରଣା କରିଛନ୍ତି । ଏଇ ସମାଲୋଚକଙ୍କ ଉକ୍ତିକୁ ଆମକୁ ଭଲଭାବରେ ବୁଝାଇବାକୁ ଯାଇ ଡକ୍ଟର ଦାଶରଥି ଦାସ ଲେଖିଛନ୍ତି, ''ଆମେରିକାରେ କବି ପାଠକ ସଂପର୍କ ଯେଉଁଠି ପହଞ୍ଚିଛି, ଓଡ଼ିଶାରେ ଆମେ ସେହି ଦିଗରେ ଯାତ୍ରା ଆରମ୍ଭ କରି ଦେଇଛେ । ସେହି ତିକ୍ତ ସଂପର୍କର ପରିଣାମ ଆମେରିକା ଭୋଗୁଛି । ଭବିଷ୍ୟତରେ ଆମେ ଭୋଗିବା । ଆମେରିକାରେ କବି ଆଜି Comic Figure ଟିଏ ।'' ( ଆଧୁନିକ କାବ୍ୟ ଜିଜ୍ଞାସା: ଚିତ୍ରକଳ୍ପ-ଦ୍ୱିତୀୟ ସଂସ୍କରଣ -୧୯୯୧-ପୃଷ୍ଠା :୪୨୩ ) କାବ୍ୟ କବିତା ବିଳାସରେ ସମୟ ଅତିବାହିତ କରିବାକୁ ଏବେ ମଣିଷ ଚାହୁଁନାହିଁ । ସମସ୍ତେ ଆଜି ଆପଣାର କାମଧନ୍ଦା ଓ ନିଜ ଚିନ୍ତାରେ ଏପରି ବ୍ୟସ୍ତ ଯେ କବିତା ପଢ଼ିବାକୁ କାହାର ଆଉ ବେଳ ନାହିଁ ।

ସାଂପ୍ରତିକ କବିତାରେ କବିର ଆପଣା ଉପଲବ୍ଧିର ସ୍ୱର ଆଜି ସୁଦୂର ପରାହତ । କାରଣ ଆମ କବିମାନେ ଆପଣା ଉପଲବ୍ଧିର କଥା କହିବା ଅପେକ୍ଷା ପାଶ୍ଚାତ୍ୟ ସାହିତ୍ୟର ମାଲଗୋଦାମରୁ କିଛି ଧାର ଆଣି ନକଲି ଇଲିୟଟ୍, ନକଲି ଏଜରା ପାଉଣ୍ଡ ଓ ନକଲି ବଦଲେୟାର ସାଜିବାକୁ ଅଧିକ ଉଚିତ ମଣୁଛନ୍ତି । କବିତା ଆଜି ଆପଣା ଉପଲବ୍ଧିର ସାମାଗ୍ରୀ ହୋଇ ନଥିବାରୁ କବି ପାଠକ ନିକଟରେ ତଥା ନିଜ ପାଖରେ ମଧ ଅବୋଧ ହୋଇ ପଡୁଛି । ବେଳେବେଳେ ସେ ନିଜେ କ'ଣ ଲେଖିଛି ତାକୁ ପଢ଼ି ବୁଝିବାକୁ ନିଜେ ବି ସକ୍ଷମ ହୋଇ ପାରୁନାହିଁ । ଯିଏ ଆପଣାର ଅନୁଭବରେ ପ୍ରକଟିତ ହେବାକୁ ଶିଖିନାହିଁ, ସିଏ ଯେତେ ଯାହା ବାହାରୁ ଆଣି ଆପଣାର କବିତାକୁ ରୂପ ଦେଲେ ସୁଦ୍ଧା ତାହା ଆପଣାର ସ୍ୱକୀୟତା ହରାଇ ଏକ ଅଜବ ଆକାର ଧାରଣ କରୁଛି । ସମକାଳୀନ କବିତାର ଏଭଳି ଅବସ୍ଥାକୁ ଲକ୍ଷ୍ୟ କରି ବିଶିଷ୍ଟ କବି ସଚ୍ଚିଦାନନ୍ଦ ରାଉତରାୟ କହିଛନ୍ତି ''କେହି କାହାକୁ କହିବାକୁ ନାଇ । ଯାହାର ଯାହା ମନକୁ ଆସିଲା, ସେ ତାହା ଲେଖିଗଲା । କିଏ 'ରିଫ୍ୟୁଜି ବାଳିକା'କୁ ଚାହିଁଲାଣି ତ କିଏ ତେଣେ ପ୍ରେମର ଭାତହାଣ୍ଡିରେ ଚାଉଳ ଫୁଟାଇଲାଣି । କିଏ 'ଦୁଧିଆଳି ରାତି ଆଡ଼କୁ ପିଠି କରି ଶୋଇଲାଣି' ତ କିଏ 'ବିଅରରେ ସୋଡ଼ା ମିଶାଇ' ପିଇଲାଣି । ଏଇ ହେଉଛି ଅବସ୍ଥା । ନାନା ପ୍ରକାର ବାଥୋ, କ୍ଲିସେ (Cliche) କଥକତା (Verbosity) ,ଅଚଂଛା ଶବ୍ଦ (Unpolished words ) ପ୍ରୟୋଗ ଦେଖିଲେ ମୁଁ ଓଡ଼ିଆରେ ଜଣେ ଆଧୁନିକ କବି ବୋଲି ଲଜ୍ଜାବୋଧ କରେ । '' ('କବିତା-୧୯୬୨' : ଦ୍ୱିତୀୟ ମୁଦ୍ରଣ - ୧୯୭୧ ପୃଷ୍ଠା ୨୭୭) ଏପରି ଖାପଛଡ଼ା ଭାବକୁ ନେଇ ଲେଖା ଯାଉଥିବା କବିତା ପ୍ରତି କାହିଁକି ବା କୌଣସି ପାଠକର ପଢ଼ିବା ପାଇଁ ଆଗ୍ରହ ସୃଷ୍ଟି ହେବ ?

ସାଂପ୍ରତିକ କବି କେବଳ ସାଧାରଣ ପାଠକ ପାଖରେ ଅବୋଧ ନୁହେଁ, ଅଧିକନ୍ତୁ ସେମାନେ ତାଙ୍କର ସହଧର୍ମୀ କବିମାନଙ୍କ ପାଖରେ ମଧ ଅବୋଧ । ଏହାର ପ୍ରଥମ କାରଣ

ହେଲା କେହି କାହାକୁ ସମ୍ମାନର ସହ ପଢ଼ିବାକୁ ରାଜି ନୁହନ୍ତି ଓ ଅଧିକାଂଶ କେହି କହନ୍ତୁ ବା ନ କହନ୍ତୁ, ନିଜେ ନିଜକୁ ଆଧୁନିକ ଓଡ଼ିଆ କବିତାର ମୋଡ଼ ପ୍ରବର୍ତ୍ତକ ବୋଲି କହିବାକୁ କୁଣ୍ଠାବୋଧ କରୁନାହାନ୍ତି । ଏଠାରେ ଏ ପ୍ରସଙ୍ଗରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପକ୍ଷରୁ ୧୯୯୫ ମସିହା ମଇ ୨୪, ୨୫, ୨୬ ତାରିଖରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଠାରେ ଅନୁଷ୍ଠିତ ହୋଇଥିବା ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତା ସେମିନାର ଓ ନୂତନ କବିତା କର୍ମଶାଳାକୁ ସ୍ମରଣ କରାଯାଇପାରେ । ଏହି କର୍ମଶାଳାର ଶେଷ ଅଧିବେଶନରେ ଜଣେ କ୍ଷମତାପ୍ରାଣ କବି ଯୋଗ ଦେଇଥିଲେ । ସେଠାରେ ତରୁଣ କବିଗଣ ସୁନ୍ଦର କବିତାମାନ ପଢ଼ିଲେ । ସବୁଠୁ ବିଡ଼ମ୍ବନାର ବିଷୟ ହେଉଛି, ଯିଏ ଯାହା କବିତା ପଢ଼ିଲେ, ଅତିଥି ହୋଇ ବସିଥିବା ସେଇ କ୍ଷମତାପ୍ରମତ୍ତ କବି କହିଲେ, ''ଏଠାରେ ଯାହାସବୁ କବିତା ପଢ଼ାଗଲା,ସେଥିରେ ଅନେକାଂଶରେ ମୋ କବିତାର ପ୍ରଭାବ ପଡ଼ିଛି ।'' ଆମ ସାହିତ୍ୟରେ ଅନେକ ସାଧନାଶୂନ୍ୟ କ୍ଷମତା ପ୍ରମତ୍ତ ବାକ୍ସର୍ବସ୍ୱ କବିର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ।

ସାଂପ୍ରତିକ ଓଡ଼ିଆ କବିତା ଜୀବନର ମୋହଭଙ୍ଗର କବିତା । ଏ କବି ପାଖରେ ପ୍ରେମ, ଶ୍ରଦ୍ଧା, ସହାନୁଭୂତି ଓ ମାନବିକ କରୁଣା ବିରଳ ବିଷୟ । ଏ କବିତାରେ କବିଙ୍କ ମାଂସଲୋଭ ପ୍ରେମ ଆକାର ଧାରଣ କରିଛି, ଉଦ୍ଦେଶ୍ୟ ସାଧନର ଆବଶ୍ୟକତା ସକାଶେ ଶ୍ରଦ୍ଧା ଯେମିତି ରହିବା ଦରକାର ସେମିତି ରହିଛି, ସହାନୁଭୂତି ଶଠତା ଭିତରେ ହଜିଯାଇଛି ଏବଂ ମାନବିକ କରୁଣା ଏକ ଆଭିଧାନିକ ଶବ୍ଦ ଭାବରେ ବଞ୍ଚି ରହିଛି । ଏଠାରେ ଯେଉଁ ସବୁ ମୋହଭଙ୍ଗଗୁଡ଼ିକୁ କବି ତା କବିତାରେ ଏକାଠି କରିଛି, ସେସବୁ ହେଉଛି ୟୁରୋପ ଆମଦାନୀ ମୋହଭଙ୍ଗ । ସେ ମୋହଭଙ୍ଗ ସହିତ ଆମ ଭୂଇଁର ମୋହଭଙ୍ଗର କୌଣସି ସମ୍ବନ୍ଧ ନାହିଁ । ଆମର ଏଠି କ୍ଷୁଧାର ତାଡ଼ନାରୁ, ଅନାହାରରୁ ଓ ବଞ୍ଚିବାର ସର୍ବନିମ୍ନ ସୁବିଧାରୁ ବଞ୍ଚିତ ହୋଇ ମୋହଭଙ୍ଗ ଘଟୁଥିବାବେଳେ, ସେଠି ବିଳାସର ପ୍ରାଚୁର୍ଯ୍ୟରୁ ଜୀବନର ମୋହଭଙ୍ଗ ଘଟୁଛି । ଆମ କବିଏ କିନ୍ତୁ ଏଠାକାର ମୋହଭଙ୍ଗକୁ ସେମାନଙ୍କ କବିତାରେ ନ ଦେଖି ଅତି ବିଚିତ୍ର ଭାବରେ ସେଇ ବିଦେଶୀ ମୋହଭଙ୍ଗର କବିତା ଗାନ କରୁଛନ୍ତି । ଚାହିଁଥିଲେ କବି ଏଇ ଭୂମିରେ ଜୀବନର ଯେଉଁ ବ୍ୟର୍ଥତା, ଯେଉଁ ମୋହଭଙ୍ଗ ଘଟୁଛି, ତାକୁ କବିତାରେ ରୂପ ଦେଇ ପାରିଥାନ୍ତା । ଏଠାରେ କିଛି ଗୋଟାଏ ନୂତନତାର ସୂତ୍ରପାତ ହୋଇଥାନ୍ତା । ଆମ ମଣିଷ, ତା'ର ସମାଜ, ଭୌଗୋଳିକ ପରିବେଶ ଓ ମାନସିକ ଅବସ୍ଥା ଭିତରୁ ବି କିଛି ଗୋଟାଏ ନୂଆ ଚେତନା ବାହାରିଥାନ୍ତା । ଆମ କବିଏ ତା ନକରି ମାଗି ଆଣିଲେ ବିଦେଶୀ ଚେତନା, ବିଦେଶୀ ଭାବ ଓ ତାକୁ ଏଠାରେ ପରମ ପଦ କହି କବିତାରେ ପ୍ରୟୋଗ କରି ପାଠକକୁ ଭୂଆଁ ବୁଲାଇଲେ । ଏଠାରେ ମନେରଖିବାକୁ ହେବ ଯେ ଭିକ୍ଷୁକତ୍ୱ ଦ୍ୱାରା କେହି କେବେ ଆପଣା ସାହିତ୍ୟର ଟେକ ରଖିପାରେ ନାହିଁ, ସାମୟିକ ଭାବରେ ଯାହା କେବଳ ଉଦର ପୋଷଣ କରିପାରେ ମାତ୍ର ।

ସାଂପ୍ରତିକ କବିମାନେ ସାଧାରଣ ମଣିଷ ସହିତ ପ୍ରତ୍ୟକ୍ଷ ସଂପର୍କ ରଖିବାକୁ ଆଦୌ ଇଚ୍ଛା କରନ୍ତି ନାହିଁ । ସେ ନିବୁଜ କୋଠରୀରେ, ନିରାପଦରେ, ମହାନଗରୀରେ ରହି ଜନଜୀବନକୁ ଯୋଜନ ଯୋଜନ ଦୂରରୁ ଦେଖେ । ଆମର ଏ ଦରିଦ୍ର ଦେଶରେ ସେ ଖୋଜେ ସବୁ କିଛି ନିରାପତ୍ତା । ଗାଡ଼ି, କୋଠାବାଡ଼ି, ମୋଟା ଅଙ୍କର ବ୍ୟାଙ୍କ ଜମା, ସୁଷମ ଖାଦ୍ୟ, ଉତ୍ତମ ସ୍ୱାସ୍ଥ୍ୟସେବା, ମୃଦୁ ପାନୀୟ, କଠିନ ପାନୀୟ, ସୁନ୍ଦରୀ ନାରୀ, ବଞ୍ଚିଥିବା ଯାଏ କ୍ଷମତା- ଏମିତି ସବୁ କିଛି ସୁବିଧା ସୁଯୋଗ ତା'ର ଦରକାର । ଏଣେ କବିତାରେ ଲେଖେ ମୂଲ୍ୟବୋଧ, ଫୁଙ୍ଗୁଳା ମଣିଷ, ଲଙ୍ଗଳା ପିଲା, ଭଙ୍ଗାଘର, ତୋରାଣି, ଗାଁ ନଈ, ପକ୍ଷୀର କାକଳି, ତାଳିପକା ମନ, କୋଳିଗଛ ଇତ୍ୟାଦି । ସାଧାରଣ ମଣିଷର ଦୁଃଖ ସଂପର୍କରେ କୌଣସି ଉପଲବ୍ଧି ନଥାଇ, ମଣିଷର ଦୁଃଖ ପ୍ରତି ସହାନୁଭୂତିଶୀଳ ନହୋଇ, କବିତାରେ ଏ ଧରଣର ଛଳନା ହେଉଛି ସାଂପ୍ରତିକ ଓଡ଼ିଆ କବିତାର ବଶେଷ ଆକର୍ଷଣ ।

ସହୃଦୟ ଭାବ ନେଇ ଜଗତକୁ, ଜୀବନକୁ ଓ ମଣିଷକୁ ବୁଝିବା ହେଉଛି କବିର ଧର୍ମ । ହୃଦୟରେ ମଣିଷକୁ ବୁଝିବାକୁ ଆଜି ଆମ କବିମାନେ ଆଉ ଚାହୁଁ ନାହାନ୍ତି । ମସ୍ତିଷ୍କ ଦେଇ ବୁଦ୍ଧି ଖର୍ଚ୍ଚ କରି ସଂପ୍ରତି କବି ଜୀବନର ଓ ଜଗତର ଛିଦ୍ର ଅନ୍ୱେଷଣ କରୁଛି । ଏଠାରେ ଯେମିତି କେହି ନ ବୁଝନ୍ତି ସାଂପ୍ରତିକ କବି ଏକ ହୃଦୟହୀନ ମଣିଷ । ବରଂ, କୁହାଯାଇପାରେ ଯେ ଆଜି କବିର ହୃଦୟ କ୍ରମଶଃ ସଂକୁଚିତ ହୋଇଯାଉଛି । ତା'ର ବହିର୍ଦୃଷ୍ଟିର କେବଳ ପ୍ରସାର ଘଟୁଛି ଓ ସେ ବୁଦ୍ଧିର କରାମତି ଦେଖାଇ ବଞ୍ଚୁଛି । ଫଳରେ ତା'ର କବିତାରେ ବୌଦ୍ଧିକ ଏକଛତ୍ରବାଦର ବିକାଶ ହେଉଛି । ସଂପ୍ରତି କବିତା ହୋଇଛି କିଛି ବୁଦ୍ଧିଆ ଲୋକଙ୍କର ବୁଦ୍ଧିର ବିଳାସ । ଏହି ବୁଦ୍ଧିର ଯାଦୁଖେଳ ଦେଖାଇ ସାଂପ୍ରତିକ କବି ଆପଣା ସୁଖ ସୁବିଧା ହାସଲ କରିବାରେ ଧୂରନ୍ଧର ।

ସାଂପ୍ରତିକ କବିତା ଚିରାଚରିତ ଯତି, ଯମକ, ଉପଧା ଓ ଛନ୍ଦ ନିୟମରୁ ମୁକ୍ତି ଲାଭ କରିଛି, ଭାବପ୍ରକାଶର ଅବାଧ ସ୍ୱାଧୀନତା ତାକୁ ମିଳିଛି । ଫଳରେ ଯେ କେହି କଲମ ଧରିବା କ୍ଷଣି କବିତା ଲେଖିପାରୁଛି । କବି ହେବା ପାଇଁ ଯେଉଁ ସାଧନା ଦରକାର, ପ୍ରତିଭା ଦରକାର ତା'ର ଅସଦ୍ ବ୍ୟବହାର ହେଉଛି । ଏଭଳି ଅବାଧ ସ୍ୱାଧୀନତା ସ୍ୱଚ୍ଛନ୍ଦ ଭାବପ୍ରକାଶରେ ସହାୟକ ହେବା ପରିବର୍ତ୍ତେ ବାଜେ କବିତା ରଚନା ପାଇଁ ସମ୍ଭାବନା ଆଣି ଦେଇଛି । ତା'ଛଡ଼ା କବିମାନେ ଇଲିୟଟଙ୍କ ନାଁ ଧରି ତାଙ୍କର 'ଚେତନାର ବିଚ୍ଛେଦ' ଓ 'ଚେତନାର ସମନ୍ୱୟ' କାବ୍ୟତତ୍ତ୍ୱକୁ ଅପପ୍ରୟୋଗ କରୁଛନ୍ତି । ସେଥିପାଇଁ କ୍ଷୋଭ ପ୍ରକାଶ କରି ପ୍ରସିଦ୍ଧ କବି ସଚ୍ଚିଦାନନ୍ଦ ରାଉତରାୟ ଲେଖିଛନ୍ତି ; '' ସମକାଳୀନ ଓଡ଼ିଆ କବିତା କ୍ଷେତ୍ରରେ ଏଇ କାବ୍ୟସୂତ୍ରଟିର ବେଳେବେଳେ ଯେପରି ଅପପ୍ରୟୋଗ ଘଟୁଚି, ତାହା ପ୍ରତ୍ୟେକ ବିଦଗ୍ଧ କାବ୍ୟରସିକ ପକ୍ଷରେ ବାସ୍ତବିକ

ପୀଡ଼ାଦାୟକ।'' (ନବରବି-ନଭେମ୍ବର-୧୯୭୦-ପୃଷ୍ଠା -୫) ସେ 'ଚେତନାର ବିଚ୍ଛେଦ' ଅଂତେ ଶିରୋନାମାରେ ମଧ୍ୟ ଏକ କବିତା ଲେଖି ଆମ କବିମାନଙ୍କୁ ଇଙ୍ଗିତରେ ଅନେକ କଥା କହିଛନ୍ତି । ଏଠାରେ ସେଇ କବିତାଟିର କିୟଦଂଶ ମୁଁ ଉଦ୍ଧାର କରୁଛି । କବିତାଟି ଦୀର୍ଘ ହେଲେ ବି ପାଠକର ପ୍ରାଣକୁ ଛୁଇଁବ । ତାହା ଏହିପରି ;

''ବଢ଼ିଲାଣି ଆକୁଦର, ମିଳୁ ନାଇ ଚିନି
ଦୁର୍ଲଭ ସେ ଗଂଗା ଜଳୁ ହେଲା କିରାସିନୀ,
କବିତାର ଫାଂକେ ଫାଂକେ ଜମେ ସେଇକଥା,
ଅଷ୍ଟମ ସଂତାନ ସାର୍ଟେ ପଡ଼େ କେତେ ଲଥା,
ପଂଚମର ନଳୀପେଣ୍ଟେ ଚାଲେନାଇ ଛୁଂଚି,
କବିତାରେ 'ଚେତନାର ବିଚ୍ଛେଦ' ହଟିଚି ।
ବିଚ୍ଛେଦ ବା ବ୍ୟବଚ୍ଛେଦ ଅବା ପୂର୍ଣ୍ଣଚ୍ଛେଦ
ଯାହା ହେଉ କବିତା ଯେ ହୋଇଛି ଜବ୍‌ଦ ।
ମାତ୍ର ତାର ରୂପ ଭେକ ହେଉନି ତ ଚିହ୍ନି
ପାଣିମିଶା ଦୁଧ ଅବା ଦୁଧମିଶା ପାଣି ।
ନାଇଁ ଆଉ ଭୟ ଚିଂତା,ନାଇ ଭଲ, ମନ୍ଦ,
ଭାରତୀଂକ ବୀଣା-ତାରୁ ମଲାଣି ଧ୍ରୁପଦ ।
ଶୁଭେ ଖାଲି ଖିଆଲର ତେଢ଼ା ମେଢ଼ା ଗତ,
ଯେଉଁ ପରି ଆଗପଛ ବାହାଡ଼ା ବା ଦାଂତ ।
ହସିଲେ କାଂଦିବା ପରି, କାଂଦିଲେ ତା ହସ,
ଭଂଜଠାରୁ ରାଉତରା ବିରାଟ ସର୍କସ !
(ପଥେ ଇଲିୟଟ,ସାର୍ତ୍ରେ, କାମ୍ୟୁ, ଡ଼େଲୁଇସ ।)
କିଛି ଗ୍ରାମ୍ୟଗୀତି କିଛି ସିନେମାର ରସ,
କୁମୁଦ କହ୍ଲାର ସାଥେ କିଛି କ୍ୟାକ୍‌ଟସ ।
ସବୁ ମିଶି କବିତା ଯେ ହୋଇଛି ପଳାନ୍ନ
ଧୋତି ସଂଗେ ନେକ୍‌ଟାଇ କଂଠର କୌପୀନ !!
କେଉଁଠି ମାଂକଡ଼ ଚିଦ୍ ମାରେ ଯଦି ଜହ୍ନ
ଅନ୍ୟଠାରେ ଖରାମାନେ ବନି ପହିଲିମାନ
ଟଣାଭିଣା କରନ୍ତି ଯେ ବିଚରା କବିଂକି,

ପୁଣି ନାଚଂତି ଖେମଟା ।
କାହାପାଇଁ କେତେଜାଗା ହେଲାବେଳେ ବଂଟା -
ପୂର୍ଣ୍ଣ କଳସର ସ୍ଥାନ ମାଗେ କଣା ଲୋଟା ।
(ପ୍ରିୟା ସ୍ତନ ଉପମାକୁ ଲୁଟଇ ସପେଟା)
ଗଂଧ ମୂଷିକର ସ୍ଥାନ ସର୍ବାଗ୍ରେ ରକ୍ଷିତ -
ପ୍ରେମିକାର ଚାଲି ସଙ୍ଗେ ହେବାକୁ ତୁଳିତ ।
ଏବଂ ଯେତେ ଭଂଗାତୁଟା 'ବ୍ରାଂଡ଼ିର ବୋତଲ'
ଲୋଡ଼ଂତି ତୁଳନା ପାଇଁ 'ମାନସୀ କପାଳ' ।
'ସଜନା ଛୁଇଁ' ଯେ ଚାହେଁ ଲିଙ୍ଗର ଆସ୍ଥାନ
ଚରଣାୟୁଧ ମାଗଇ ମୟୂର ଆସନ ।
ଚେତନାର ସଂମିଶ୍ରଣ ଘଟାଇବା ପାଇଁ
'ଗୋପୀଂକ ସ୍ତନର ଖୁଂଟେ' ବାଂଧେ କେ 'କହ୍ନାଇ'
ବଳଦ ପରିକା, ଏବଂ ରାଧା ରକ୍-ଏଣ୍ଡ-ରୋଲ
ନାଚି ନାଚି ଥକିଯାନ୍ତି, ବେଦମ ବିହ୍ବଳ ।
କଟକରେ ଛକେ ଛକେ ଦୁର୍ଗାମେଢ଼ ପରି
ଭବାନୀ ଦିଶଂତି ଯଥା କଲେଜ ସୁନ୍ଦରୀ ।

× × ×

ଭାରତୀ ବି ଘଡ଼ି ଘଡ଼ି ବଦଳାନ୍ତି ବେଶ
ବହୁତ କିସମ ଅଂଗା ଭଲିଭଲି ଡ୍ରେସ ।
ସ୍ୱର ବି ବଦଳି ଯାଏ ବୀଣାରେ ତାଙ୍କର
କେବେ ଭୈରବୀ, କେବେ ତୋଡ଼ୀ ବା ମଲ୍ଲାର ।
କେ କବି ବକ୍ତୃତା ଝାଡ଼େ କବିତାର ନାମେ
କାଂସ୍ୟରବ-ଜିଣା କଣ୍ଠେ ଯଥା କ୍ଲାସରୁମେ -
'ଶୁଣ, ଶୁଣ, କହୁଚି ମୁଁ ଯେ ପୋଖରୀ କଥା
ଲଂବ ତାର ଏତେ ପୁଣି ପ୍ରସ୍ଥ ଏତେ ବି ତା' ।'
ଅନ୍ୟ କିଏ କଷେ ଅଂକ, କିଏ ଲେଖେ ରାୟ,
କେ ଦିଏ ବାରୁଦ ଛୁଂକ ଗଂଧକ କେ ହାୟ !
କାହିଁ ପୁଣି 'ମେଂଢ଼ା ପରେ ବସି ଏକ ମାଛି

ସଂଜ୍ଞବେଳେ' ସ୍ୱର୍ଗଦ୍ୱାର ଆଡ଼େ ଚାଲିଅଛି ।
ଏହିପରି ଚିତ୍ର ଆଉ ରୂପକର ହାର
ଉତ୍କଳ ଭାରତୀ ଗଳେ ଶୋଭେ ସୁପ୍ରଚୁର ।
ଜୀବନର ଖରଗତି, ଗଭୀର ଉତ୍ତାପ
(ବହୁଳ ବିସ୍ତୃତି ତାର, ବହୁବର୍ଣ୍ଣ ରୂପ......)
ସମସ୍ତ ହରାଇ କାବ୍ୟ ହୁଏ ଏକ ଖୋପ
ସବୁ ବାଚାଳତା, ସବୁ ଦୈର୍ଘ୍ୟ ପ୍ରସ୍ଥ ପାଇଁ
କବିତାଟା ଯାକ ଖାଲି ଲଂବଳଂବ ଛାଇ !!
ସବୁଖାଲି ଧୂଆଁବାଣ, ଏକ ବଡ଼ 'ନାହିଁ' ।

(ନବରବି-ନଭେମ୍ବର-୧୯୭୦-ପୃଷ୍ଠା-୫ ରୁ ୮)

× × ×

ପାଠକେ ଏଥିରୁ ଓଡ଼ିଆ କବିତା କେଉଁ ସ୍ତରରେ ପହଞ୍ଚିଛି ଅବଶ୍ୟ ଜାଣି ପାରିବେ । ଏ ସଂସାରରେ କେହି କାହାପାଇଁ ନୁହନ୍ତି । ସମସ୍ତେ ଆପଣା ମାର୍ଗରେ ଆପେ ଧାଇଁଛନ୍ତି । ଯଦି କେଉଁଠି ବା ମିଳିଯାଏ ସୁନାହରିଣକୁ ଧରିବେ ବୋଲି । ସେ ସୁନାହରିଣ କେବେ ନଥିଲା, ଏବେ ବି ନାହିଁ; କିନ୍ତୁ ସମସ୍ତେ ଏ ମାୟାମୃଗର ପିଛା କରିଛନ୍ତି । ତେଣୁ 'ସାଂପ୍ରତିକ ଓଡ଼ିଆ କବିତା କାହା ପାଇଁ ?' - ଏହିପରି ଏକ ଅନିବାର୍ଯ୍ୟ ପ୍ରଶ୍ନର କ'ଣ ବା ଉତ୍ତର ଦିଆଯାଇପାରେ । କେବଳ ଏତିକି କହିଲେ ଯଥେଷ୍ଟ ହେବ, ସାଂପ୍ରତିକ କବି ଆପଣା ମାର୍ଗର ସାଧକ । । ସେ ଆପଣା ପଥ ଆପେ ବାଛିବାକୁ ଧାଇଁଛି ଓ ଧାଇଁ ଧାଇଁ ପଡ଼ି ଯାଉଛି । ତା ପଥରେ କଣ୍ଟା ପଡୁ ବା ଫୁଲ ପଡୁ ସେ ପଡ଼ି ଉଠି ଧାଇଁଛି । ଏହା ଭିତରେ 'ସେ କାହାପାଇଁ' ତାକୁ ଏ ପ୍ରଶ୍ନ ପଚାରି ଲାଭ କ'ଣ ? ବରଂ,ସୁଧୀ ପାଠକେ ତା'ର ଏ ଅବସ୍ଥା ପ୍ରତି ଟିକେ ସହାନୁଭୂତିଶୀଳ ହେବା ବାଞ୍ଛନୀୟ ।

❑❑❑

# ଆଧୁନିକ କବିତା ସଂପର୍କରେ

●

ବ୍ରଜନାଥ ରଥ



ସୁନହଟ, ବାଲେଶ୍ୱର

ଆଧୁନିକ କବିତା କହିଲେ ମୁଁ ବୁଝେ, ଯେଉଁ କବିତାର ସ୍ୱରଲିପି ଲିପିବଦ୍ଧ ହୋଇଥିବ ଆଧୁନିକ ଢ଼ଙ୍ଗରେ, ଚିତ୍ରିତ ହୋଇଥିବ ଆଧୁନିକ ରଙ୍ଗରେ । କବିତାର ଅଙ୍ଗ ଓ ଆତ୍ମାରେ ଆଧୁନିକ ସମାଜର ଯନ୍ତ୍ରଣା ଓ ଆନନ୍ଦ ; କ୍ରୋଧ ଓ କାରୁଣ୍ୟ ସବୁ କିଛି ଫୁଟିଉଠିଥିବ ଆପଣାର ସ୍ୱାଭାବିକ ସ୍ୱଚ୍ଛନ୍ଦ ରୀତିରେ; କିନ୍ତୁ ଏ ଆଧୁନିକତା ସମୟର ଗତି ଓ ରୀତି ଅନୁଯାୟୀ ପରିବର୍ତ୍ତିତ ହେବାକୁ ବାଧ୍ୟ । ରାଧାନାଥଙ୍କ ସମୟର କବିତାରେ ଯେଉଁ ଆଧୁନିକତାର ରାଗ ଥିଲା, ତାହା ସଚ୍ଚିରାଉତରାଙ୍କ ବେଳକୁ ଭିନ୍ନ ହୋଇ ଯାଇଛି । ପୁଣି ସଚ୍ଚିବାବୁଙ୍କ କବିତାରେ ଯେଉଁ ଆଧୁନିକତାର ସ୍ପର୍ଶ, ତାହା ପୁଣି ଏବର କବିମାନଙ୍କ ଠାରୁ ଭିନ୍ନ । ପୁଣି ଜଣେ ଜଣେ କବିଙ୍କ ଦୀର୍ଘ ଜୀବନକାଳ ମଧ୍ୟରେ ସେମାନଙ୍କ ପ୍ରଥମ ରଚନାରେ ଯେଉଁ ଆଧୁନିକ ଜୀବନବୋଧର ସ୍ୱର ଅନୁରଣିତ ହୋଇଥାଏ, ତାହା ପୁଣି ହୁଏତ ୫୦/୬୦ ବର୍ଷପରେ ରଚିତ କବିତାମାନଙ୍କରେ ପରିବର୍ତ୍ତିତ ହୋଇ ଏକ ନୂଆ ଆଧୁନିକ ଜୀବନବୋଧକୁ ପ୍ରକଟ କରେ ନୂଆ ଭାବରେ ।

ତେଣୁ ଆଧୁନିକତା ଏକ ଆପେକ୍ଷିକ ଶବ୍ଦ । ଏହା ସମୟରୁ ସମୟାନ୍ତରକୁ ପ୍ରସରି ଯାଉଥାଏ ଭିନ୍ନ ଚେତନା ଓ ଭିନ୍ନ ରୂପ ନେଇ । ତା ସହିତ କବିତାବି ରୂପ ପରିଗ୍ରହ କରୁଥାଏ । ଜଣେ କବି ବା ତାର ଗୋଟିଏ କବିତାକୁ ବିଚାର କଲାବେଳେ ସେହି ସମୟରେ ସେ କେତେଦୂର ଆଧୁନିକ ଥିଲେ ବା ସେହି କବିତାଟି କେତେ ପରିମାଣରେ ଆଧୁନିକ ଥିଲା, ଦେଖିବାକୁ ପଡ଼ିବ ।

ବର୍ତ୍ତମାନର ଆଧୁନିକ ଚେତନା ଓ ଦୃଷ୍ଟିକୋଣକୁ ନେଇ ଆମେ ଯଦି ଅତୀତର କବି

ଓ କବିତାକୁ ବିଚାର କରି ଆଜିର ଆଧୁନିକତାକୁ ସେଥିରୁ ଖୋଜିବା, ତାହେଲେ ଆମେ ବିଫଳ ହେବା ନିଶ୍ଚୟ । ଏ ପର୍ଯ୍ୟନ୍ତ ଯେଉଁ ସମୀକ୍ଷକ ବା ଆଲୋଚକମାନେ ଯେଉଁ ଯେଉଁ କବିତାକୁ 'ଆଧୁନିକ' ବା 'ନୂତନ' ର ମୋହର ମାରି ମାର୍କେଟକୁ ଛାଡ଼ିଥିଲେ ବା ଯେଉଁ କବିମାନଙ୍କୁ 'ଆଧୁନିକ' କବିର ମୁକୁଟ ପିନ୍ଧାଇଥିଲେ, ସେମାନେ ଏବେ ଆଉ ଆଧୁନିକ କହିବେ କାହାକୁ ? କାରଣ ଏବେ ଆଉ ଗୋଟିଏ ନୂଆ ଶବ୍ଦର ଷ୍ଟାମ୍ପ ମରାହୋଇ ଗଲାଣି କିଛି ନୂଆ ପିଢ଼ିର କବିଙ୍କ ପିଠିରେ, ଯାହାର ନାମ 'ଆଧୁନିକୋତ୍ତର ବା ଉତ୍ତର ଆଧୁନିକ'; ଅର୍ଥାତ୍ 'ଆଧୁନିକ'ଙ୍କୁ ଟପି ଆସିଥିବା କାବ୍ୟସ୍ରଷ୍ଟା ।

ଏହା ପରେ ପୁଣି କ'ଣ କୁହାଯିବ, ଦେଖିବାକୁ ବାକି ରହିଲା ।

ଆଧୁନିକତା ଏକ ଫେସନ ନୁହେଁ, ହେବା ଉଚିତ ମଧ୍ୟ ନୁହେଁ । ଆଧୁନିକତା ନାମରେ କବିତାରେ ଅବୋଧତା ବା ଦୁର୍ବୋଧତାର ଆରୋପ କରାଯିବା ଦ୍ୱାରା ଓଡ଼ିଆ କବିତା ତାର ପାଠକୀୟତାକୁ ଅନେକାଂଶରେ ସଙ୍କୁଚିତ କରିଦେଇଛି, ଏହା ସ୍ୱୀକାର୍ଯ୍ୟ । ଆଧୁନିକତାର ଅର୍ଥ ହେଉ କବିତାରେ ଚଳନ୍ତି ସମୟ ଓ ସମାଜର ସାର୍ଥକ ପରିସ୍ଫୁଟନ, ଅବଶ୍ୟ କଳାତ୍ମକ ରୀତିରେ । ଆଧୁନିକ ଚେତନାରେ ଆଧୁନିକ ମଣିଷର ଆଶା-ଆକାଂକ୍ଷାକୁ ଆଧୁନିକ କବି ପ୍ରକାଶ କରୁଥାଉ ଆଧୁନିକ ଭାଷାରେ ।

ଏହି ପ୍ରକ୍ରିୟାରେ 'ଆଧୁନିକତାର ଜୟଯାତ୍ରା' ଅବ୍ୟାହତ ରହୁ ।

❑❑❑

# ଆଧୁନିକ କବିତା

●

ଡକ୍ଟର ଗଙ୍ଗାଧର ବଳ



*ଅବସରପ୍ରାପ୍ତ ପ୍ରଫେସର,*
*ଓଡ଼ିଆ ବିଭାଗ,*
*ରେଭେନ୍ସା କଲେଜ, କଟକ*

ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକଙ୍କ ଅପେକ୍ଷା ଆଜି କବିମାନଙ୍କ ସଂଖ୍ୟା ଅଗଣିତ । ଆଜି ଯେ କୌଣସି ସାହିତ୍ୟ ସମ୍ମେଳନକୁ ଲକ୍ଷ୍ୟ କଲେ ଦେଖାଯିବ, ସେଥିରେ କବିତା ପାଠର ରହିଛି ମୁଖ୍ୟ ଭୂମିକା । ଯଦି କେହି ଆଗରୁ କବିତା ରଚନା କରି ଆଣିନଥିବେ, ତା'ହେଲେ ସମ୍ମେଳନ କକ୍ଷରେ ବସୁଁ ବସୁଁ ହୋହଲ୍ଲା ମଧ୍ୟରେ ଚଟାପଟ କବିତା କବିମାନଙ୍କର ଲେଖନୀରୁ ଝରିପଡ଼େ । ପୂର୍ବରୁ ଆଶୁକବି ଥିଲେ । ପାଲାବାଲାମାନେ ପାଲା ଶେଷ ଆଡ଼କୁ ସଭାସ୍ଥ କୌଣସି ବ୍ୟକ୍ତିର ପ୍ରଶଂସା ବା ପ୍ରତିପକ୍ଷ ଦଳ ଲକ୍ଷ୍ୟରେ ଚଢ଼ାକୁ ଉତ୍ତାର ଚଳାଇଥିଲା ବେଳେ ଗାହାଣଙ୍କ ତୁଣ୍ଡରୁ ଆଶୁ କବିତାର (?) ଧାରା ଛୁଟେ । ଏଥିରେ ଶ୍ରୋତାମାନଙ୍କର ବେଶ ମନୋରଞ୍ଜନ ହୁଏ ; କିନ୍ତୁ ବର୍ତ୍ତମାନର ତଥାକଥିତ କବିମାନଙ୍କ ପକ୍ଷରେ ଚଟାପଟ୍ କବିତା ବା ଆଶୁ କବିତା ରଚନାରେ ବେଶି କିଛି ଭାବିବାକୁ ପଡ଼େ ନାହିଁ । ଗୁଡ଼ିଏ ଅସଂଲଗ୍ନ ଶବ୍ଦ ଲେଖନୀ ମୁନକୁ ଆସିଗଲେ କବିତା ହୋଇଯାଏ । ଛନ୍ଦ ପାଇଁ କସରତ୍ କରିବାକୁ ପଡ଼େ ନାହିଁ । ପୂର୍ବରୁ ମିତ୍ରାକ୍ଷର ହେଉ ବା ଅମିତ୍ରାକ୍ଷର ଛନ୍ଦ ହେଉ, ପ୍ରତିଭାଶାଳୀ କବିଙ୍କ ଲେଖନୀରେ ଭାବାନୁରୂପ ଶବ୍ଦମାନ ପଇଟି ଯାଉଥିଲା, ଯାହାକୁ ପାଠ, ଆବୃତ୍ତି ଏପରିକି ଗାନ ମଧ୍ୟ କରିବା ପାଇଁ ପାଠକମାନେ ସ୍ୱତଃ ଆଗ୍ରହ ପ୍ରକାଶ କରୁଥିଲେ; ପ୍ରତିଭୋଜ୍ଜ୍ୱଳ ପଦ ପଙ୍କ୍ତି ସ୍ୱତଃ ଗଡ଼ି ଚାଲିଥିଲା । ନିର୍ବାଚିତ ଶ୍ରୁତିସୁଖକର ପଦଗୁଡ଼ିକ ସଂଗୀତଧର୍ମରେ ପାଠକ ବା ଆବୃତ୍ତିକାରଙ୍କ ଅନ୍ତରରେ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରୁଥିଲା । କେବଳ ସାଙ୍ଗୀତିକ ମାଧୁର୍ଯ୍ୟ ନୁହେଁ, ଉନ୍ନତ ଭାବସମ୍ପଦରେ ସେଗୁଡ଼ିକ

ପାଠକ ପକ୍ଷରେ ଅଭୁଲା ହୋଇ ରହିଯାଉଥିଲା । ଦୀନକୃଷ୍ଣ, କବିସୂର୍ଯ୍ୟ, ରାଧାନାଥ ଓ ଗଙ୍ଗାଧରଙ୍କର କାବ୍ୟଗୁଡ଼ିକର ପଦରାଜି ଶ୍ରଦ୍ଧାଳୁ ସାହିତ୍ୟ ପ୍ରେମୀଙ୍କ ଚିତ୍ତରେ ଅପୂର୍ବ ମାଧୁର୍ଯ୍ୟ ସୃଷ୍ଟିକରି ଦୀର୍ଘକାଳ ଧରି ସେମାନଙ୍କର ସ୍ମୃତିସମ୍ପଦ ହୋଇ ରହିଯାଇଛି, ଯେଉଁଥିପାଇଁ ସେଇ କବିମାନଙ୍କୁ ଆଜିର କେତେକ ପୁରସ୍କାର-ଲାଳସୀ, ସାଧନା ଓ ବ୍ୟୁତ୍ପତ୍ତିହୀନ ତଥାକଥିତ କବିମାନଙ୍କ ପରି କୃତ୍ରିମ ପ୍ରଚେଷ୍ଟା କରିବାକୁ ହେଉନଥିଲା ଏବଂ ପ୍ରଚେଷ୍ଟାରେ ବିଫଳ ମନୋରଥ ହେଲେ ସେମାନଙ୍କୁ ରୀତିମତ ସଂଗ୍ରାମ ବା ବାକ୍ ବିତଣ୍ଡା କରିବାକୁ ପଡୁନଥିଲା ।

ପୂର୍ବରୁ ସାଧନା ଓ ସିଦ୍ଧି ସତ୍ତ୍ୱେ କବିତା ରଚନାରେ ଫୁଟିଉଠୁଥିଲା କବିମାନଙ୍କର ନମ୍ରତା ଓ ପୂର୍ବସୂରିମାନଙ୍କ ପ୍ରତି ସମ୍ମାନବୋଧ ଓ କୃତଜ୍ଞତା । ଭଞ୍ଜକବି ବୈଦେହୀଶ ବିଳାସ ରଚନା କରିବାକୁ ଯାଇ ବାଲ୍ମୀକି, ବ୍ୟାସ, କାଳିଦାସ, ରାମାୟଣ, ଚମ୍ପୂ ରଚୟିତା ଭୋଜରାଜ ଏବଂ ଗଙ୍ଗାଧର ମେହେର ପ୍ରଣୟବଲ୍ଲରୀ ରଚନାରେ ସେଇ ବ୍ୟାସ ଓ କାଳିଦାସଙ୍କର ଜୟଧ୍ୱନି ବ୍ୟାଜରେ ନମସ୍କ୍ରିୟା ଜଣାଇ ସେମାନଙ୍କ କାଳଜୟୀ ସୃଷ୍ଟିପାଇଁ କୃତଜ୍ଞତା ପ୍ରକାଶ କରିଛନ୍ତି । ମେହେରଙ୍କ ଭାଷାରେ-

''ଜୟ ବେଦବ୍ୟାସ ଜୟ କାଳିଦାସ ଭାରତୀ ପ୍ରିୟ ନନ୍ଦନ,<br>
ତୁମ୍ଭେ ଜ୍ଞାନଗୁରୁ କବିମଣ୍ଡଳୀର ଲଲାଟ-ଶୋଭୀ-ଚନ୍ଦନ ।<br>
ଯେଉଁ ପଥେ ଗମି ଭ୍ରମିଛ ଗୁରୁ ହେ ଭାରତୀ-କୁସୁମ-ବନେ,<br>
ସେହିପଥେ ଚାଲି ତୋଳିବି କୁସୁମ ପଡ଼ିବ ଯେତେ ନୟନେ ।''

(ପ୍ରଣୟ ବଲ୍ଲରୀ )

ମିତ୍ରାକ୍ଷର ହେଉ ବା ଅମିତ୍ରାକ୍ଷର ବା ଭଙ୍ଗ ଅମିତ୍ରାକ୍ଷର ଛନ୍ଦ ହେଉ ; ମୁକ୍ତଛନ୍ଦ, ଗଦ୍ୟଛନ୍ଦ ବା ବାକ୍‌ଛନ୍ଦ ହେଉ, ପ୍ରଜ୍ଞାଦୃଷ୍ଟି ଓ ପ୍ରତିଭା ଥିଲେ ରଚନା ଭାବାବେଗ ବା ବୌଦ୍ଧିକତାରେ କବିର ମନୋଜ୍ଞ ସ୍ୱକୀୟ ଛନ୍ଦ ଓ ଭାଷାରେ ପାଠକର ଚିତ୍ତ ଆକର୍ଷଣ କରିପାରେ, ଯା'ର ଚିରନ୍ତନ ମୂଲ୍ୟ ରହିଥାଏ । ବାଣଭଟ୍ଟଙ୍କର 'କାଦମ୍ବରୀ' ଗଦ୍ୟରେ ରଚିତ, କିନ୍ତୁ ମଞ୍ଜୁଳ କଳ୍ପନା, ଭାବସଂପଦ ଓ ମନୋଜ୍ଞ ଶବ୍ଦଚୟନର ଚାରୁତାରେ ଏବଂ ଛନ୍ଦୋମୟୀ ଗଦ୍ୟରେ ଏହା କାବ୍ୟର ସୁଷମାକୁ ବଳିଯାଇଛି । ଉଷାକାଳର ବର୍ଣ୍ଣନାରେ କବି ଲେଖିଛନ୍ତି -

''ତନ୍ତୁ ପାଟଳାଭିର ଯାମିନୀଭିଃ ଅଶିଶିର କିରଣ -ଦୀଧିତିଭିଃ<br>
ପଦ୍ମରାଗଶଲାକା ସମୁଦ୍ ସାର୍ଯ୍ୟମାଣେ ଗଗନ-କୁଟ୍ଟିମ<br>
କୁସୁମ ପ୍ରକରେ ତାରାଗଣେ.......... ।''

(ଅର୍ଥାତ୍, ଉଷ୍ଣ କିରଣ ତେଜ ସମନ୍ୱିତ, ଲତାତନ୍ତୁ ଭଳି ପାଟଳ ବର୍ଣ୍ଣ ବିଶିଷ୍ଟ ଏବଂ ପଦ୍ମରାଗମଣିର ଶୋଭାକୁ ତିରସ୍କାର କରୁଥିବା ଉଷାକାଳରେ ଗଗନ-ପ୍ରାଙ୍ଗଣରେ କୁସୁମତୁଲ୍ୟ ଉଦ୍‌ଭାସିତ ତାରକାଗଣ.......)

କିନ୍ତୁ ସମ୍ପ୍ରତି ଆଧୁନିକ କବିତା ନାମରେ ଯାହା ସବୁ ଲେଖାଯାଉଛି, ସେଥିରେ ନା ଅଛି ପାରମ୍ପରିକ ଭିତ୍ତି, ନା ଅଛି ଉନ୍ନତ ଭାବ ବା ଚିନ୍ତାସମ୍ପଦ, ନା ଅଛି ପଦଚୟନଗତ ମାଧୁର୍ଯ୍ୟ ? ନୂତନ ନାମରେ ଯେଉଁ ଉପମା (simile) , ରୂପକ (metaphor) , ଚିତ୍ରକଳ୍ପ ବା ରୂପକଳ୍ପର ପ୍ରୟୋଗ କରାଯାଉଛି, ସେଥିରେ ଉତ୍କଳୀୟ ତଥା ଭାରତୀୟ ମାଟି ପାଣିର ଗନ୍ଧ ଥାଏନା । ଆମ ପରିବେଶରୁ ଯେଉଁ ସିମିଲି, ମେଟାଫର, ଚିତ୍ରକଳ୍ପ ଆଦି ଚୟନ କରାଯାଏ, ଯେ କୌଣସି ପ୍ରକାର ଛନ୍ଦରେ ତାହା ଯେପରି ପାଠକ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରି ପରନ୍ତୁ ଆମର ଅନୁଭୂତିଶୂନ୍ୟ ଅଦେଖା ଉପମାନ, ରୂପ ଓ ଚିତ୍ରକଳ୍ପ ପାଠକ ପ୍ରାଣରେ ସେପରି କିଛି ତରଙ୍ଗ ସୃଷ୍ଟି କରି ପାରେନା । ପୁଣି ତଥାକଥିତ ଅତ୍ୟାଧୁନିକ କବିତା ଯେପରି ଫର୍ମ ଓ ଟେକ୍‌ନିକ୍ ସର୍ବସ୍ୱ ହୋଇଯାଉଛି, ସେଥିପ୍ରତି ଧ୍ୟାନ ଦିଆଯିବାଦ୍ୱାରା ଆଙ୍ଗିକ ଓ ଶିଳ୍ପରୀତିରେ କବିତା ଆଧୁନିକ ହୋଇ ଯାଏନା । ଭାବ ଓ ନୂତନ ମାର୍ଜିତ ରୁଚିର ସଂକେତ ରହିଲେ ତାହା ଆଧୁନିକ ପଦବାଚ୍ୟ ହୁଏ ।

ଆଧୁନିକ ରୁଚିକୁ ଉପେକ୍ଷା କରି ଗତାନୁଗତିକ ରାଗରାଗିଣୀ, ଛନ୍ଦ, ଉପମା, ରୂପକଳ୍ପ ଓ ଚିତ୍ରକଳ୍ପ ପ୍ରୟୋଗରେ କବିତା ରଚନା କରିବାକୁ କୁହାଯାଉନାହିଁ, କିନ୍ତୁ ଯାହା ରଚନା କରାଯାଉଛି ତାହା ଏ ଦେଶର ପରଂପରାର ଭିତ୍ତି ଉପରେ ଠିଆହେବା ଆବଶ୍ୟକ । ଆମର ନିଜସ୍ୱ ଭିତ୍ତି ଉପରେ ଠିଆ ନ ହୋଇ ଅତ୍ୟାଧୁନିକତା ନାମରେ ଶୂନ୍ୟରେ ଉଡ଼ି ଚାଲିଲେ ଅଧୋଗତି ହିଁ ଅବଶ୍ୟମ୍ଭାବୀ । ସାହିତ୍ୟର ଯେ କୌଣସି ବିଭାଗରେ ବିଶେଷତଃ କବିତା କ୍ଷେତ୍ରରେ ଯେଉଁମାନେ ଲେଖନୀ ଚାଳନା କରୁଛନ୍ତି, ଏ ଦିଗପ୍ରତି ବିଶେଷ ଧ୍ୟାନ ଦେଲେ ଏ ଦେଶର ମାଟିପାଣିରେ ସ୍ୱତଃସ୍ଫୂର୍ତ୍ତଭାବରେ ବଢ଼ି ଉଠିଥିବା କବିତା-ବଲ୍ଲରୀ ସ୍ୱାଭାବିକ ଭାବରେ ବିକାଶ ଲାଭ କରି ନୈସର୍ଗିକ ସୌନ୍ଦର୍ଯ୍ୟରେ ହସି ଉଠିବ ।

□□□

# ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା

•

ଡକ୍ଟର କୃତ୍ତିବାସ ଷଡ଼ଙ୍ଗୀ



*ଅଧ୍ୟାପକ, ଓଡ଼ିଆ ବିଭାଗ*
*ଖ୍ରୀଷ୍ଟ କଲେଜ, କଟକ*

ଜନ୍ମ ଓ ମୃତ୍ୟୁ ହେଉଛି ସଂସାରର ଏକ ଚିରନ୍ତନ ଲୀଳା । ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ଶ୍ରୀମଦ୍‌ଭାଗବତ ଗୀତାରେ କୁହାଯାଇଛି "ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମ ମୃତସ୍ୟ ଚ । ତସ୍ମାଦ ପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ।" (୨/୨୭) ଅର୍ଥାତ୍ ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ । ତେଣୁ ମୃତ୍ୟୁକୁ ଦେଖି ଶୋଚନା କରିବା ଉଚିତ ନୁହେଁ । ତଥାପି ମୃତ୍ୟୁକଥା ଚିନ୍ତାକରି ମନୁଷ୍ୟ ପ୍ରତି ମୁହୂର୍ତ୍ତରେ ଅସ୍ଥିର ଓ ଆକୁଳ ହୋଇପଡ଼େ । ପ୍ରତି ସମୟରେ ମୃତ୍ୟୁର ଏକ ଭୟଙ୍କର ଦୃଶ୍ୟ ତାର ମନସ୍ତାତ୍ତ୍ୱିକତାକୁ ଗ୍ରାସ କରି ରହିଥାଏ । ହେଲେ ମୃତ୍ୟୁକୁ ଅତିକ୍ରମ କରିଯିବାର ଶକ୍ତି ତାର ନ ଥାଏ । ହେଡଗାର କହିଛନ୍ତି "As soon as man is born he is old enough to die". ଅର୍ଥାତ୍ ଜନ୍ମର ପର ମୁହୂର୍ତ୍ତରୁ ହିଁ ମନୁଷ୍ୟ ମୃତ୍ୟୁର ଅଧୀନ ହୋଇଯାଇଥାଏ ।

ଏହି ମହାନ ସତ୍ୟକୁ ନେଇ ପୃଥିବୀର ବିଭିନ୍ନ ଭାଷାର ସାହିତ୍ୟରେ ଅସୁମାରି କାବ୍ୟ-କବିତା ଓ ଦର୍ଶନ ଇତ୍ୟାଦି ସୃଷ୍ଟି ହୋଇଛି । ପୃଥିବୀର ସର୍ବପ୍ରଥମ ସାହିତ୍ୟ ରୂପେ ବିବେଚିତ ବେଦଠାରୁ ଆରମ୍ଭ କରି ବେଦାନ୍ତ, ଉପନିଷଦ, ରାମାୟଣ, ମହାଭାରତ, ଗୀତା ଓ ଭାଗବତ ପର୍ଯ୍ୟନ୍ତ ବିଭିନ୍ନ ଗ୍ରନ୍ଥରେ ମୃତ୍ୟୁ ସଂପର୍କରେ ପର୍ଯ୍ୟାପ୍ତ ଆଲୋଚନା କରାଯାଇଛି । ଆଧୁନିକ ଜଡବାଦୀ ସଭ୍ୟତାରେ ସୁଖ ସମ୍ଭୋଗରେ ବିହ୍ୱଳ ମାନବ ଅବଶ୍ୟ ମୃତ୍ୟୁପ୍ରତି ସଚେତନ ହେଉନାହିଁ ; କିନ୍ତୁ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟରେ ପ୍ରତି ପଦେ ପଦେ ମନୁଷ୍ୟକୁ ଏହି ମହାନ ସତ୍ୟ ପ୍ରତି ସଚେତନ କରାଇ ଦିଆଯାଇଛି ।

ମୃତ୍ୟୁ ଅନତିକ୍ରମଣୀୟ ହେଲେ ମଧ୍ୟ ଭାରତୀୟ ଦର୍ଶନ ପୁନର୍ଜନ୍ମରେ ବିଶ୍ୱାସ କରେ । ଗୀତାରେ କୁହାଯାଇଛି, ''ବାସାଂସି ଜୀର୍ଣ୍ଣାନି ଯଥା ବିହାୟ, ନବାନି ଗୃହ୍ଣାତି ନରୋଽପରାଣି । ତଥା ଶରୀରାଣି, ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ'' (୨/୨୨) ଶଙ୍କରାଚାର୍ଯ୍ୟ 'ମୋହ ମୁଦ୍‌ଗର'ରେ କହିଲେ ''ପୁନରପି ଜନମଂ ପୁନରପି ମରଣଂ, ପୁନରପି ଜନନୀ ଜଠରେ ଶୟନମ୍ ।'' ଗୀତାରେ ପୁଣି କୁହାଯାଇଛି ''ଦେହିନୋଽସ୍ମିନ ଯଥା ଦେହେ କୌମାର' ଯୌବନଂ ଜରା । ତଥା ଦେହାନ୍ତ ପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ।'' (୨/୧୩)

ଜୀବନଲୀଳାର ଏହି ଚିରନ୍ତନ ସତ୍ୟକୁ ସ୍ୱୀକାର କରି କବି ଓ ଲେଖକମାନେ ତାକୁ ଭିନ୍ନ ଭିନ୍ନ ରୂପରେ ଅବଲୋକନ କରିବା ସହିତ କେହି କେହି ତା'ପ୍ରତି ସଶ୍ରଦ୍ଧ ଅଭିନନ୍ଦନ ଜ୍ଞାପନ କରିଛନ୍ତି । ଇଂରେଜୀ କବି ଉଇଲିୟମ କୁପର କହିଛନ୍ତି—

"The bridegroom of my soul / I seek
Oh, when will he appear."

(William Couper)

ସେଇଭଳି ଟେନିସନ କହିଛନ୍ତି—

"For me the heavenly bridegroom waits." (Tennyson)

କବି ରବୀନ୍ଦ୍ରନାଥ ଠାକୁର କିନ୍ତୁ ଏଇ ଭାବକୁ ଚମତ୍କାର ଭାବେ ପ୍ରକାଶ କରିବାକୁ ଯାଇ କହିଛନ୍ତି—

''ମିଲନ ହବେ ତୋମାର ସାଥେ, ଏକଟି ଶୁଭ ଦୃଷ୍ଟିପାତେ / ଜୀବନବଧୂ ହବେ ତୋମାର ନିତ୍ୟ ଅନୁଗତା । ମରଣ ଆମାର ମରଣ ତୁମି, କଓ ଆମାକେ କଥା / ବରଣମାଳା ଗାଁଥା ଆଛେ, ଆମାର ଚିତ୍ତ ମାଝେ । କବେ ନୀରବ ହାସ୍ୟମୁଖେ, ଆସବେ ବରେର ସାଜେ/ ସେଦିନ ଆମାର ରବେ ନା ଘର, କେଇବା ଆପନ କେଇବା ଅପର/ବିଜନରାତେ ପତିର ସାଥେ, ମିଲବେ ପତିବ୍ରତା/ମରଣ ଆମାର ମରଣ ତୁମି, କଓ ଆମାରେ କଥା ।'' (ଗୀତାଞ୍ଜଳି) ତାଙ୍କ ଦୃଷ୍ଟିରେ ମୃତ୍ୟୁ 'ଶ୍ୟାମ ସମାନ', ପୁଣି ଜୀବନର ଶୁଚିସ୍ନାନ, ଯାହା ପୁରାତନ ଜୀବନକୁ ନୂତନ କରିଦିଏ ।

ଇଂରେଜୀ କବି ଶେଲୀ ମୃତ୍ୟୁକୁ ସର୍ବତ୍ର ଦେଖିଛନ୍ତି । "Death is here and death is there, Death is everywhere" (*Death*, P.B. Shelly) ତାଙ୍କ ଦୃଷ୍ଟିରେ ମୃତ୍ୟୁ ଏବଂ ତାର ଭାଇ ନିଦ୍ରା ଖୁବ୍ ଚମତ୍କାର । "How wonderful is Death, Death and his brother Sleep" (*Queen Mab*) ମିଲଟନ ତାକୁ ଟିକିଏ

ଭିନ୍ନ ରୂପ ଦେଇ କହିଲେ, ମୃତ୍ୟୁ ହେଉଛି ଏକ ସୁବର୍ଣ୍ଣ ଚାବିକାଠି, ଯାହା ଅନନ୍ତ ପ୍ରଶାନ୍ତିର ଦ୍ୱାର ଖୋଲିଦିଏ । (Death is the golden key, that opens the place of eternity. – Milton). ବର୍ଣ୍ଣସଙ୍କ ବିଚାରରେ ଦରିଦ୍ର ଓ ହତଭାଗ୍ୟ ଲୋକ ପାଇଁ ମୃତ୍ୟୁ ହେଉଛି ଅନ୍ତରଙ୍ଗ ଏବଂ ଦରଦୀ ବନ୍ଧୁ । (Death ! the poorman's dearest friend / the kindest and best. – Burns, *Man was made to mourn*).

ମନୁଷ୍ୟ ମୃତ୍ୟୁ ପ୍ରତି ସଚେତନ ଥାଇ ସେହି ଅନାଗତ କାଳକୁ ଅପେକ୍ଷା କରି ବସେ ସିନା ; କିନ୍ତୁ ଜୀବନର ମୋହକୁ ସେ ପରିତ୍ୟାଗ କରିପାରେନା । ତାହା ହେଉଛି ତାର ବିଷାଦାକ୍ରାନ୍ତ ଜୀବନବୋଧ, ଯେଉଁଥିରେ ସେ ବ୍ୟସ୍ତ ଓ ବିବ୍ରତ ହୋଇପଡ଼େ । କୋବ୍ରିୟରଙ୍କ ଭାଷାରେ, ଜୀବନକୁ ଅପେକ୍ଷା କରିବା ହିଁ ମରିବାକୁ ଆରମ୍ଭ କରିବା ଏବଂ ମୃତ୍ୟୁ ପ୍ରତୀକ୍ଷାରେ ବଞ୍ଚିବା । (Waiting for life to start died / And lived a waiting death.) ଅନୁରୂପ ଭାବରେ ରିଲେକ (Releck) ସ୍ୱୀକାର କରନ୍ତି ଯେ "Your death was already old / when your life began." ମହାନ ଦାର୍ଶନିକ ଇମରସନ ତେଣୁ କହିଲେ, "we should be colonist, not home dwellers in the world perpetually dreaming of the voyage home." (Emerson)

ଆଧୁନିକ ଓଡ଼ିଆ କବିତାରେ ବହୁ ଆଲୋଚିତ ମୃତ୍ୟୁ ଚେତନା ଏକ ନୂତନ ବା ଆକସ୍ମିକ ବ୍ୟାପାର ନୁହେଁ । ଆମ ପ୍ରାଚୀନ ଓ ମଧ୍ୟଯୁଗୀୟ ରଚନାବଳୀରେ ଏ ସଂପର୍କରେ ପର୍ଯ୍ୟାପ୍ତ ଭାବରେ ଅବତାରଣା କରାଯାଇଛି । ଜୀବନର ଅସାରତା ଓ ନଶ୍ୱରତା ସଂପର୍କରେ ଆଧ୍ୟାତ୍ମବାଦୀ ଦାର୍ଶନିକ କବିମାନେ ବରାବର ମନୁଷ୍ୟକୁ ସଚେତ କରାଇଦେଇଛନ୍ତି । ପଞ୍ଚସଖା ଯୁଗର ସାଧକ କବି **ଜଗନ୍ନାଥ ଦାସଙ୍କ** ଭାଗବତର ଅମରବାଣୀ ହେଉଛି, "ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ । କାଳର ବଶ ଓ ଏ ଜଗତ, ପ୍ରାଣୀଏ କାଳର ଆୟତ ।" ଏହି କାଳ ହେଉଛି ମହାକାଳ ବା ମୃତ୍ୟୁ । ସେହି ଯୁଗର ଅନ୍ୟତମ ସାଧକ କବି **ଯଶୋବନ୍ତ ଦାସ** ତାଙ୍କ 'ଗୋବିନ୍ଦଚନ୍ଦ୍ର'ରେ ଏହି ସତ୍ୟକୁ ଉପଦେଶାତ୍ମକ ଶୈଳୀରେ ଉପସ୍ଥାପନ କରିଛନ୍ତି । ସେ କହିଛନ୍ତି, "ଭଜୁ କିନା ରାମନାମରେ କୁମର, ଭଜୁକିନା ରାମନାମ / ଭଜି ନ ପାରିଲେ କୁଳଚନ୍ଦ୍ରମାରେ ବାନ୍ଧି ନେବ କାଳଯମ । / ସେହି କାଳ ଅଟେ ବଡ଼ ଦାରୁଣରେ, ନ ଜାଣଇ ସୁଖ ଦୁଃଖ, ବାଛି ନେବ କଞ୍ଚା, ରଖିବ ପାଚିଲା, ଦେବଟି ଦାରୁଣ ଦୁଃଖ ।"

ମଧ୍ୟଯୁଗୀୟ କବି **ଭକ୍ତଚରଣ ଦାସଙ୍କ** 'ମନବୋଧ ଚଉତିଶା'ଟି ଓଡ଼ିଶାରେ ଯେତିକି ଲୋକପ୍ରିୟ ସେତିକି ଆଦରଣୀୟ । ଏହାର ତାତ୍ତ୍ୱିକ ତଥା ଆଧ୍ୟାତ୍ମିକ ଦିଗଟି ଅତ୍ୟନ୍ତ ମୂଲ୍ୟବାନ । ପାର୍ଥିବ ଜୀବନର ଅଳୀକତା ଓ ମୃତ୍ୟୁର ଅବଶ୍ୟମ୍ଭାବିତା ପ୍ରତି ସମସ୍ତଙ୍କୁ ସଚେତନ କରାଇବାକୁ

ଯାଇ ସେ କହିଛନ୍ତି, ''କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ, କି ଘେନି ଯିବୁ ତୋର ଛୁଟିଲେ ଘଟରେ । x x ଯମ ଯେ ନ ଜାଣଇ ବାଳୁତ ଯୁବା, ଜୀଇବୁ ବୋଲି ମନେ କରିଛୁ ଅବାରେ । ଜଣେ ହେଁ ଏଥେ କେହି ନାହିଁ ଅମର, ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାରରେ ।''

ଆଧୁନିକ ଯୁଗର କବି **ରାଧାନାଥ ରାୟଙ୍କ** 'ମହାଯାତ୍ରା' କାବ୍ୟର ପ୍ରଥମ ସର୍ଗରେ ମୃତ୍ୟୁ ସଚେତନତାର ସ୍ୱର ପ୍ରତିଧ୍ୱନିତ ହୋଇଥିବାର ଆମ ଦୃଷ୍ଟିକୁ ଆସେ । କବିଙ୍କ ଭାଷାରେ, ''ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ । ମାଟିର ଏ ଘଟ ନିଶ୍ଚେ ମିଶିବ ମାଟିରେ / ସେ ଗୁପତ ଫାଶୁ କେହି ନୁହନ୍ତି ମୁକତ / ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଳେ । ଭୂମିଷ୍ଠ ହୁଅଇ ଜୀବ ଜନନୀ ଜଠରୁ ।'' 'ପାର୍ବତୀ' ଖଣ୍ଡକାବ୍ୟରେ ମଧ୍ୟ କବିଙ୍କର ସେହି ସ୍ୱର ଅଧିକ କଳାତ୍ମକ ଭାବରେ ପରିସ୍ଫୁଟ । ସେ ଏଥିରେ କହିଛନ୍ତି, ''କେହି ରହି ନାହିଁ, ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ ।''

**ମଧୁସୂଦନ ରାଓ** କେବଳ ଜଣେ କବି ନ ଥିଲେ, ସେ ଏକାଧାରରେ ଥିଲେ ଜଣେ ଭକ୍ତ ଏବଂ ବ୍ରହ୍ମବାଦୀ ଦାର୍ଶନିକ । 'ଜୀବନଚିନ୍ତା' କବିତାରେ ତାଙ୍କର ଆହ୍ୱାନ ହେଉଛି, ''ରେ ଆତ୍ମନ୍ ନିଦ୍ରା ପରିହରି, ଫେଡି ଚିନ୍ତାର ଲୋଚନ, କରକର ନିରୀକ୍ଷଣ / ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।'' କବିଙ୍କ ପାଇଁ ମୃତ୍ୟୁ ଭୟଙ୍କର ନୁହେଁ, ଅଥବା ସେ ନୈରାଶ୍ୟବାଦୀ ନୁହନ୍ତି, ବରଂ ତାଙ୍କ ବିଚାରରେ ମୃତ୍ୟୁ ହେଉଛି ଅମୃତତ୍ୱ ପାଇଁ ଗୋଟିଏ ସୋପାନ ମାତ୍ର । ଆତ୍ମାର ଅବିନଶ୍ୱରତାରେ ବିଶ୍ୱାସୀ କବି ମଧୁସୂଦନ ମୃତ୍ୟୁ ପାଇଁ ବ୍ୟଥିତ ନୁହନ୍ତି । ଉପନିଷଦର ''ମୃତ୍ୟୋର୍ମାଂ ଅମୃତଗମୟ''ର ସ୍ୱର ତାଙ୍କ ଅଧିକାଂଶ କବିତାରେ ଗୁଞ୍ଜରି ଉଠିଛି । ସେ ପରମାତ୍ମାଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇ ଉଦାର ଓ ଉନ୍ମୁକ୍ତ ପ୍ରାଣରେ ଗାଇ ଉଠିଛନ୍ତି, ''ତୋର ମଙ୍ଗଳ ବିଧାନ, କରିଅଛି ମରଣକୁ ଅମୃତ ସୋପାନ ।''

ମଧୁସୂଦନଙ୍କ ଭଳି କବି 'ଗଙ୍ଗାଧର ମେହେର' ମଧ୍ୟ ମୃତ୍ୟୁ ନିକଟରେ କୌଣସି ନୈରାଶ୍ୟବାଦୀ ମନୋଭାବ ପ୍ରକାଶ ନକରି ବରଂ ଆଶାବାଦୀ ହୋଇପଡିଛନ୍ତି । ସେ ତେଣୁ ଗାଇଛନ୍ତି, ''ବିଶ୍ୱ ଦେଖ ମଧୁମୟରେ ଜୀବନ, ବିଶ୍ୱ ଦେଖ ମଧୁମୟ / ମଧୁର ଝରଣ କରିବ ହରଣ ତୋ ପାପ ମରଣ ଭୟରେ ଜୀବନ ।'' (ମଧୁମୟ) ଫକୀରମୋହନ ସେନାପତିଙ୍କ 'ଅବସର ବାସରେ' କବିତା ସଂକଳନର କେତୋଟି କବିତାରେ ଜରା ଓ ମୃତ୍ୟୁଭାବ ସଂପର୍କୀୟ ଦାର୍ଶନିକ ଅଭିବ୍ୟକ୍ତିର ସ୍ୱର ବାରି ହୋଇଯାଏ ।

ପଲ୍ଲୀକବି **ନନ୍ଦକିଶୋର ବଳଙ୍କ** 'ନିର୍ଝରିଣୀ' କବିତା ପୁସ୍ତକର 'ଜରାମରଣ' କବିତାରେ ପ୍ରକଟିତ ମୃତ୍ୟୁଚେତନା ଦାର୍ଶନିକ ଭାବାପନ୍ନ । ଏହି କବିତାରେ କବି ଉପଦେଶ ଛଳରେ କହିଛନ୍ତି, ''କୋଇଲି ! ସଦା ଜୀବ ସାଧୁ କାର୍ଯ୍ୟ କଲେ, ସଂସାର ତେଜନ୍ତେ ସ୍ୱର୍ଗେ ଯିବା ସିନା ଭଲେ ଲୋ ।''

ରୋମାଣ୍ଟିକ ଭାବ ଚେତନାରେ ଜୁଡୁବୁଡୁ ସବୁଜ କବି ଗୋଷ୍ଠୀ ଯେଉଁମାନେ କି ଯୌବନର ଉତଳା ସ୍ୱପ୍ନରେ ବିଭୋର ହୋଇ ଏକ ପଳାୟନପନ୍ଥୀ ହୋଇପଡ଼ିଥିଲେ ବୋଲି କୁହାଯାଏ, ସେମାନଙ୍କ ଲେଖନୀରୁ ମଧ୍ୟ ମୃତ୍ୟୁଚେତନା ଦୂରେଇ ଯାଇନାହିଁ । ମୃତ୍ୟୁ ଯେ ଆସେ ସଂଗୋପରେ ଓ ନିଃଶବ୍ଦ ଭାବରେ, ସେ ଜୀବନଦୀପକୁ ଫୁଙ୍କି ଦେଇଯାଏ, ଏକଥା କବି **କାଳିନ୍ଦୀଚରଣ** ବେଶ ସ୍ପଷ୍ଟ ରୂପେ ଅନୁଭବ କରିପାରିଛନ୍ତି । ସେ ତେଣୁ ଲେଖିଛନ୍ତି–''ମରଣ ଆସଇ ଲୁଚି ଚରଣ ଚଳାଇ ଧୀରେ ଫୁଙ୍କିଯାଏ ଜୀବନର ଦୀପ, ନ ଦେଖାଇ ରୂପ ତା'ର ନ ଜଣାଇ ଆଗମନ ନ ଶୁଣାଇ କାହିଁ ପାଦଟିପ । ରଜନୀ ଦିବସ ସମ ଜୀବନ ମରଣ ଖେଳ ସହଜରେ ଯାଏ ସେ ଯେ ଚଳି ।'' (କାଳିନ୍ଦୀଚରଣ – 'ଜଡ଼ଦର୍ଶନ') ସବୁଜଯୁଗର ଅନ୍ୟତମ କବି **ବୈକୁଣ୍ଠନାଥ ପଟ୍ଟନାୟକ** 'ଯାତ୍ରା ସଂଗୀତ' କବିତାରେ ମୃତ୍ୟୁ ସଚେତନ ହୋଇ ଲେଖିଛନ୍ତି – ''ମିଥ୍ୟା ବିପଣୀରେ ବଣିକ ମରଣ ଯେ / ନ ଚେତି ତିଳେ ଯାହା କଲି ମୋ ମଣି ଭାଉ ।'' ପ୍ରଗତିବାଦୀ ଯୁଗର ବିପ୍ଳବୀ କବି **ଅନନ୍ତ ପଟ୍ଟନାୟକ** 'ସ୍ୱପ୍ନ ଦେଖୁଛି' କବିତାରେ ସ୍ୱୀକାର କରିଛନ୍ତି– ''ମୃତ୍ୟୁ ନୀଳିମା ଭଗ୍ନ ଦେହେ ମୋ ନେସା / ଅନ୍ନମୁଠିର ପରିଧି ମାପେ ଯେ ହାଇ ।''

ନାରୀକବି **କୁନ୍ତଳା କୁମାରୀ ସାବତ** 'ଅଭିଶପ୍ତର ଅଭିମାନ' କବିତାରେ ମହାନ୍ ସତ୍ୟ ମୃତ୍ୟୁକୁ ଆପଣେଇ ନେବାକୁ ଚାହିଁଛନ୍ତି । କବି ଲେଖନୀରୁ ଝରିଆସିଛି – ''ମରଣ ନୁହେଁ ମୋ କ୍ଳେଶ / ନୁହେଁ ତା ବିନାଶ ଶେଷ / ଅଦ୍ଭୁତ ସୁନ୍ଦର ନବ ଜୀବନ ଆରମ୍ଭ / ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?'' ('ଅଭିଶପ୍ତର ଅଭିମାନ') ପୁଣି ମୃତ୍ୟୁ ମଧ୍ୟରେ ପ୍ରିୟତମର ସ୍ପର୍ଶ ପାଇଁ ନାରୀକବି କୁନ୍ତଳା କୁମାରୀ ଆତୁରା, ତାଙ୍କ ଚାହାଣି ଅନାବିଳ । ସେଥିରେ ଦର୍ଶନ ତତ୍ତ୍ୱର ଆଟୋପ ନାହିଁ । ଜୀବନର ମହାନ୍ ସତ୍ୟ 'ମୃତ୍ୟୁ' ସଂପର୍କରେ ସଚେତନ ହୋଇ ସେ ପ୍ରିୟତମଙ୍କ ଉଦ୍ଦେଶ୍ୟରେ ଗାଇ ଉଠନ୍ତି – ''ମୃତ୍ୟୁ ରୂପେ ଯଦି ଆସିବ କତିକି ସୁଖେ ମୁଁ ଘେନିବି କୋଳରେ / ଆଦରେ ମରଣ ବରଣ କରିଗୋ ମରିବି ଚରଣ ତଳରେ ।'' ('ଅର୍ଚ୍ଚନା')

ପ୍ରଗତିବାଦୀ ଚେତନାରେ ଅନୁପ୍ରାଣିତ **ସଚ୍ଚି ରାଉତରାୟଙ୍କ** କବିତାରେ ଆଧୁନିକ ମଣିଷର ଜୀବନଯନ୍ତ୍ରଣାର ସ୍ୱର ବାସ୍ତବଧର୍ମୀ ଭାବରେ ପ୍ରକାଶ ପାଇଛି । ତାଙ୍କର କେତେକ କବିତାରେ ମୃତ୍ୟୁଚେତନାର ଅଭିବ୍ୟକ୍ତି ସ୍ପଷ୍ଟ ଅଟେ । ମୃତ୍ୟୁ ସଂପର୍କରେ କବି ଲେଖିଛନ୍ତି – ''ମୃତ୍ୟୁ ଛଡ଼ା ଯୌନତାରେ ପୂର୍ଣ୍ଣତା ଯେ ନାଇ / ମୃତ୍ୟୁ ଓ ମୈଥୁନ ଯେପରି ହାତ ଧରାଧରି ହୋଇ / ଚାଲିଛନ୍ତି ଅନାଦିକାଳରୁ / ରତିହ୍ରସ୍ୱ ରାତ୍ରିର ଗହ୍ୱରୁ ।'' ('ଦ୍ରୌପଦୀର ଶାଢ଼ୀ') 'ମୃତ୍ୟୁ' କବିତାରେ କବି ରାଉତରାୟ ମୃତ୍ୟୁରେ ''ଜୀବନ ହୁଏ ସ୍ମୃତିର କଙ୍କାଳ ଖାଲି'' ବୋଲି କହିଛନ୍ତି । ('ମୃତ୍ୟୁ' – 'ପାଣ୍ଡୁଲିପି')

ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି'ର 'କେଶ' କବିତାରେ ବର୍ଣ୍ଣିତ 'ଦ୍ରୌପଦୀର କେଶ' ମୃତ୍ୟୁଚେତନା ବା ମହାକାଳର ପ୍ରତୀକାତ୍ମତା କରେ । ଆଲୋଚ୍ୟ କବିତାରେ ଏହି ମୃତ୍ୟୁଚେତନା ବ୍ୟକ୍ତିଗତ ନୁହେଁ, ବରଂ ଏହା ଯୁଗଚେତନାଧର୍ମୀ ଅପମୃତ୍ୟୁର ପ୍ରତୀକ । କବିଙ୍କ ଭାଷାରେ ''ଦୂରକରି ଅରାଜକ ରଜନୀର ଅଂକ ... / ମୃତ୍ୟୁପରି ଆସେ ଘୋଟି ମୋହମୟ ଆଶ୍ଚର୍ଯ୍ୟ ଅନଳ / ଶ୍ୟାମଳ ସର୍ପିଳ ଶ୍ଳଥ ଏଇ କ୍ଷିପ୍ତ କେଶର ବନ୍ୟାରେ / ହସ୍ତିନାର ସ୍ୱର୍ଣ୍ଣଚୂଡ଼ା ଇନ୍ଦ୍ରନୀଳ ମହମ ମିନାରେ / ଭସାଇ କେ ନିଏ କାହିଁ ? ମରଣର ତୀକ୍ଷ୍ଣ ଉପହାସ / ଭଙ୍ଗାଗଢ଼ା ମଧ୍ୟେ ରଚେ ଆଜି ଏକ ବିଚିତ୍ର ସମାସ ।'' ('କେଶ' କବିତା, ପାଣ୍ଡୁଲିପି) ଅନ୍ୟ ଏକ କବିତାରେ ଜୀବନର ସକଳ ଦାବଦହନ ମଧ୍ୟରେ ମୃତ୍ୟୁ ସଚେତନ ହେବା ସହିତ 'ଶୁଭ୍ର ଆମ୍ବୁଲାନ୍ସ'ରେ ସ୍ୱର୍ଗଯାତ୍ରା କରିବାକୁ ଆଶାପୋଷଣ କରିଛନ୍ତି ; ଯଥା :- ''ମୋ ନିଆ-ଲିଭାଳୀ ଦେହେ କେଉଁ ଆର୍ଷକ୍ଷଣେ / ଗ୍ରାସେ ଯେବେ ମୃତ୍ୟୁର ଭଗ୍ନାଂଶ / ମୋ ଆତ୍ମାକୁ ତୋଳିନେଉ ତେବେ କ୍ଷତଚଣା / 'ସରଗର ଶୁଭ୍ର ଆମ୍ବୁଲାନ୍ସ' ।'' ('ସଗତ', 'କବିତା-୧୯୬୨')

ଗୁରୁପ୍ରସାଦ ମହାନ୍ତିଙ୍କ ବହୁ କବିତାରେ ('କାଳପୁରୁଷ') କବି ଟି.ଏସ୍.ଏଲିୟଟଙ୍କ 'The Waste Land' ର ଭାବବସ୍ତୁ ଅନୁସୃତ ହେବା କ୍ରମରେ ମୃତ୍ୟୁରୁ ଅମୃତ ଅଭିମୁଖେ ଅଭିଯାତ୍ରାର ସ୍ୱର ପ୍ରକାଶ ପାଇଛି । ଏହି ଅମୃତ ପ୍ରତି ସ୍ପୃହା ଅକ୍ରୂର ଓ ଉଦ୍ଧବ ପୁରାଣକଳ୍ପ ମାଧ୍ୟମରେ ଏବଂ ଜହ୍ନ, ଝରଣା, ଅରୁନ୍ଧତୀ ତାରା ପ୍ରଭୃତି ଚିତ୍ରକଳ୍ପ ମାଧ୍ୟମରେ ଅଭିବ୍ୟକ୍ତି ଲାଭ କରିଛି । କବିଙ୍କ ଭାଷାରେ – ''ହେ ଅକ୍ରୂର, ହେ ଉଦ୍ଧବ, ସଖା ମୋର ପ୍ରାଣର ଦୋସର/ ରୁହ ରୁହ ଛିଡ଼ା ରୁହ ପିଠିରେ ମୋ ତୁମ ପରି ବୋଝ / ମୁଁ ଯିବି ତୁମରି ପରି ତାରା ଖୋଜି, ଜହ୍ନ ଖୋଜି / ଖୋଜିଖୋଜି ଝରଣାର ସୁଅ / ମୁଁ ଯିବି ତୁମରି ପରି ଖୋଜି ମୋର ପିତାମାତା / ନିର୍ମୂଳୀ ନଟାରେ ଖୋଜି ଅରୁନ୍ଧତୀ ତାରାର ଆଲୁଅ ।'' ('କାଳପୁରୁଷ', 'ସମୁଦ୍ରସ୍ନାନ') ସୂଚନାଯୋଗ୍ୟ ଯେ, ଅକ୍ରୂର ଓ ଉଦ୍ଧବ ଉଭୟେ କୃଷ୍ଣଭକ୍ତ । ଜଣେ (ଅକ୍ରୂର) କୃଷ୍ଣଙ୍କୁ ମଥୁରା ଆଣିବା ପୂର୍ବକ କଂସମୃତ୍ୟୁର କାରଣ ହୋଇଛି । ଆଉ ଜଣେ (ଉଦ୍ଧବ) କୃଷ୍ଣଙ୍କ ସମ୍ବାଦ ନେଇ ଗୋପପୁର ଯିବାପୂର୍ବକ ଈଶ୍ୱରଙ୍କ ବାର୍ତ୍ତା ପ୍ରଚାର କରିଛି । ଏହି କବିତା ପଂକ୍ତିରେ ମାନବାତ୍ମା ଅକ୍ରୂର ଓ ଉଦ୍ଧବ ଚେତନା ମଧ୍ୟରେ ଦ୍ୟୋତିତ । ଭାଗବତ ବର୍ଣ୍ଣିତ ଅକ୍ରୂର ଓ ଉଦ୍ଧବଙ୍କ ପରି ଆଧୁନିକ ମାନବାତ୍ମା ପିଠିରେ ଧ୍ୱଂସ, ମୃତ୍ୟୁ ଓ ଅବକ୍ଷୟତାର ବୋଝ । ସେଥିରୁ ସେ ନିଷ୍କୃତି ତଥା ପରିତ୍ରାଣ ଚାହେଁ । ସେହିପରି ଅରୁନ୍ଧତୀ ତାରା ଏକ ମୃତ୍ୟୁଞ୍ଜୟୀ ଚେତନାକୁ ପ୍ରତୀକିତ କରେ । ଅରୁନ୍ଧତୀ ବଶିଷ୍ଠ ଋଷିଙ୍କ ପତ୍ନୀ, ପତିପରାୟଣତା ପାଇଁ ଯାହାଙ୍କର ପ୍ରସିଦ୍ଧି ରହିଛି । ଉତ୍ତରାକାଶସ୍ଥିତ ସପ୍ତର୍ଷି ମଣ୍ଡଳର ଅନ୍ୟତମ ନକ୍ଷତ୍ର ବଶିଷ୍ଠଙ୍କ ନିକଟରେ ଅରୁନ୍ଧତୀ ଏକ ଛୋଟ ନକ୍ଷତ୍ର ହୋଇ ରହିଥିବା ପୌରାଣିକ ଲୋକବିଶ୍ୱାସ ରହିଆସିଛି । 'ହିତୋପଦେଶ'ରେ ବର୍ଣ୍ଣିତ

ଅଛି ଯେ – ମୃତ୍ୟୁ ଯା'ର ଆସନ୍ନ, ଏ ତାରା ତାକୁ ଦେଖାଯାଏ ନାହିଁ । କବି ଗୁରୁପ୍ରସାଦଙ୍କ ଦୃଷ୍ଟିରେ ମାନବାତ୍ମା ଆଜି ମୃତ୍ୟୁଗ୍ରସ୍ତ, ଆଉ ସେ ସେଥିରୁ ନିଷ୍କୃତି ଚାହେଁ । ତେଣୁ ସେ ଅରୁନ୍ଧତୀ ତାରାକୁ ଖୋଜୁଛି । ଏହି ତାରା ହିଁ ତାକୁ ମୃତ୍ୟୁର ଭୟରୁ ରକ୍ଷା କରିବାରେ ସମର୍ଥ ହେବ । 'କାଳପୁରୁଷ'ରେ ଏହି ମୃତ୍ୟୁଚେତନାର ସର୍ବମୟ ପରିପ୍ରକାଶ ଲକ୍ଷ୍ୟ କରିହୁଏ ।

କବି ରମାକାନ୍ତ ରଥଙ୍କ କବିତାର ଏକ ବଳିଷ୍ଠ ସ୍ୱର ହେଉଛି ମୃତ୍ୟୁଚେତନା । ସେ ନିଶ୍ଚିତ ଯେ, ଜରାମରଣ ପ୍ରତ୍ୟେକ ମଣିଷର ଅମୋଘ ଭାଗ୍ୟ । ପ୍ରେମକୁ ଅନୁସନ୍ଧାନ କରି କବି ଶ୍ରୀ ରଥ ଅଖଣ୍ଡ ମୃତ୍ୟୁର ସର୍ବତୋବ୍ୟାପୀ ନିଶ୍ଚିତତାକୁ ଉପଲବ୍ଧି କରିଛନ୍ତି । ଆଉ ସେହି ମୃତ୍ୟୁ କବଳିତ ଜୀବନର ଅସାମର୍ଥ୍ୟର ମୋଚନ ପାଇଁ ମଣିଷ ନାନାପ୍ରକାର ଉଦ୍ୟମ କରେ । କବି ରଥ ଜୀବନକୁ ଭଲ ପାଆନ୍ତି ବୋଲି ଜୀବନ ସହିତ ମୃତ୍ୟୁର ବିରୋଧ ଓ ଜୀବନକୁ ସରସ ସୁନ୍ଦର କରୁଥିବା ପ୍ରେମର ମୃତ୍ୟୁ ସହିତ ବିରୋଧକୁ ଦେଖି ଭୟଭୀତ ହୁଅନ୍ତି । ଜୀବନର ପରିଣତି ହେଉଛି ମୃତ୍ୟୁ । ତେଣୁ ତାଙ୍କ କବିତାରେ ମୃତ୍ୟୁ ସଚେତନତା ତଥା ମୃତ୍ୟୁର ନିବିଡ଼ ଉପଲବ୍ଧିର ସ୍ୱର ବେଶ୍ ଶାଣିତ । ଶ୍ରୀ ରଥଙ୍କ କବିତାରେ ମୃତ୍ୟୁବୋଧର ସ୍ୱର ନାସ୍ତିବାଚକ । କାଳର ଅଶୁଭ ଅନୁଦାର ମୃତ୍ୟୁରୂପକୁ ସେ ଦେଖିଛନ୍ତି । ତାଙ୍କ କବିତାରେ ମିଲ୍‌ଟନ୍‌ଙ୍କ "Death is the golden key that opens the place of eternity" ର ସ୍ୱର ପ୍ରକଟିତ ହୋଇଛି ବୋଲି କୁହାଯାଇପାରେ । ରମାକାନ୍ତଙ୍କ ଦୃଷ୍ଟିରେ ମୃତ୍ୟୁ ଯନ୍ତ୍ରିତ ଜଞ୍ଜାଳଗ୍ରସ୍ତ ମଣିଷ ପାଇଁ ମୃତ୍ୟୁ ଏକ ବିଶ୍ରାମ ସମୟ ଯେଉଁଠାରେ ତାକୁ ଅନନ୍ତ ପ୍ରଶାନ୍ତି ମିଳିବ । ପ୍ରତିଦିନ ଭୟରେ ମରୁଥିବା ମଣିଷର ଶେଷ ମୃତ୍ୟୁରେ ହିଁ ହେବ ବୋଲି କବିଙ୍କ ସ୍ୱୀକାରୋକ୍ତି । ଏହି କ୍ରମରେ ସେ ଲେଖିଛନ୍ତି– "ସେ ମରିବ ସେହିପରି– ଫୁଙ୍ଗୁଳା ଦେହରେ / ଫେରିବାର ବାଟ ବନ୍ଦ ସମୟାନ୍ତରର / ମଶାଣିଠୁଁ ମେଘଯାଏ ଲମ୍ବିଥିବା ପରିବର୍ତ୍ତନରେ ।" (ଉଜ୍ଜ୍ୱଳ ଭବିଷ୍ୟତ', 'ସପ୍ତମ ଋତୁ') ପୁଣି ଅନ୍ୟ ଏକ କବିତାରେ ଉପମାଧର୍ମିତା ମାଧ୍ୟମରେ ସେ ମୃତ୍ୟୁର ବର୍ଣ୍ଣନା କରିଛନ୍ତି ; ଯଥା– "ଆଜି ମୃତ୍ୟୁ ମୋ ସାମ୍ନାରେ / ରୋଗୀଟିର ଆରୋଗ୍ୟ ଲାଭ କରିବାପରି/ ଦୀର୍ଘଦିନର ଅସୁସ୍ଥତା ପରେ ବଗିଚାକୁ ଗଲାପରି / ଆଜି ମୃତ୍ୟୁ ମୋ ସାମ୍ନାରେ ଆକାଶ ମେଘମୁକ୍ତ ହେଲାପରି / କୁଆଡ଼କୁ ଯାଉଛି ନଜାଣି ଚାଲିଯିବା ପରି ।"

ମୃତ୍ୟୁ ପ୍ରତି ଯେତେ ଭୟଶୂନ୍ୟ ମନୋଭାବ ପୋଷଣ କଲେ ବି ଏକ କରାଳରୂପ ନେଇ ଆସୁଥିବା ମୃତ୍ୟୁର ଭୟଙ୍କର ସତ୍ତା କବିମାନସରେ ଉଙ୍କିମାରେ । ମୃତ୍ୟୁ ପ୍ରତି ଭୟାତୁର ହୋଇ କବି ରମାକାନ୍ତ ଲେଖିଛନ୍ତି – "ମୃତ୍ୟୁକୁ ଦେଖିଲେ ମୋତେ ଡରମାଡ଼େ / ମୃତ୍ୟୁ ଏକ ଚପଳବାଳକ / ଅଙ୍କାବଙ୍କା ଅକ୍ଷରରେ ବାଜେକଥା ଲେଖୁଛି କାନ୍ଥରେ / ବାର୍ଦ୍ଧକ୍ୟ ଟାପରା ଅବା ଦାସୀଙ୍କର ।" ('ସନ୍ଦିଗ୍ଧ ମୃଗୟା') ତାଙ୍କ 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତାରେ

ମୃତ୍ୟୁଚେତନାର ବଳିଷ୍ଠ ପରିପ୍ରକାଶ ଘଟିଅଛି ; ଯଥା– ''ମୋ ଅରକ୍ଷ ଭବିଷ୍ୟତ ଭାସିଯାଏ ଛଅଖଣ୍ଡ କାଠର ଭେଳାରେ / ଅସଜ ବିମାନ ପରି ସମୁଦ୍ରର ରକ୍ତାକ୍ତ ଆକାଶେ ।''

**ସୀତାକାନ୍ତ ମହାପାତ୍ର**ଙ୍କ କବିତାରେ ମୃତ୍ୟୁଚେତନା କିପରି ପ୍ରକଟିତ ହୋଇଛି, ତାହା ବିଚାର କରାଯାଇପାରେ । ତାଙ୍କ 'ମାଟି ଓ ମଣିଷ' କବିତାରେ ମୃତ୍ୟୁଗ୍ରସ୍ତ ପରିବେଶ ମଧ୍ୟରେ ନୂତନ ଜୀବନ ସଞ୍ଚାରଭାବ ବ୍ୟଞ୍ଜିତ ହୋଇଛି । 'ମହାକାଳର ମୃତ୍ୟୁ', 'ପ୍ରେତାତ୍ମାର ଶୋଭାଯାତ୍ରା' ଏବଂ 'ପରାବୃତ୍ତି ଓ ଦୁଃସ୍ୱପ୍ନର ରାତ୍ରିରେ' ପ୍ରଭୃତିରେ ମୃତ୍ୟୁର ହିମଶୀତଳ ପରିବେଶ ମଧ୍ୟରେ ଦେବକୀ ଓ ବସୁଦେବ ପକ୍ଷାନ୍ତରେ ସାଂପ୍ରତିକ ମାନବଚେତନା ଅବରୁଦ୍ଧ ହୋଇପଡ଼ିଥିବା ସ୍ଥଳେ 'ପ୍ରତିଧ୍ୱନି'ରେ ମୃତ୍ୟୁରେ ଜୀବନ (Life in death) ର ଶୁଭସଞ୍ଚାର ଘଟିଥିବା ପ୍ରକାଶ ପାଇଛି । 'ମାଟି ଓ ମଣିଷ'. କବିତାରେ କବି ସୀତାକାନ୍ତ ଲେଖିଛନ୍ତି – ''ମୃତ୍ୟୁ ନାହିଁ ଆକାଶର, ଯାଦୁକରୀ ଆକାଶର / ମୃତ୍ୟୁ ନାହିଁ ଏ ମାଟିର, ତାରା ଆଉ ଫସଲର/ ମେଘ ଆଉ ସମୁଦ୍ର ହାଓ୍ୱାର / ବିମଳିନ ଆକାଶର ଆଦିମ ଆଲୁଅ ତଳେ / ମୃତ୍ୟୁ ନାହିଁ ଏ ମାଟିର । ('ମାଟି ଓ ମଣିଷ', 'ଅଷ୍ଟପଦୀ') ତାଙ୍କ 'ପରକୀୟା'ରେ ମୃତ୍ୟୁ ଓ ଜୀବନ ମଧ୍ୟରେ ପରିଦୃଷ୍ଟ ପରସ୍ପର ଟଣାଓଟରା (Tension) ର ସ୍ୱର ପ୍ରକାଶ ପାଇଛି । ତାଙ୍କ କବି ଦୃଷ୍ଟିରେ ମୃତ୍ୟୁ ବଡ଼ ଦୁଃଖଦ, ବୀଭତ୍ସ ଓ ନିଷ୍ଠୁର । ହେଲେ ହେଁ ମରଣଶୀଳ ମଣିଷର ହୃଦୟରେ ନିଜ ସ୍ମୃତିର ଜାଗୃତି ପାଇଁ ଅଭୀପ୍‌ସା ଜନ୍ମିନି କିମ୍ବା ଅମରତ୍ୱ ପାଇଁ ତା'ର ସ୍ପୃହା ନାହିଁ ।

ମୃତ୍ୟୁ ଧୀର ପଦପାତରେ ଆସେ ବୋଲି **ବିଭୁଦତ୍ତ ମିଶ୍ର**ଙ୍କ ମତ । ସେ ଲେଖିଛନ୍ତି– ''ମୃତ୍ୟୁ ମୋ ଆସେ ନୀରବେ ଚରଣ ଚାଳି/ ଜୀବନ ଦେବତା ପାଦେ ଶେଷ ଲୁହ ଢାଳି ।'' ('କ୍ଷମାକର' କବିତା, 'ସୁପର୍ଣ୍ଣର ସଂଗୀତ') ପୁନଶ୍ଚ ସେ ତାଙ୍କ 'ମୃତ୍ୟୁ ହେ ମମ' କବିତାରେ ମୃତ୍ୟୁର କରାଳରୂପର ସୂଚନା ଦେବା କ୍ରମରେ ମୃତ୍ୟୁ କିପରି ଜୀବନର ସକଳ ବନ୍ଧନ ଓ ଜଞ୍ଜାଳରୁ ମୁକ୍ତି ଦିଏ, ତାହା ଦର୍ଶାଇ ମୃତ୍ୟୁ ପ୍ରତି ସ୍ୱୀୟ ମମତ୍ୱବୋଧର ପରିଚୟ ଦେଇଛନ୍ତି; ଯଥା– ''ଆସିବ ଯେଦିନ ମୃତ୍ୟୁ ହେ ମମ ! କରାଳ କେତନ ହାତେ / ଏଇ ଧରଣୀର ଧୂସର ସୀମାରେ ଦେଖାହେବ ତୁମ ସାଥେ / ଜୀବନର ସେଇ ମଧୁର ଲଗନେ / କି କଥା କହିବି ଏଇ କାନେ କାନେ / ଭୁଲେଇ ଭଲେଇ, ସାଥେ ତୁମ କ'ଣ ଡାକିନେବ ସତେ ମତେ / ଆସିବ ଯେଦିନ ମୃତ୍ୟୁହେ ମମ ! କରାଳ କେତନ ହାତେ ।) (ମୃତୁ ହେ ମମ) ସେହି ମୃତ୍ୟୁକୁ କବି ଶ୍ରୀ ମିଶ୍ର ଆନନ୍ଦରେ ବରଣ କରିବାକୁ ଆଗ୍ରହୀ ।

କବି **ବ୍ରଜନାଥ ରଥ** ମୃତ୍ୟୁସଚେତନ । ସେ ମଣିଷ ଜୀବନ ଓ ସଂସାର ଅନିତ୍ୟ ତଥା କ୍ଷଣଭଙ୍ଗୁର ବୋଲି 'କାଚଘର' ପ୍ରତୀକ ମାଧ୍ୟମରେ ସ୍ୱୀୟ 'କାଚଘର' କବିତାରେ ଦର୍ଶାଇଛନ୍ତି ।

କବି **ଗୋପାଳଚନ୍ଦ୍ର ମିଶ୍ର** ଆତ୍ମା ଓ ପରମାତ୍ମାର ମିଳନକୁ ଯେପରି 'ପୁନଶ୍ଚ ପୁରୁଷୋତ୍ତମ ଓ ପୁନଶ୍ଚ ସମୁଦ୍ର' କବିତାରେ ସୂଚାଇଛନ୍ତି, ତାହା ପରୋକ୍ଷ ଭାବରେ ମୃତ୍ୟୁ ସଚେତନତାର ବ୍ୟଞ୍ଜନା ପ୍ରଦାନ କରିଥାଏ ।

କବି **ଚିନ୍ତାମଣି ବେହେରା**ଙ୍କ ଦୃଷ୍ଟିରେ ଜୀବନଠାରୁ ମୃତ୍ୟୁ ଉର୍ଦ୍ଧ୍ୱତର ସୋପାନରେ ଅଧିରୂଢ଼ । ସେ ତାଙ୍କ 'ସମ୍ରାଟ' କବିତାରେ ଲେଖିଛନ୍ତି – ''ଜୀବନଠୁଁ ମରଣହିଁ ମୋ ଦେଶର/ ଶ୍ରେଷ୍ଠ କଳାକାର ଶ୍ରେଷ୍ଠ ସମୀକ୍ଷକ ।'' ('ସମ୍ରାଟ')

**ସୌଭାଗ୍ୟକୁମାର ମିଶ୍ର**ଙ୍କ କେତେକ କବିତାରେ ମୃତ୍ୟୁଚେତନ ପ୍ରକାଶ ପାଇଛି ; ଯଥା– ''ଅନ୍ଧ ମହୁମାଛି / ଉଡୁଥା', ବୁଲୁଥା', ବୁଲୁଥା',/ ହିସାବ ହେବ ପରେ / ତୋ' ମୃତ୍ୟୁର ବର୍ଣ୍ଣବୋଧ, ବ୍ୟାକରଣ, ମାନସାଙ୍କ / ପୁଣି ଶିଶୁ ପୃଥିବୀ ଶିଖୁଥିଲାବେଳେ ।'' (ଅନ୍ଧ ମହୁମାଛି) ତଣ୍ଟିରେ ଲାଲଦାଗ, ସବୁ ଜୀବନ, ବରଗା ହସୁଛି, କଡ଼ି ଖସୁଛି / ସନ୍ଦେହ ଓ କୋଳାହଳରେ ଅମାପମାପ ପାଣି ।'' ('ଏତେ ବଡ଼ ଘରଟା', 'ନଈପହଁରା') ମୃତ୍ୟୁ ସର୍ବଗ୍ରାସୀ ଓ ସବୁଠାରେ ତା'ର ପ୍ରବେଶ ବୋଲି କବି ସୌଭାଗ୍ୟକୁମାର ସ୍ୱୀକାର କରିଛନ୍ତି ।

ବିପ୍ଳବୀ କବି **ରବି ସିଂ** ତାଙ୍କ 'ଏ ସକାଳ ପ୍ରାଣର କବିତା'ରେ ନିଜକୁ ''ବିଦ୍ରୋହର ନିଶାଣ ମୁଁ, ଈଶାଣରେ ଝଡ଼ର ମୁକୁଟ / ଜୀବନର ମୃତ୍ୟୁହୀନ ଅଗ୍ରଦୂତ ସକାଳର ଶୋଣିତ ମୁକୁଟ ।'' ଭାବରେ ଅଭିହିତ କରିବା ସହିତ ସେହି କବିତାର ଅନ୍ୟ ଏକ ପର୍ଯ୍ୟାୟରେ ଆଜିର ଏ ପୃଥିବୀରେ ମୃତ୍ୟୁର ସ୍ଥିତିହୀନତା ତଥା ଅପାରଗତା ସଂପର୍କରେ ସୂଚନା ଦେଇଛନ୍ତି; ଯଥା– ''ବାତଙ୍କରେ ଧର୍ମରାଜ ଆଜି ଶଯ୍ୟାଶାୟୀ / ବିଶୃଙ୍ଖଳା ମୃତ୍ୟୁର ଶାସନେ / ଶୂନ୍ୟତା ବିରାଜେ ଦେଖ / ମରଣର ନୀଳ ସିଂହାସନେ ! ଭୀତତ୍ରସ୍ତ ଚିତ୍ରଗୁପ୍ତ / ଯମର ପାଞ୍ଜିଆ ଶ୍ମଶାନର ବଟବୃକ୍ଷେ / ଶକୁନିର ଡିମ୍ବସବୁ ହେଲାଣି କାଞ୍ଜିଆ / କୋଟର ପଡ଼ିଛି ଖାଲି / ନିରୁଦ୍ଦିଷ୍ଟ ଦିବାନ୍ଧ ପେଚକ, ନୈଶ ନୀରବତା କାହିଁ ? ଏଇ ଶୁଣ ସକାଳର ଡାକ ! କାକ ଡାକେ ସଜନାର ଶାଖେ ଏଇ ଉଷା ଦୀର୍ଘଜୀବୀ, ଏ ସକାଳ ପ୍ରାଣର କବିତା ।'' ('ଏ ସକାଳ ପ୍ରାଣର କବିତା', 'ଶିଥିଳ ବଲ୍‌ଗା')

**ଦୀପକ ମିଶ୍ର**ଙ୍କ କବିତାରେ ମୃତ୍ୟୁଚେତନାର ପରିପ୍ରକାଶ ବେଶ୍ ବୈଚିତ୍ର୍ୟପୂର୍ଣ୍ଣ । ତାଙ୍କ 'ଅରଣା ମଇଁଷି', 'ଅନୁଷ୍ଟୁପ୍', 'ନିର୍ଜନ ନକ୍ଷତ୍ର', 'ମଧ୍ୟାହ୍ନର ଛାଇ', 'ସପ୍ତମ ପୃଥିବୀ', 'ବୃତ୍ତ' ପ୍ରଭୃତି କବିତା ସଂକଳନରେ ସ୍ଥିତିବାଦୀ ଚିନ୍ତାଧାରାର ପ୍ରକାଶକ୍ରମରେ ମୃତ୍ୟୁ ସାଙ୍ଗକୁ ତଜ୍ଜନିତ ଆତଙ୍କ ଓ ଆତ୍ମୀୟତାର ସ୍ୱର ପ୍ରକଟିତ ହୋଇଛି । ସେ ତାଙ୍କର ଏକ କବିତାରେ ମୃତ୍ୟୁ ସଂପର୍କରେ ଲେଖିଛନ୍ତି– ''ମୃତ୍ୟୁ କ'ଣ ନଡ଼ିଆ ଗଛର ଛାଇ / ଏଇ ଅଛି ଏଇ ନାହିଁ / ମୃତ୍ୟୁ କ'ଣ ଅନ୍ଧାରର କେବଳ ଏକ ବିକୃତ ନକଲ / ମୃତ୍ୟୁ କ'ଣ ବରଫରୁ ଥଣ୍ଡା ? / (ଯଦି

ମୃତ୍ୟୁ ହୁଏ ନିଛକ ଶୀତଳ) / ସମସ୍ତଙ୍କ ନାକତଳେ ଦିନ ଦି'ପହରେ / ଏଇ ଦେଖ ମୃତ୍ୟୁ ଏଠି ବୁଲୁଅଛି ମୋ ସହିତ / ମୋ କାନ୍ଧରେ ତାହାର ଉଷୁମ ପାପୁଲି / ତବଲା ବଜାଏ ଖାଲି । / ମୃତ୍ୟୁ ପୁଣି ଆମ ଘରେ ହଳଦୀ ବାଟୁଛି / ତାକୁ ମଧ୍ୟ ଜଣାଅଛି ଭଦ୍ର ବ୍ୟବହାର ।'' ('ଅରଣା ମଇଁଷି')

ଅପ୍ରାପ୍ତିଜନିତ ଘୋର ନୈରାଶ୍ୟ, ହତାଶା, ବିଷାଦ ଓ ନିଃସଙ୍ଗତା କାରଣରୁ ମୃତ୍ୟୁର କରାଳରୂପ କବି **କମଳାକାନ୍ତ ଲେଙ୍କାଙ୍କ** ଭାବନା ଜଗତକୁ ପଶିଆସିଛି । ଜୀବନଯନ୍ତ୍ରଣାରୁ ମୃତ୍ୟୁ ନିରାପଦ ସ୍ଥାନକୁ ବାଟ କଢ଼ାଇ ନିଏ ବୋଲି ସେ ଦୃପ୍ତକଣ୍ଠରେ ଘୋଷଣା କରନ୍ତି । ମୃତ୍ୟୁକୁ ସେ ଜୀବନର ଶୁଚିସ୍ନାନ ଭାବରେ ବିବେଚନା କରିଛନ୍ତି, ଆଉ ଲେଖିଛନ୍ତି– ''ଜୀବନ ମାନେ ଗୋଟେ ଭୂଇଁ ଯେଉଁଠି / ବଞ୍ଚିବା ଓ ମରିବା ଭିତରେ ବିଶେଷ କିଛି / ତଫାତ୍ ନଥିବାବେଳେ ମଣିଷ ବେକୁବ ଭଳି / ଶ୍ୱାସପ୍ରଶ୍ୱାସରେ ଯୁଦ୍ଧ କରୁଥାଇ ।'' ('ତୁମେ ଯେଉଁମାନେ ଆସୁଚ', 'ଗୀତ ଗା'ନାରେ ପକ୍ଷୀ')

କବି **ଜଗନ୍ନାଥ ପ୍ରସାଦ ଦାସଙ୍କ** 'ଅନ୍ୟ ସବୁ ମୃତ୍ୟୁ' କବିତା ସଂକଳନର କବିତାଗୁଡ଼ିକ ମୃତ୍ୟୁଚେତନାରେ ଯେପରି ଜୁଡୁବୁଡୁ ତାହାର ପଟାନ୍ତର ନାହିଁ । ଜଗନ୍ନାଥ ପ୍ରସାଦଙ୍କ ଦୃଷ୍ଟିରେ ମଣିଷ ଜୀବନରେ ଯେଉଁ ପ୍ରେମର ଆବିର୍ଭାବ ଘଟେ, ତାହାର ଅନୁଭୂତି କ୍ଷଣକାଳ ସ୍ଥାୟୀ । ଏହି ଅନୁଭୂତି ପୁଣି ଖଣ୍ଡିତ । ମଣିଷର ଜୀବନାବସ୍ଥାରେ ଏହାର ଆରମ୍ଭ ଓ ଶେଷ ଅନୁଭୂତି ସମ୍ଭବ ହୋଇଥାଏ । ଜନ୍ମ ଓ ମୃତ୍ୟୁର ଲୀଳାଖେଳା ସହିତ ପ୍ରେମର ଆରମ୍ଭ ଓ ଶେଷ ତୁଳନୀୟ । କବି ଏହି କ୍ରମରେ ସ୍ୱୀକାର କରିଛନ୍ତି – ''ପ୍ରେମର ଏଠାରେ ହୁଏ ଏକାଧାରେ ଆରମ୍ଭ ଓ ଶେଷ / ଜନ୍ମଦିନଠାରୁ ଠିକ୍ ଉପକ୍ରମ ଯେପରି ମୃତ୍ୟୁର / ପ୍ରମାଣିତ କରିବାକୁ ଅସରନ୍ତି ସମୟ ଗର୍ଭରେ / କୃତ୍ରିମ ଆରମ୍ଭ ମାତ୍ର / ଇତସ୍ତତଃ କେତୋଟି କ୍ଷଣର ।'' ('ତମକୁ ଜାଣିବା', 'ଅନ୍ୟସବୁ ମୃତ୍ୟୁ')

ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ ଜନ୍ମମୃତ୍ୟୁର ବିବର୍ତ୍ତନ ଚକ୍ରର ଏକ ସତ୍ତା ଭାବରେ କବି **ସୌରୀନ୍ଦ୍ର ବାରିକ** ମୃତ୍ୟୁକୁ ଦେଖିଛନ୍ତି; ଯଥା– ''ବଟପତ୍ର ହେ ପୁତ୍ର, ହେ ମହାପୂର୍ଣ୍ଣତା / କେଉଁ ଶୂନ୍ୟତାରୁ ନିଅ କେଉଁ ଶୂନ୍ୟତାକୁ / କେଉଁ ପୂର୍ଣ୍ଣତାର ଋଣ କର ପରିଶୋଧ / କେଉଁ ପ୍ରାଣ ବଞ୍ଚାଉଛ କେଉଁ ମୃତ୍ୟୁ ପୁଣି ମରିବାକୁ ।'' (ସୌରୀନ୍ଦ୍ର ବାରିକ– 'ଉପଭାରତ', 'ରକ୍ତ ନଈକୂଳେ') କବିଙ୍କ ଚେତନାରେ ବଞ୍ଚିବା ଓ ମରିବା ଭାବନାର ଲୁଚକାଳି ଖେଳ ଚାଲେ । କବି ତା'କୁ କବିତାରେ ପ୍ରକାଶ କରନ୍ତି; ଯଥା– ''କବିତାଟିଏ ପାଇଁ, ମୁଁ ଯେତେଥର ବଞ୍ଚେ, କେତେଥର ମରେ, କେଉଁ ସନ୍ନ୍ୟାସ ଆସକ୍ତିରେ, ଜଳିପୋଡ଼ି ପାଉଁଶ ହୋଇଯାଏ ।'' ('ରାଗିଲେ କ'ଣ ହେବ', 'ଆକାଶ ପରି ନିବିଡ଼')

**ଉମାଶଙ୍କର ପଣ୍ଡାଙ୍କ** ଦୃଷ୍ଟିରେ ମୃତ୍ୟୁ ଅହଙ୍କାରୀ । ଅଭାବ ଅନଟନ, ରୋଗ-ଶୋକ ପ୍ରଭୃତି ମଧ୍ୟରେ ସନ୍ତୁଳିତ ହେଉଥିବା ଅବସ୍ଥାରେ ମଧ୍ୟ ମୃତ୍ୟୁ ତା'ର କରାଳରୂପ ଦେଖାଇବାକୁ ପଛେଇଯାଏନା । କବିଙ୍କ ଭାଷାରେ : ''ଅହଙ୍କାରୀ ମୃତ୍ୟୁ ଆସେ / ରୋଗେଶୋକେ ଜରାଜୀର୍ଣ୍ଣ ପୃଥିବୀର ନଷ୍ଟଆତ୍ମା / ଲୋଟିବା ପୂର୍ବରୁ ।'' ('ଓଡ଼ିଶା' କବିତା)

**ରାଜେନ୍ଦ୍ର କିଶୋର ପଣ୍ଡା** ମୃତ୍ୟୁ ଚେତନାର ପ୍ରକାଶ କ୍ରମରେ ସ୍ୱରଚିତ ଏକ କବିତାରେ ଶ୍ମଶାନଟିଏ କଅଁଳା ଛୁଆର ମୁଣ୍ଡ ଭିତରେ ଥାଏ ବୋଲି ସୂଚାଇଛନ୍ତି । ('ଧଳା ଟେଲିଫୋନ୍' କବିତା, 'ଗୌଣ ଦେବତା')

**ଜାନକୀବଲ୍ଲଭ ମହାନ୍ତି** ମୃତ୍ୟୁଚେତନାକୁ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି– ''କୋଟି ମାନବ, ଶତ ସୁଖସ୍ୱପ୍ନ କାହିଁ, ହଜିଯାଏ ମରଣର ଚିର ଅଭିସାରେ ।'' ('ତଫାତ୍' କବିତା)

ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା ପରିପ୍ରେକ୍ଷୀରେ **ଶରତଚନ୍ଦ୍ର ପ୍ରଧାନଙ୍କ** 'ନଚିକେତାର ସ୍ତବ' କବିତା ବିଚାରଣୀୟ । ନଚିକେତା 'କଠୋପନିଷଦ' ବର୍ଣ୍ଣିତ ଏକ ଚରିତ୍ର; ମୃତ୍ୟୁ, ରୋଗ ଓ ଶୋକକୁ ଜୟ କରିବାର ପ୍ରଚଣ୍ଡ ସ୍ପର୍ଦ୍ଧା ଯାହାର ବୈଶିଷ୍ଟ୍ୟ । ଆଧୁନିକ ନଚିକେତା (ଏକନିଷ୍ଠ ସାଧନାରେ ବଣ ମଣିଷ) ଅହରହ ମୃତ୍ୟୁଜନିତ ଶଙ୍କାରେ ଆଚ୍ଛନ୍ନ ଓ ମ୍ରିୟମାଣ । ତେଣୁ ମୃତ୍ୟୁ ମହାକାଳର ପ୍ରତୀକଭାବେ ଯଥାକ୍ରମେ 'ମହିଁଷି' ଓ 'ମହିଁଷିଆଳ'କୁ ଗ୍ରହଣ କରି କବି ଆଲୋଚ୍ୟ କବିତାରେ ଲେଖିଛନ୍ତି– ''ମୁଁ ଦିନେ ଭାବିଲି ଯିବି/ମହିଁଷି ଗୋଠକୁ/ ମୁଁ ଦିନେ ଭେଟିବି ଭାବେ/ ମହିଁଷିଆଳକୁ/ ମୁଁ କିନ୍ତୁ ପାରେନି ଯାଇ/ କେମିତି ବା ଯିବି ?/ ତା'ପିଙ୍ଗଳ ଆଖିପତା/ ତା' ଜଙ୍ଗଲି ଛାଇ/ ମୋତେ ଖୁବ୍ ଡରାଇଲା ।'' ('ନଚିକେତାର ସ୍ତବ', 'ନଈ ଆଉମାଛ, ହଂସ ଓ ସାରସ')

**ନୃସିଂହ କୁମାର ରଥ** ତାଙ୍କ 'ଅଭିମନ୍ୟୁ' କବିତାରେ ମୃତ୍ୟୁଚେତନାର ପ୍ରକାଶକ୍ରମରେ ଲେଖିଛନ୍ତି– ''ଏଠି ମୋର ଚାରିପାଶେ ବହୁବାଧା ଚକ୍ରାନ୍ତର ସପ୍ତରଥୀ ବ୍ୟୂହ/ମୃତ୍ୟୁର ଅର୍ଚ୍ଚନା ତୋଳେ ମୁଁ ସଂଗ୍ରାମୀ ସେଇ ମୋ ପ୍ରତ୍ୟୟ ।'' **ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ** 'ଶବସଂଗମ' କବିତାରେ ମୃତ୍ୟୁଚେତନା ପ୍ରକାଶ ପାଇଛି; ଯଥା– ''ପୃଥିବୀରେ ଆମେ ବଞ୍ଚିଛୁ/ ଖାଲି ଆତ୍ମାହୀନ ଭୂତଙ୍କ ଗହଳେ/ ଜରା ଓ ମୃତ୍ୟୁ ଗର୍ଭରେ ଯେଉଁଠି/ ସତ୍ୟହେବ ବର୍ତ୍ତମାନ ଆତ୍ମିକଚେତନା ନିସ୍ତବ୍ଧ ନିବିଡ଼ତା ।''

ନାରୀକବି **ପ୍ରତିଭା ଶତପଥୀ** 'ଦେବକୀ' କବିତାରେ ଦେବକୀ ନିଜର ସମ୍ଭାବ୍ୟ ମୃତ୍ୟୁର ଭୟରେ କିପରି ମ୍ରିୟମାଣା ତାହା ପ୍ରକାଶ କରିଛନ୍ତି । ଆଲୋଚ୍ୟ କବିତାରେ ମୃତ୍ୟୁ ଓ ପୁନର୍ଜନ୍ମର ବ୍ୟଞ୍ଜକ 'ଆଦିଜନନୀ' ଆର୍କିଟାଇପ୍‌ର ପ୍ରୟୋଗ କରାଯାଇଥିଲେ ହେଁ ତାହା କେବଳ

ମୃତ୍ୟୁର ସଞ୍ଚରଣଶୀଳତାକୁ ପ୍ରକାଶ କରିବାରେ ଶତଜିହ୍ୱ ହୋଇଉଠିଛି । ପୁନଶ୍ଚ ନାରୀକବି ଶ୍ରୀମତୀ ଶତପଥୀ ମୃତ୍ୟୁକୁ 'ସବାସାନପୁଅ' ଭାବରେ ଅଭିହିତ କରିଥିବା ମନେହୁଏ । ଉକ୍ତ କବିତାରେ ମୃତ୍ୟୁର ଆଗମନୀ ସଂପର୍କରେ ସୂଚନା ଦେଇ ସେ ଲେଖିଛନ୍ତି– ''ଝଙ୍କାଳିଆ ଆମ୍ବଗଛ ଡାଳୁ/ ଅନ୍ଧକାର ଝୁଲୁଥିବ/ ମଲା ମଇଁଷିଟେ ପରି/ ପାଦଆଡୁ ବେଢ଼ିଆସୁଥିବ ଘମାଘୋଟ ହେମାଳ ପବନ/ କୋଳାଗ୍ରତ କରିବାକୁ ଫୁଲି ଉଠୁଉଠୁ/ ପାଦଦେବା ଆଗରୁ ତୁ ଜୀର୍ଣ୍ଣ ଏଇ ସେତୁ/ ଭାଙ୍ଗିପଡ଼ି ସାରିଥିବ ସାମ୍ନାରେ ତୋହର ।'' ('ସବାସାନ ପୁଅ', 'ନିୟତ ବସୁଧା')

ହରିହର **ମିଶ୍ର** ବିଚ୍ଛେଦକୁ ମୃତ୍ୟୁର ନାମାନ୍ତର ଭାବରେ ସ୍ୱୀକାର କରିଛନ୍ତି ('ମା ନିଷାଦ' କବିତା) । ଜୀବନର ଢେଉତଳେ ମୃତ୍ୟୁର ଅନାହତ ସ୍ରୋତ ପ୍ରବାହିତ ହେଉଅଛି ବୋଲି **ନିରଞ୍ଜନ ପାଢ଼ୀ** ଦର୍ଶାଇଛନ୍ତି; ଯଥା– ''ଜୀବନର ଢେଉତଳେ ମୃତ୍ୟୁଙ୍କର ଅନାହତ ସ୍ରୋତ/ ସେ ସ୍ରୋତରେ, ଗତିରେ, ବେଗରେ ମାୟାଚ୍ଛନ୍ନ ଜୀବନର ଝିଲିମିଲି ଲହରୀ ସଂଗୀତ ।'' ('ମୃତ୍ୟୁ ସ୍ରୋତରେ ଜୀବନର ଢେଉ') କବି **ଦେବଦାସ ଛୋଟରାୟଙ୍କ** ମତରେ ଜୀବନାନୁସନ୍ଧାନ କ୍ରମରେ ମୃତ୍ୟୁ ହଠାତ୍ ଆସି ପହଞ୍ଚିଯାଏ । ସେ ଦୁଇଟି ପ୍ରାଣର ଅନ୍ତର୍ଦ୍ୱନ୍ଦ୍ୱ କ୍ରମରେ ମୃତ୍ୟୁର ଆଗମନକୁ ଠାବ କରନ୍ତି । ତାଙ୍କ ଭାଷାରେ– ''ଜୀବନକୁ ଖୋଜୁଖୋଜୁ ମୃତ୍ୟୁ ଅନୁଭୂତି ଆସେ/ ଅନ୍ତରରେ ଆସେ ଦେଖା–ଅଦେଖାର ଦ୍ୱନ୍ଦ୍ୱ । ଋତୁର ନିର୍ଜନ ସ୍ମୃତି– ଋତୁ ନିର୍ଜନତା ସ୍ମୃତି । ଯାହା ମୁଁ ଦେଖିଚି ! ସତେ ମୁଁ ଦେଖିନି କିଛି/କିଛି ବି ଦେଖିନି ।'' ('ଦେଖିଚି ଦେଖିନି')

ଜୀବନର ସ୍ଥିତି ସ୍ଥିର ନୁହେଁ, ତାହା ନିୟତ ଅସ୍ଥିର । ବ୍ୟକ୍ତି ଭେଦରେ ଦୃଷ୍ଟିଭଙ୍ଗୀରେ ଭିନ୍ନତା ଦେଖିବାକୁ ମିଳେ । ଭାରତୀୟ ଦର୍ଶନରେ ଉଭୟ ଭାବ ଓ ଅଭାବକୁ ସ୍ୱୀକାର କରାଯାଇଛି । ଗ୍ଲାନି, ହତାଶା, ନୈରାଶ୍ୟ, ବ୍ୟଥା ଓ ବ୍ୟର୍ଥତା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ମଣିଷକୁ ଏପରି ବିଷଣ୍ଣ ଓ ମ୍ଳାନ କରିଦେଇଛି, ଯାହା ଫଳରେ ତା'ଭିତରେ ନିତ୍ୟନିୟତ ମୃତ୍ୟୁ ଆକାଙ୍କ୍ଷା ତଥା ମୃତ୍ୟୁଜିଜ୍ଞାସା ପ୍ରକଟିତ ହେଉଛି । ଆଉ ଅଧାଜୀବନ–ଅଧା ମୃତ୍ୟୁ ମଧ୍ୟରେ ସତେ ଯେମିତି ତା'ର ସ୍ଥିତି । ଫଳରେ ଏସବୁ ଜୀବନ ଯନ୍ତ୍ରଣାର ଚିତ୍ର ଉପସ୍ଥାପନ କ୍ରମରେ ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନାର ମନ୍ମୟ ଅଭିବ୍ୟକ୍ତି ସମ୍ଭବ ହୋଇଛି । ପରିଶେଷରେ ଏତିକି କୁହାଯାଇପାରେ ଯେ– ମୃତ୍ୟୁ ଜୀବନରୂପୀ ବୃକ୍ଷଚ୍ୟୁତ ଝରାପତ୍ରର ମର୍ମର ହୋଇପାରେ, କିନ୍ତୁ ଆଧୁନିକ ଓଡ଼ିଆ କବିତାରେ ଜୀର୍ଣ୍ଣ ତରୁଦେହରେ ନବପଲ୍ଲବର ଲୀଳାଚଞ୍ଚଳ ହିଲ୍ଲୋଳ ସୃଷ୍ଟି କରିବାରେ ତାହା ସମର୍ଥ ।

▢▢▢